ଭାରତ - ଦେଶ ଓ ଦେଶବାସୀ



# ସାଧାରଣ ପକ୍ଷୀ

ସାଲିମ୍ ଅଲ୍ଲୀ ଓ ଲାଇକ୍ ଫତେଅଲ୍ଲୀ

# ସାଧାରଣ ପକ୍ଷୀ


ସାଲିମ୍ ଅଲୀ

ଓ

ଲାଇକ୍ ଫତେଅଲୀ

ଅନୁବାଦ :

ବସନ୍ତକୁମାର ବେହୁରା





ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ ନୂଆଦିଲ୍ଲୀ

1980 (ଶକାବ୍ଦ 1901)



•

ମୂଲ୍ୟ ଟ 18-25

*COMMON BIRDS (Oriya)*

This book has been published on the paper made available
by Government of India at concessional rates

•

•

ଡାଇରେକ୍ଟର, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, A-5 ଗ୍ରୀନ୍‌ପାର୍କ, ନୂଆଦିଲ୍ଲୀ-110016
କର୍ତ୍ତୃକ ପ୍ରକାଶିତ ଏବଂ ଗ୍ରନ୍ଥ ପ୍ରକାଶିନୀ, କଟକ-753001 ଦ୍ୱାରା ଲିପସ୍ ଓ ରିସେଣ୍ଟ
ପ୍ରିଣ୍ଟିଂ ଓ୍ୱାର୍କସ୍, ନୂଆଦିଲ୍ଲୀ ଦ୍ୱାରା ବର୍ଣ୍ଣଚନ୍ଦ-ମୁଦ୍ରିତ ।

# ସୂଚୀପତ୍ର

# ପ୍ରାରମ୍ଭିକ

ସମସ୍ତ ପ୍ରକାର ମେରୁଦଣ୍ଡୀ ପ୍ରାଣୀମାନଙ୍କୁ ଦୁଇଟି ଭାଗରେ ବିଭକ୍ତ କରାଯାଏ; ଯଥା— ସମତାପୀ ଓ ଅସମତାପୀ । ବାହାରେ ଯେତେ ଉତ୍ତାପ ହେଉନା କାହିଁକି, ଯେଉଁ ପ୍ରାଣୀ-ମାନଙ୍କର ଶରୀରର ତାପମାତ୍ରାରେ ପରିବର୍ତ୍ତନ ହୁଏନାହିଁ, ସେମାନଙ୍କୁ ସମତାପୀ ପ୍ରାଣୀ କୁହାଯାଏ; ମାତ୍ର ଯେଉଁ ପ୍ରାଣୀମାନଙ୍କର ଶରୀରର ତାପମାତ୍ରା ପରିବେଷ୍ଟନୀର ତାପମାତ୍ରା ଅନୁସାରେ ପରିବର୍ତ୍ତିତ ହୁଏ, ସେମାନଙ୍କୁ ଅସମତାପୀ ପ୍ରାଣୀ କହନ୍ତି । ମାଛ, ବେଙ୍ଗ ଓ ସରୀସୃପମାନେ ଅସମତାପୀ । ସ୍ତନ୍ୟପାୟୀ ପ୍ରାଣୀ ଓ ପକ୍ଷୀ ସମତାପୀ । ମନୁଷ୍ୟ ମଧ୍ୟ ଗୋଟିଏ ସ୍ତନ୍ୟପାୟୀ ପ୍ରାଣୀ । ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଦେହ ଲୋମାବୃତ; ସେମାନେ ସନ୍ତାନ ପ୍ରସବ କରନ୍ତି ଓ ସନ୍ତାନମାନଙ୍କୁ ସ୍ତନ୍ୟଦାନ କରନ୍ତି । ପକ୍ଷୀମାନଙ୍କର ଦେହ ପକ୍ଷଦ୍ୱାରା ଆବୃତ । ସେମାନେ ଅଣ୍ଡା ପ୍ରସବ କରନ୍ତି ଏବଂ ଶରୀରର ଉତ୍ତାପଦ୍ୱାରା ଅଣ୍ଡାକୁ ଉଷୁମାନ୍ତି ।

ପକ୍ଷୀ କାହାକୁ କହନ୍ତି ଏହା ସ୍ଥିର କରିବା ସହଜ । ଯେଉଁମାନଙ୍କର ପର ଅଛି, ସେମାନେ ପକ୍ଷୀ । ପକ୍ଷୀ ଭିନ୍ନ ଅନ୍ୟ କୌଣସି ପ୍ରାଣୀର ପର ନଥାଏ । ସେମାନେ ଆକାଶରେ ଉଡ଼ିବୁଲନ୍ତି, ନୀଡ଼ ରଚନା କରନ୍ତି ଓ ଅଣ୍ଡା ଦିଅନ୍ତି । ଏଥିପାଇଁ ସବୁ ପକ୍ଷୀ ସମାନ ମନେହୋଇପାରେ; ମାତ୍ର ନିରେଖି ଦେଖିଲେ ଜଣାପଡ଼େ ପକ୍ଷୀମାନଙ୍କ ମଧ୍ୟରେ ଏକ ଜାତି ଅପରଠାରୁ ବହୁତ ଭିନ୍ନ ଓ ସେମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ଅତ୍ୟନ୍ତ କମ୍ । କ୍ଷୁଦ୍ର ଗୁଞ୍ଜନ ପକ୍ଷୀଠାରୁ (1) ଆରମ୍ଭ କରି ବୃହତ୍ ଓଟ ପକ୍ଷୀ

---

(1) ଗୁଞ୍ଜନ ପକ୍ଷୀମାନଙ୍କୁ ଇଂରାଜୀରେ Humming bird ବୋଲାଯାଏ । ଏମାନେ କେବଳ ଦକ୍ଷିଣ-ଗୋଲାର୍ଦ୍ଧରେ ବାସକରନ୍ତି । ଏମାନଙ୍କର ଥଣ୍ଟ ଛୁଞ୍ଚିପରି ସରୁ ଓ ଜିଭ ନଳାକାର । ତା' ସାହାଯ୍ୟରେ ଗୁଞ୍ଜନ ପକ୍ଷୀ ଫୁଲରୁ ମଧୁ ଚୁଷି ଖାଏ । କ୍ୟୁବାର ହେଲେନା ଗୁଞ୍ଜନ ପକ୍ଷୀ (Helena's humming bird) ପୃଥିବୀର କ୍ଷୁଦ୍ରତମ ପକ୍ଷୀ । ଏହା ଲମ୍ବରେ 5·7 ସେଣ୍ଟିମିଟର ($2\frac{1}{4}$ ଇଞ୍ଚ) ଓ ଓଜନରେ 2.8 ଗ୍ରାମ ($\frac{1}{10}$ ଆଉନ୍ସ) ହୋଇଥାଏ । ଗୁଞ୍ଜନ ପକ୍ଷୀମାନଙ୍କର ପକ୍ଷ ଚକଚକିଆ ବର୍ଣ୍ଣଦ୍ୱାରା ଚର୍ଚ୍ଚିତ ହୋଇଥାଏ ଏବଂ ଉଡ଼ିଲାବେଳେ ସେମାନଙ୍କର ପକ୍ଷଦ୍ୱାରା ଏକପ୍ରକାର ଗୁଞ୍ଜନ ଶବ୍ଦ ଜାତହୁଏ ।

—ଅନୁବାଦକ

ପର୍ଯ୍ୟନ୍ତ ସମସ୍ତେ ପକ୍ଷୀଶ୍ରେଣୀ ଅନ୍ତର୍ଭୁକ୍ତ । ଗୁଞ୍ଜନ ପକ୍ଷୀ ମଣିଷର ବୃଦ୍ଧାଙ୍ଗୁଳିଠାରୁ ବଡ଼ ହୁଏନାହିଁ ଓ ଓଟପକ୍ଷୀ (2) ତଟ୍ଟୁ ଘୋଡ଼ା ଉଚ୍ଚ ହୁଏ । ପକ୍ଷୀ ଅଛନ୍ତି, ଯେଉଁମାନେ ହଜାର ହଜାର କିଲୋମିଟର ପଥ ଉଡ଼ିପାରନ୍ତି । ପୁଣି ପେଙ୍ଗୁଇନ୍ ପକ୍ଷୀ ଆଦୌ ଉଡ଼ିପାରେନାହିଁ । ବାୟାଚଢ଼େଇ ପରି ପକ୍ଷୀ ଅତି ନିପୁଣତା ସହକାରେ ନୀଡ଼ ରଚନା କରେ; ପୁଣି ପକ୍ଷୀ ଅଛନ୍ତି ଯେଉଁମାନେ କୌଣସି ପ୍ରକାର ବସା ନ କରି ସିଧାସଳଖ ଭୂମିଉପରେ ଅଣ୍ଡା ଦିଅନ୍ତି । କେତେକ ପକ୍ଷୀ ନିର୍ଦ୍ଦିଷ୍ଟ ପ୍ରକାର ଖାଦ୍ୟ ବ୍ୟତୀତ ଅନ୍ୟ ଖାଦ୍ୟ ଖାଆନ୍ତି ନାହିଁ । ଅପର ପକ୍ଷରେ ଶାଗୁଣା ପଶୁ ହଡ଼ା ମାଂସ ଖାଏ । ଅଧିକନ୍ତୁ କାଉ ଧାତୁଦ୍ରବ୍ୟ ବ୍ୟତୀତ ଆଉ ଯାହା ପାଏ, ଖାଏ । ପ୍ରବାସୀ ପକ୍ଷୀ ଅଛନ୍ତି, ଯେଉଁମାନେ ବର୍ଷରେ ଦୁଇଥର ଦୀର୍ଘପଥ ଯାତାୟାତ କରନ୍ତି । ପୁଣି ପକ୍ଷୀ ଅଛନ୍ତି, ଯେଉଁମାନେ ତାଙ୍କର ସାରା ଜୀବନକାଳ ଗୋଟିଏ ଉଦ୍ୟାନ ନିକଟରେ କଟାଇଦିଅନ୍ତି । ଗୃହପାଳିତ କୁକୁଡ଼ା ପରି ପକ୍ଷୀ ଅଣ୍ଡାରୁ ଫୁଟିଲା ସାଙ୍ଗେ ସାଙ୍ଗେ, ନଖରେ ଖୋଳାଇ ଖାଦ୍ୟ ଖୁଣ୍ଟିବାକୁ ଆରମ୍ଭ କରିଦିଅନ୍ତି । ଶୁଆ ଓ ଇଗଲ୍ ପକ୍ଷୀର ଶାବକ ଅଣ୍ଡାରୁ ଫୁଟିବା ପରେ କେତେକ ସପ୍ତାହ ଗତ ନ ହେବା ପର୍ଯ୍ୟନ୍ତ ନୀଡ଼ ଛାଡ଼ି ବାହାରି ପାରନ୍ତି ନାହିଁ । ପକ୍ଷୀ ଅଛନ୍ତି ଯେଉଁମାନେ ମନୁଷ୍ୟର ସାନ୍ନିଧ୍ୟ ବ୍ୟତିରେକେ ବଞ୍ଚିପାରିବେ ନାହିଁ ବୋଲି ମନେହୁଏ । ପୁଣି ପକ୍ଷୀ ଅଛନ୍ତି, ସେମାନେ ବାସକରୁଥିବା ଅଞ୍ଚଳ ଦେଇ ଯାତାୟାତର ପଥ ତିଆରି କଲେ, ସେମାନେ ସେ ଅଞ୍ଚଳ ଛାଡ଼ି ପଳାଇଯାନ୍ତି ଓ କାଳକ୍ରମେ ସେମାନଙ୍କର ବିଲୁପ୍ତି ଘଟେ । ପକ୍ଷୀକୁଳ ମଧ୍ୟରେ ଏତେ ବିଭିନ୍ନତା ଥିଲାବେଳେ ସେମାନଙ୍କର ଶ୍ରେଣୀବିଭାଗ ଅବଶ୍ୟ କଷ୍ଟସାଧ୍ୟ ।

ସର୍ବପ୍ରଥମେ ଆରିଷ୍ଟଟଲ୍ (Aristotle) ପ୍ରାଣୀମାନଙ୍କର ଏକ ଶ୍ରେଣୀବିଭାଗ କରିଥିଲେ । ତା'ପରେ ଅଷ୍ଟାଦଶ ଶତାବ୍ଦୀରେ ସ୍ୱେଡ଼ନର ପ୍ରକୃତିତତ୍ତ୍ୱବିତ୍ ଲିନିଅସ୍ (Linnaeus) ପ୍ରାଣୀମାନଙ୍କର ଯେଉଁ ବର୍ଗୀକରଣ କଲେ, ତାହା କେତେକ ପରିବର୍ତ୍ତନ ସହ ଏବେ ମଧ୍ୟ ସର୍ବତ୍ର ଅନୁସୃତ ହୁଏ ।

ସମସ୍ତ ପ୍ରକାର ପକ୍ଷୀଙ୍କୁ ମୁଖ୍ୟତଃ 27 ଗୋଟି ବର୍ଗ (order)ରେ ବିଭକ୍ତ କରାଯାଏ । ଏହି ବର୍ଗୀକରଣ ଗଠନ (structure) ଓ ବିକାଶ (development) ଦୃଷ୍ଟିକୋଣରୁ ମୌଳିକ ପ୍ରଭେଦ ଉପରେ ପର୍ଯ୍ୟବସିତ । ଉଦାହରଣରେ,

(2) ଆଫ୍ରିକା ଓ ଆରବର ମରୁଭୂମିରେ ବାସ କରୁଥିବା ଓଟପକ୍ଷୀ (Ostrich) ପୃଥିବୀର ବୃହତ୍ତମ ପକ୍ଷୀ । ଏମାନେ ଉଚ୍ଚରେ 2·1 ମିଟର ଓ ଓଜନରେ 1336 କିଲୋଗ୍ରାମ (300 ପାଉଣ୍ଡ) ହୁଅନ୍ତି । ଏମାନେ ଉଡ଼ିପାରନ୍ତି ନାହିଁ ମାତ୍ର ବାଲି ଉପରେ ଦ୍ରୁତ ଗତିରେ ଦୌଡ଼ିପାରନ୍ତି । —ଅନୁବାଦକ

ଆମର ପରିଚିତ ଅଧିକାଂଶ ବୃକ୍ଷବାସୀ ପକ୍ଷୀ ପାସାରିଫରମିସ (Passeriformes) ବର୍ଗ ଅନ୍ତର୍ଭୁକ୍ତ । ପାଣିକୂଳରେ ବାସକରୁଥିବା ସମସ୍ତ ପ୍ରକାର ବଗ ଓ ସାରସ ସିକୋନିଫରମିସ (Ciconiiformes) ପକ୍ଷୀବର୍ଗ ଭିତରେ ଯାଆନ୍ତି । ପାତିହଂସ, ହଂସ ଓ ରାଜହଂସ ଆଦି ସନ୍ତରଣକାରୀ ପକ୍ଷୀମାନେ ଆନସେରିଫରମିସ (Anseriformes) ବର୍ଗର ।

'ବର୍ଗ' (order) କେତେଗୁଡ଼ିଏ ବଂଶରେ ବିଭକ୍ତ । ସମାନ ବିଶେଷ ଲକ୍ଷଣ ଥିବା ପକ୍ଷୀମାନଙ୍କୁ ଏକ ବଂଶାଧୀନ କରାଯାଇଥାଏ । ଉଦାହରଣରେ, ପାସାରିଫରମିସବର୍ଗ ଅର୍ଥାତ୍ ବୃକ୍ଷଶାଖାବାସୀ ପକ୍ଷୀ 40 ଗୋଟି ବଂଶରେ ବିଭକ୍ତ । ଏମାନଙ୍କ ମଧ୍ୟରେ କନକ ଚଢ଼େଇ (Flycatcher) [ମାସିକାପଡ଼ି (Muscicapidae) ବଂଶ], କାଉ [କରଭିଡ଼ି (Corvidae) ବଂଶ] ଓ ଫୁଲଚୁହି (Sunbird) [ନେକ୍ଟାରିନିଡ଼ି (Nectarinidae) ବଂଶ] ଆଦି ଅନ୍ତର୍ଭୁକ୍ତ । ପକ୍ଷୀବଂଶକୁ ଆକ୍ଷରିକ ଅର୍ଥରେ 'ବଂଶ' ବୋଲି କୁହାଯାଇପାରେ । ଆଚରଣ ଓ ସ୍ୱଭାବରେ ସାମଞ୍ଜସ୍ୟ ଥିବା ବିଭିନ୍ନ ଜାତି ପକ୍ଷୀଙ୍କୁ ଏକବଂଶାଧୀନ କରାଯାଏ । ବିବର୍ତ୍ତନବାଦର ନିୟମାନୁସାରେ ମଧ୍ୟ ଗୋଟିଏ ବଂଶର ବିଭିନ୍ନ ଜାତି ପ୍ରାଣୀମାନଙ୍କ ମଧ୍ୟରେ ସେମାନଙ୍କର ଆଚରଣ ଓ ଅଭ୍ୟାସରେ ସାମଞ୍ଜସ୍ୟ ଦେଖାଯାଏ । ସମ-ସ୍ୱଭାବର ପକ୍ଷୀ ଜାତିମାନଙ୍କର ଏକା ଆକୃତିର ଥଣ୍ଟ ଓ ନଖ ଥାଏ ଏବଂ ଅନେକ ସମୟରେ ସେମାନଙ୍କର ପକ୍ଷ, ସାଧାରଣ ଆକୃତି ଓ ଚଳନରେ ମଧ୍ୟ ପ୍ରଭୂତ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ପକ୍ଷୀମାନଙ୍କର ଥଣ୍ଟ ଓ ନଖ ଖାଇବା ସ୍ୱଭାବ ଦ୍ୱାରା କିପରି ପ୍ରଭାବିତ ହୋଇଅଛି ତାହା ପରେ ବିଶଦଭାବେ ଆଲୋଚିତ ହେବ । ଗୋଟିଏ ନୂତନ ବା ଅପରିଚିତ ପକ୍ଷୀ ଠିକ୍ କେଉଁ ଜାତିର ବୋଲି ଜଣା ନ ଥିଲେ ମଧ୍ୟ, କେଉଁ ବଂଶର ତାହା ନିର୍ଣ୍ଣୟ କରାଯାଇପାରେ । ଆମେ ସମସ୍ତେ ବାଜପକ୍ଷୀ (Hawk) ଦେଖିଛେ । ତା'ର ଉପରଥଣ୍ଟ ତଳଥଣ୍ଟ ଉପରେ ଆଙ୍କୁଶୀ ପରି ବଙ୍କା, ଶକ୍ତ ଚଞ୍ଚୁ, ଚେପ୍ଟା ମୁଣ୍ଡ, ଭୟଙ୍କର ଚକ୍ଷୁ ଓ ଶକ୍ତିଶାଳୀ ଗଢ଼ଣ—ଏ ସମସ୍ତ ସୁସ୍ପଷ୍ଟ । ଗୋଟିଏ ପକ୍ଷୀ ଠିକ୍ କେଉଁ ଜାତିର, ତାହା ଜଣେ ନ ଜାଣିଥାଇପାରେ; ମାତ୍ର ତାହା ବାଜବଂଶର ପକ୍ଷୀ କି ନୁହେଁ, ଅନ୍ତତଃ ସେକଥା ଅନ୍ଦାଜ କରିପାରିବା ଅପେକ୍ଷାକୃତ ସହଜ । ସେହିପରି ଫୁଲଚୁହି (Sunbird) ମାନଙ୍କର ଚଞ୍ଚୁ ଅତ୍ୟନ୍ତ ସୂକ୍ଷ୍ମ, ଲମ୍ବା ଓ ସାମାନ୍ୟ ବଙ୍କା । ସେମାନେ ଥଣ୍ଟକୁ ଫୁଲର ନଳ ବା ଦଳନଳୀ (Corolla tube) ମଧ୍ୟରେ ପୂରାଇ ମଧୁ ଚୂଷନ୍ତି । ଏଭଳି ପକ୍ଷୀର ଥଣ୍ଟ, ତା'ର ସାଧାରଣ ଆକୃତି ଓ ସ୍ୱଭାବକୁ ଲକ୍ଷ୍ୟ କରି ଜଣେ ନିରୀକ୍ଷକ ତାହା କେଉଁ ବଂଶର ପକ୍ଷୀ କହିବା ସହଜସାଧ୍ୟ । ଅବଶ୍ୟ ସମସ୍ତ-

ସମୟରେ ଏସବୁ ବାହ୍ୟ ସାମଞ୍ଜସ୍ୟ ଭ୍ରାନ୍ତିକର ହୋଇପାରେ । ଉଦାହରଣରେ, ଶୁଆ ଓ ବାଜ ଉଭୟ ବଂଶର ପକ୍ଷୀମାନଙ୍କର ଅଣ୍ଟ ବଙ୍କା । ଫଳକୁ କାଟି କୋର ଖାଇବା ପାଇଁ ଶୁଆ ଅଣ୍ଟ ବଙ୍କା ଓ ମାଂସକୁ ଚିରି ଛିଣ୍ଡାଇ ଖାଇବା ପାଇଁ ବାଜର ଅଣ୍ଟ ବଙ୍କା । ଏ ଦୁଇ ଜାତି ପକ୍ଷୀ କେବଳ ଯେ ଦୁଇ ବିଭିନ୍ନ ବଂଶର ଅଟନ୍ତି ତା' ନୁହେଁ; ସେମାନେ ଦୁଇଟି ବିଭିନ୍ନ ବର୍ଗ ଅନ୍ତର୍ଭୁକ୍ତ । ସେହିପରି, ନବ ଗୋଲାର୍ଦ୍ଧ (New World)ର ଗୁଞ୍ଜନ ପକ୍ଷୀ (Humming birds) ଓ ପୁରାତନ ଗୋଲାର୍ଦ୍ଧ (Old World)ର ଫୁଲଚୁଷି ପକ୍ଷୀ ବାହାରକୁ ଦେଖିବାକୁ ଏକାପରି ଓ ଉଭୟ ଫୁଲରୁ ମଧୁ ସଂଗ୍ରହ କରୁଥିଲେ ମଧ୍ୟ ଏକ ଆରେକଠାରୁ ସମ୍ପୂର୍ଣ୍ଣ ଭିନ୍ନ ।

ବର୍ଗୀକରଣର ନିୟମାନୁସାରେ, ବଂଶ ତଳକୁ ପ୍ରଜାତି (Genus)ର ସ୍ଥାନ । ଏହା ବର୍ଗୀକରଣ ଏକକ ହିସାବରେ ବଂଶ (Family) ଠାରୁ କ୍ଷୁଦ୍ର ଓ ପରସ୍ପର ଘନିଷ୍ଠ ସମ୍ପର୍କ ଥିବା ଜାତି (Species) ମାନଙ୍କୁ ନେଇ ଗଠିତ । 'ପ୍ରଜାତି' ପୂରାପୂରି ଭାବେ ମନୁଷ୍ୟକୃତ । ସମାନ ବିଶେଷ ଲକ୍ଷଣ ଥିବା କେତେକ ଜାତିର ପ୍ରାଣୀଙ୍କୁ ଏକ ସମଷ୍ଟିଭୁକ୍ତ କରିବାର ସୁବିଧାପାଇଁ ପ୍ରଜାତିର ସୃଷ୍ଟି । ଲିନିଆସ (Linnaeus) ପ୍ରଜାତି ଉପରେ ଅତ୍ୟନ୍ତ ଗୁରୁତ୍ୱ ଆରୋପ କରିଥିଲେ ମଧ୍ୟ, ଏବେ ତାହା ସେତେ ଗୁରୁତ୍ୱପୂର୍ଣ୍ଣ ବୋଲି ଧରାଯାଏ ନାହିଁ । ବିଶେଷଜ୍ଞମାନଙ୍କ ମଧ୍ୟରେ କୌଣସି ଏକ ଜାତି କେଉଁ ପ୍ରଜାତିର ଅନ୍ତର୍ଭୁକ୍ତ ହେବ, ସେ ବିଷୟରେ ସବୁବେଳେ ମତାନୈକ୍ୟର ଅବକାଶ ରହିଥାଏ । ବର୍ତ୍ତମାନ ପ୍ରଜାତିର ପ୍ରଧାନ ଗୁରୁତ୍ୱ ହେଲା, ତାହା କୌଣସି ଜାତି ପ୍ରାଣୀର ପ୍ରଥମ ବୈଜ୍ଞାନିକ ନାମ ଗଠନ କରେ । କୌଣସି ପ୍ରଜାତିଭୁକ୍ତ ସମସ୍ତ ପ୍ରାଣୀଙ୍କର ପ୍ରଥମ ବୈଜ୍ଞାନିକ ନାମ ଏକ । ବିଭିନ୍ନ ପ୍ରକାର କାଉମାନଙ୍କ ମଧ୍ୟରେ କେତେକ ସାଧାରଣ ବିଶେଷ ଲକ୍ଷଣ ଥିବାରୁ ସେମାନେ ସମସ୍ତେ 'କରଭସ' (Corvus) ପ୍ରଜାତି ଅନ୍ତର୍ଭୁକ୍ତ ।

ପକ୍ଷୀ ବର୍ଗୀକରଣର ଶେଷ ବିଭାଗ ହେଲା ପ୍ରଜାତିକୁ ବିଭିନ୍ନ ଜାତିରେ ଭାଗ କରିବା । 'ଜାତି' (Species) କୌଣସି ପ୍ରାଣୀକୁ ଚିହ୍ନି ହେବା ଭଳି ଏକ ପ୍ରାକୃତିକ ଏକକ । କୌଣସି ପ୍ରାଣୀ ଏକ ଜାତିର କି ନୁହେଁ ତାହା ପରସ୍ପର-ପ୍ରଜନନଦ୍ୱାରା ପରୀକ୍ଷା କରାଯାଇପାରେ । ଯେଉଁ ପକ୍ଷୀମାନେ ପରସ୍ପର ପ୍ରଜନନଦ୍ୱାରା ନିଜପରି ପକ୍ଷୀ ଉତ୍ପାଦନ କରିପାରନ୍ତି ସେମାନେ ଏକା ଜାତିର । ସାମାନ୍ୟ ପ୍ରଭେଦ ଥିଲେ ମଧ୍ୟ ସବୁ ଗୋବରା ଚଢ଼େଇ (red-vented bulbul) ଗୋଟିଏ ଜାତିର, ଚୂଳିଆ ଚଢ଼େଇ ସବୁ (red whiskered bulbul) ଅନ୍ୟ ଏକ ଜାତି, ଧଳାଗାଲି ବୁଲବୁଲି

(white-cheeked bulbul) ଆଉ ଏକ ଜାତି । ପ୍ରାୟଶଃ, ସ୍ଥାନର ଜଳବାୟୁ ଓ ଭୌଗୋଳିକ ଅବସ୍ଥା ଅନୁସାରେ କୌଣସି ଜାତିର ପକ୍ଷୀମାନଙ୍କର ଆକାର ଓ ପକ୍ଷର ବର୍ଣ୍ଣର ଗାଢ଼ତାରେ ସାମାନ୍ୟ ତାରତମ୍ୟ ହୁଏ । ଯେଉଁ ପକ୍ଷୀମାନେ ଉତ୍ତରାଞ୍ଚଳରେ ବାସ କରନ୍ତି, ସେମାନେ ସାଧାରଣତଃ ଦକ୍ଷିଣାଞ୍ଚଳର ସେହି ଜାତି ପକ୍ଷୀମାନଙ୍କଠାରୁ ଆକାରରେ ବଡ଼ ହୁଅନ୍ତି । ଯେଉଁ ପକ୍ଷୀ ଆର୍ଦ୍ର ଜଳବାୟୁରେ ବାସ କରନ୍ତି, ସେମାନଙ୍କର ବର୍ଣ୍ଣ ଶୁଷ୍କଭୂମିରେ ବାସ କରୁଥିବା ସେହି ଜାତି ପକ୍ଷୀଙ୍କଠାରୁ ଅଧିକ ଗାଢ଼ ହୁଏ । ଯେଉଁଠି ଏଭଳି ପ୍ରଭେଦ ସୁସ୍ପଷ୍ଟ ଓ ସ୍ଥିର, ସେ ସ୍ଥଳରେ ପକ୍ଷୀ-ବର୍ଗୀକରଣ ବିଜ୍ଞାନୀମାନେ ଏକ ଜାତି ପକ୍ଷୀଙ୍କୁ ପୁଣି ଉପ-ଜାତି (subspecies) ବା ରେସ୍ (race) ରେ ବିଭକ୍ତ କରିଥାନ୍ତି । କୌଣସି ଜାତି ଅଧୀନସ୍ଥ ବିଭିନ୍ନ ଉପଜାତିର ପକ୍ଷୀ ପରସ୍ପର ସହିତ ପ୍ରଜନନ-କ୍ଷମ ଅଟନ୍ତି; ମାତ୍ର ବର୍ଗୀକରଣରେ ଜାତିକୁ ଚୂଡ଼ାନ୍ତ ଏକକ ବୋଲି ଧରିବାକୁ ପଡ଼ିବ ।

ପ୍ରତ୍ୟେକ ପକ୍ଷୀ ପ୍ରଥମେ କେଉଁ ବର୍ଗ (order)ର ତାହା ନିର୍ଣ୍ଣୟ କରାଯାଏ । ତା'ପରେ ତା'ର ବଂଶ (family) ଓ ପ୍ରଜାତି (genus) । ଶେଷରେ ତା'ର ସଠିକ୍ ବର୍ଣ୍ଣନା କରାଯାଇ ଜାତି (species) ସ୍ଥିରୀକୃତ ହୁଏ । ପ୍ରାୟଶଃ ତା'ର ଭୌଗୋଳିକ ରେସ୍ (race) ମଧ୍ୟ ନିରୂପିତ ହୁଏ । ପୃଥିବୀରେ ମୋଟାମୋଟି 8,650 ବିଭିନ୍ନ ଜାତିର ଜୀବିତ ପକ୍ଷୀ ଦେଖିବାକୁ ମିଳେ । ଏ ସମସ୍ତେ 'ପ୍ରାକୃତିକ' କ୍ରମ ଅନୁସାରେ 27 ଗୋଟି ବର୍ଗ (order) ଅନ୍ତର୍ଭୁକ୍ତ । ଯେଉଁ ପକ୍ଷୀମାନେ ସବୁଠାରୁ କମ୍ ବିବର୍ତ୍ତିତ; ଯଥା—ହଂସରାଳ (grebes) ଓ ବୁଡ଼ାଳି ପକ୍ଷୀ (divers), ସେମାନେ ପ୍ରଥମ ବର୍ଗ ଏବଂ ଯେଉଁ ପକ୍ଷୀମାନେ ସବୁଠାରୁ ଅଧିକ ବିବର୍ତ୍ତିତ; ଯଥା—ବୃକ୍ଷଶାଖାବାସୀ ପକ୍ଷୀ [ପାସାରି-ଫରମିସ (Passeri-formes) ], ସେମାନେ ଶେଷ ବର୍ଗର । ଅବଶ୍ୟ ବିବର୍ତ୍ତନ ଦୃଷ୍ଟିରୁ ଏହି ପକ୍ଷୀବର୍ଗ ଅନ୍ତର୍ଭୁକ୍ତ ବିଭିନ୍ନ ପକ୍ଷୀମାନଙ୍କର କପର ସ୍ଥାନ ନିରୂପଣ ହେବ, ସେ ବିଷୟରେ ମତାନୈକ୍ୟ ରହିଛି । କେତେକ ବିଶେଷଜ୍ଞଙ୍କ ମତରେ କାକ ଏହି ବର୍ଗ ମଧ୍ୟରେ ସବୁଠାରୁ ଉଚ୍ଚରେ ଅବସ୍ଥାପିତ ହେବ; ମାତ୍ର ଅନ୍ୟ ବିଶେଷଜ୍ଞମାନଙ୍କ ବିଚାରରେ ଫିନ୍‌ଚ୍ (Finch—କ୍ଷୁଦ୍ର କଳଧ୍ୱନିକାରୀ ପକ୍ଷୀ)ମାନେ ଏହି ସମ୍ମାନର ଅଧିକାରୀ ।

ଆମ ଭାରତବର୍ଷରେ ପ୍ରାୟ 1200 ବିଭିନ୍ନ ଜାତିର ପକ୍ଷୀ ଦେଖାଯାନ୍ତି । ଏମାନେ 75 ଗୋଟି ଶ୍ରେଣୀ (family) ଓ 20ଟି ବର୍ଗ (order) ଅନ୍ତର୍ଭୁକ୍ତ । କୌଣସି ଗୋଟିଏ ଦେଶରେ ଏତେ ବିଭିନ୍ନ ପ୍ରକାରେ ପକ୍ଷୀ ଦେଖାଯିବା ଅବଶ୍ୟ ଆଶ୍ଚର୍ଯ୍ୟର କଥା ।

ଜଳବାୟୁରେ ବିଶେଷ ବିଭିନ୍ନତା ଏହାର ପ୍ରଧାନ କାରଣ । ହିମାଳୟ ପର୍ବତମାଳା ଅଞ୍ଚଳରେ ଆର୍ଦ୍ର ଗ୍ରୀଷ୍ମମଣ୍ଡଳୀୟ ଜଳବାୟୁ (moist tropical) ଓ ସୁମେରୁର ଶୀତମଣ୍ଡଳୀୟ ଶୈତ୍ୟ (cold arctic) ଦେଖାଯାଉଥିଲାବେଳେ ରାଜସ୍ଥାନରେ ଶୁଷ୍କ ଉଷ୍ମ ମରୁଭୂମି ଜଳବାୟୁ ଓ ପାର୍ବତ୍ୟ ଅଞ୍ଚଳରେ ନାତିଶୀତୋଷ୍ଣ ଜଳବାୟୁ ଅନୁଭୂତ ହୁଏ । ଏହା ଫଳରେ ଆମ ଦେଶରେ ନିବିଡ଼ ଅରଣ୍ୟ, ବୁଦାବୁଦିଆ ଜଙ୍ଗଲ, ମୁକ୍ତ ପ୍ରାନ୍ତର, କର୍ଷିତ ଅଞ୍ଚଳ, ସମୁଦ୍ର ଉପକୂଳ, ନଦୀଶଯ୍ୟା, ଝାଡ଼ଗଣ୍ଡା ଭୂମି ଓ ଉଚ୍ଚ ପର୍ବତମାଳା ଦେଖିବାକୁ ମିଳେ । ଶହ ଶହ ବିଭିନ୍ନ ଜାତିର ପକ୍ଷୀମାନଙ୍କର ବାସପାଇଁ ଆମ ଦେଶରେ ବିଭିନ୍ନ ପ୍ରକାର ପରିବେଶ (ecological habitat) ରହିଛି । ଭାରତର ପକ୍ଷୀସମାଜ ପୃଥିବୀର ପକ୍ଷୀମାନଙ୍କର ଏକ ସୁନ୍ଦର ଆଂଶିକ ସମାବେଶ କହିଲେ ଭୁଲ ହେବନାହିଁ । ଭାରତରେ ଦେଖାଯାଉଥିବା ପକ୍ଷୀମାନଙ୍କ ମଧ୍ୟରୁ ଅନେକ ଏଠାର ସ୍ଥାୟୀ ବାସିନ୍ଦା; ପୁଣି କେତେକ କେବଳ ଶୀତକାଳଟି କଟାଇବା ଲାଗି ଯାଯାବର ଭାବେ ଆସିଥାନ୍ତି । ଯେଉଁ ପକ୍ଷୀମାନେ ସ୍ପଷ୍ଟତଃ ଆମ ଏଠାରେ ମିଳନ୍ତି ନାହିଁ, ସେମାନେ ସମ୍ପୂର୍ଣ୍ଣତଃ ବା ମୁଖ୍ୟତଃ ନବଗୋଲାର୍ଦ୍ଧ ଓ ଅଷ୍ଟ୍ରେଲିଆବାସୀ କେତେକ ବର୍ଗ ଓ ବଂଶର ପକ୍ଷୀ । ଶୀତଳ କୁମେରୁ ଅଞ୍ଚଳ ସାଗରବାସୀ ପେଙ୍ଗୁଇନ ପରି କେତେକ ପକ୍ଷୀ ମଧ୍ୟ ଏଠାରେ ଦୁଷ୍ପ୍ରାପ୍ୟ ।

# ପକ୍ଷୀ-ବିଜ୍ଞାନ ଓ ପକ୍ଷୀ-ପର୍ଯ୍ୟବେକ୍ଷଣ

ଏବେ ଭାରତରେ ପକ୍ଷୀମାନଙ୍କ ସମ୍ବନ୍ଧରେ ଯେଉଁ ପ୍ରକାର ଅନୁଧ୍ୟାନ ହେଉଅଛି, ବ୍ରିଟିଶମାନେ ଆସିବା ପୂର୍ବରୁ ସେପରି ହେଉ ନ ଥିଲା । ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ଭାରତର ପକ୍ଷୀମାନଙ୍କ ସମ୍ବନ୍ଧରେ ଗବେଷଣା ଆରମ୍ଭ ହୁଏ । ମୁଖ୍ୟତଃ ଇଷ୍ଟ ଇଣ୍ଡିଆ କମ୍ପାନୀ ଅଧୀନରେ ଚାକିରି କରୁଥିବା ବେସାମରିକ ଓ ସାମରିକ ବ୍ରିଟିଶ କର୍ମଚାରୀମାନେ ଏଠୁସେଠୁ ପକ୍ଷୀ ସଂଗ୍ରହ କରି ସେମାନଙ୍କର ବର୍ଗୀକରଣ କରିଥିଲେ । ମାତ୍ର ପ୍ରକୃତ ପକ୍ଷେ ଟି. ସି. ଜାରଡନ୍ (T. C. Jerdon)ଙ୍କ ଲିଖିତ 'ଭାରତର ପକ୍ଷୀ' (The Birds of India) ଗ୍ରନ୍ଥଗୁଡ଼ିକର 1862-64 ସାଲରେ ପ୍ରକାଶନଠାରୁ ଭାରତୀୟ ପକ୍ଷୀ-ବିଜ୍ଞାନର ଆରମ୍ଭ । ଡକ୍ଟର ଜାରଡନ୍ ଥିଲେ ସାମରିକ ବିଭାଗର ଜଣେ ଡାକ୍ତର । ସେ ତାଙ୍କର ବହୁବର୍ଷ ଚାକିରିକାଳ ମଧ୍ୟରେ ଭାରତର ନାନା ସ୍ଥାନରୁ ପକ୍ଷୀ ସଂଗ୍ରହକରି ଅଧ୍ୟବସାୟସହକାରେ ସେଗୁଡ଼ିକର ଅନୁଧ୍ୟାନ କରିଥିଲେ । ତାଙ୍କଦ୍ୱାରା ଲବ୍ଧ ଜ୍ଞାନ ଓ ପୂର୍ବେ ଭାରତୀୟ ପକ୍ଷୀମାନଙ୍କ ସମ୍ବନ୍ଧରେ ପ୍ରକାଶିତ ସମସ୍ତ ବୃତ୍ତାନ୍ତକୁ ସେ ତାଙ୍କ ଗ୍ରନ୍ଥରେ ସନ୍ନିବେଶିତ କରିଥିଲେ । ଜାରଡନ୍‌ଙ୍କ ପୁସ୍ତକ ପ୍ରକାଶିତ ହେବା ଆଗରୁ ଯେଉଁ ବିଖ୍ୟାତ ଓ ପ୍ରବୀଣ ବ୍ୟକ୍ତିମାନଙ୍କର ଭାରତୀୟ ପକ୍ଷୀମାନଙ୍କ ସମ୍ବନ୍ଧରେ ଗ୍ରନ୍ଥ ପ୍ରକାଶିତ ହୋଇଥିଲା, ସେମାନେ ହେଲେ ବ୍ରାଏନ୍ ହଜସନ୍ (Brian Hodgson) ଓ ଏଡ଼ୱାର୍ଡ୍ ବ୍ଲାଇଥ୍ ( Edward Blyth ) । ହଜସନ୍ ନେପାଳରେ ବ୍ରିଟିଶ ରେସିଡେଣ୍ଟ ଭାବେ କାର୍ଯ୍ୟ କରୁଥିଲେ ଓ ବ୍ଲାଇଥ୍ କଲିକତାସ୍ଥ ଏସିଆଟିକ୍ ସୋସାଇଟି ଯାଦୁଘରର ରକ୍ଷକ (curator) ଥିଲେ । ଜାରଡନ୍‌ଙ୍କ ପୂର୍ବେ ଓ ତାଙ୍କ ପରେ ମଧ୍ୟ ଅଳ୍ପକାଳ ଆଗ ପର୍ଯ୍ୟନ୍ତ ଭାରତୀୟ ପକ୍ଷୀ-ବିଶାରଦମାନଙ୍କର ମୁଖ୍ୟ କାର୍ଯ୍ୟ ଥିଲା, ପକ୍ଷୀ ଶିକାର କରି ସେମାନଙ୍କୁ ସଂରକ୍ଷିତ କରିବା ଓ ସେଗୁଡ଼ିକର ବର୍ଗୀକରଣ କରିବା । ଏଥିପାଇଁ ସ୍ଥାନୀୟ ଶିକାରୀ ଓ ଜନ୍ତୁଧରାଳିମାନେ ମଧ୍ୟ ନିୟୋଜିତ ହେଉଥିଲେ । ସେତେବେଳେ ଏହାର ଆବଶ୍ୟକତା ଥିଲା; କାରଣ ସେତେବେଳେ ଅନେକ ପକ୍ଷୀଙ୍କ ସମ୍ବନ୍ଧରେ କିଛି ଜଣାନଥିଲା ଏବଂ ପକ୍ଷୀ ମାରି, ତାକୁ ସଂରକ୍ଷିତ କରି, ଯାଦୁଘରେ ବସି ତା'ର ବର୍ଣ୍ଣନା ଲେଖିବାକୁ ଓ ନାମକରଣ କରିବାକୁ ପଡ଼ୁଥିଲା ।

ଏବେ ମଧ୍ୟ ଆମ ଦେଶରେ ପକ୍ଷୀ-ପର୍ଯ୍ୟବେକ୍ଷଣ ଲୋକପ୍ରିୟ ହୋଇନାହିଁ । ଭଲ ଦ୍ୱିନେତ୍ର ଦୂରବୀକ୍ଷଣ ଯନ୍ତ୍ର (ବାଇନୋକୁଲର) ଦୁଷ୍ପ୍ରାପ୍ୟ ହୋଇଥିବାରୁ, ପକ୍ଷୀମାନଙ୍କ ସମ୍ବନ୍ଧରେ ସରଳ ବର୍ଣ୍ଣିତ ପୁସ୍ତକ ନ ଥିବାରୁ, ପକ୍ଷୀ ଆଖି ଆଗରେ ହାତ ପାଖରେ ନ ଥିଲେ ତାହା କି ପକ୍ଷୀ ନିର୍ଣ୍ଣୟ କରିବା ସହଜ ନୁହେଁ । ଅଧିକନ୍ତୁ ସେବକାଳରେ, ଯାଦୁଘରେ ଗବେଷଣାରତ ପ୍ରାଣିବିଜ୍ଞାନବିତ୍ମାନେ ପକ୍ଷୀପର୍ଯ୍ୟବେକ୍ଷଣକୁ ଆଳସ୍ୟ-ପରାୟଣ ଧନୀଲୋକଙ୍କର ସମୟ କଟାଇବା ପାଇଁ ଏକ ପିଲାଖେଳ ଏବଂ ପ୍ରକୃତ ପକ୍ଷେ ତା'ର କୌଣସି ବୈଜ୍ଞାନିକ ମୂଲ୍ୟ ନାହିଁ ବୋଲି ମନେକରୁଥିଲେ । ଫଳରେ ଅନେକ କାଳ ପର୍ଯ୍ୟନ୍ତ ପକ୍ଷୀ ଶିକାର କରିବା ଓ ଅଣ୍ଡା ସଂଗ୍ରହକରିବା ଭାରତର ପକ୍ଷୀବିଜ୍ଞାନୀ-ମାନଙ୍କର 'ସମ୍ମାନ'ର କାର୍ଯ୍ୟ ହୋଇ ରହିଥିଲା । ଜାରଡନ୍‌ଙ୍କର 'ଭାରତର ପକ୍ଷୀ' (Birds of India) ବହିରେ କିଛି ନୂତନତ୍ୱ ଥିଲା । ବିଭିନ୍ନ ଜାତି ପକ୍ଷୀମାନଙ୍କର ବାହ୍ୟଗଠନ ଓ ପକ୍ଷର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସେ ସାଧାରଣ ପାଠକର କୌତୂହଳ ଚରିତାର୍ଥ ପାଇଁ ପକ୍ଷୀମାନଙ୍କର ସାଧାରଣ ସ୍ୱଭାବ ସମ୍ବନ୍ଧରେ ସଂକ୍ଷିପ୍ତ ଚିତ୍ତାକର୍ଷକ ବିବରଣୀ ସନ୍ନିବେଶିତ କରିଥିଲେ । ଏ ପୁସ୍ତକ ପକ୍ଷୀପ୍ରେମୀ ବା ପକ୍ଷୀ-ପର୍ଯ୍ୟବେକ୍ଷକମାନଙ୍କ ମଧ୍ୟରେ ଅବିଳମ୍ବେ ଉତ୍ସାହଜନକ ହୋଇଉଠିଲା । ଫଳରେ ଉତ୍ସାହୀ 'ଆମେଚର' ବା ଅନୁରାଗୀ କ୍ଷେତ୍ର ପ୍ରକୃତି-ବିଜ୍ଞାନବିତ୍ (field naturalist) ମାନଙ୍କ ସଂଖ୍ୟା ବଢ଼ିଲା ।

ଭାରତୀୟ ପକ୍ଷୀମାନଙ୍କ ସମ୍ବନ୍ଧରେ ଅନୁଧ୍ୟାନରେ ଦ୍ୱିତୀୟ ବୈଶିଷ୍ଟ୍ୟପୂର୍ଣ୍ଣ ଅଗ୍ରଗତି ଘଟିଥିଲା ଆଉ ଜଣେ ପ୍ରଖ୍ୟାତ ବ୍ୟକ୍ତିଙ୍କଦ୍ୱାରା । ସେ ହେଉଛନ୍ତି ଆଲାନ୍ ଅକ୍‌ଟାଭିଆନ୍ ହିଉମ୍ ( Allan Octavian Hume ) । ହିଉମ ଜଣେ ବ୍ରିଟିଶ । ସେ ଭାରତର ପ୍ରଶାସନିକ ବିଭାଗରେ ( ସିଭିଲ୍ ସାର୍ଭିସ୍ ) ଚାକିରି କରୁଥିଲେ । ସେ ପକ୍ଷୀବିଜ୍ଞାନବିତ୍-ମାନଙ୍କ ମଧ୍ୟରେ ଥିଲେ ଜଣେ 'ଦୈତ୍ୟ' । ଏହା ବ୍ୟତୀତ ସେ ଆଉ ଏକ କାରଣ ପାଇଁ ସ୍ମରଣୀୟ ଅଟନ୍ତି । ସେ ଥିଲେ ଭାରତୀୟ ଜାତୀୟ କଂଗ୍ରେସର ଜଣେ ପ୍ରତିଷ୍ଠାତା । ବହୁ ବର୍ଷ ଧରି ସେ ପକ୍ଷୀବିଜ୍ଞାନବିତ୍ମାନଙ୍କ ମଧ୍ୟରେ ଅଗ୍ରଣୀରୂପେ ପ୍ରାଧାନ୍ୟ ଲାଭ କରି-ଥିଲେ । ତାଙ୍କ ଉତ୍ସାହ ଓ ପରିଚାଳନାରେ ଭାରତର ବିଭିନ୍ନ ଅଞ୍ଚଳରେ ବିକ୍ଷିପ୍ତ ଭାବେ ରହିଥିବା ଶିକାରୀ ପ୍ରକୃତି ବିଜ୍ଞାନବିତ୍ମାନେ ପକ୍ଷୀମାନଙ୍କର ଚମଡ଼ା ସଂଗ୍ରହ କରୁଥିଲେ ଓ ସେମାନଙ୍କ ସମ୍ବନ୍ଧରେ କ୍ଷେତ୍ର-ବିବରଣୀ (Field note) ଲେଖିରଖୁଥିଲେ । ହିଉମ୍‌ଙ୍କ ଉଦ୍ୟମ ଓ ଗତିଶୀଳ ବ୍ୟକ୍ତିତ୍ୱଯୋଗୁ ଏହା ସମ୍ଭବ ହୋଇଥିଲା । ଭାରତୀୟ ପକ୍ଷୀବିଜ୍ଞାନ ସଂପର୍କୀୟ ଲେଖା ପ୍ରକାଶ ପାଇଁ ସେ "ଷ୍ଟ୍ରେ ଫେଦାରସ" (Stray-

Feathers—'ଇତସ୍ତତଃ ପକ୍ଷୀ') ନାମକ ଏକ ପତ୍ରିକା ପ୍ରତିଷ୍ଠା କରିଥିଲେ । ସେ ପକ୍ଷୀ-ପର୍ଯ୍ୟବେକ୍ଷକମାନଙ୍କଦ୍ୱାରା ସଂଗୃହୀତ ପକ୍ଷୀ ଚମଡ଼ାକୁ ପରୀକ୍ଷା କରି ସେଗୁଡ଼ିକର ବର୍ଗୀକରଣ କରୁଥିଲେ ଓ ଅଜଣାଥିଲେ ନୂତନ ନାମକରଣ କରୁଥିଲେ । ଏହା ଫଳରେ ଅନେକ ଜାତିର ଭାରତୀୟ ପକ୍ଷୀଙ୍କର ବୈଜ୍ଞାନିକ ନାମକରଣ ହୋଇ-ପାରିଥିଲା । ଆହୁରି ମଧ୍ୟ, ହ୍ୟୁମ୍ ପକ୍ଷୀ-ପର୍ଯ୍ୟବେକ୍ଷକମାନଙ୍କ ଲିଖିତ ବିବରଣୀକୁ ସମ୍ପାଦନକରି ତାଙ୍କ ପ୍ରତିଷ୍ଠିତ ବୈଜ୍ଞାନିକ ପତ୍ରିକାରେ ପ୍ରକାଶ କରୁଥିଲେ । 1872ରୁ 1888 ସାଲ ମଧ୍ୟରେ 'ଷ୍ଟ୍ରେ ଫେଦାରସ'ର 11ଟି ଭାଗ (volume) ପ୍ରକାଶିତ ହୋଇଥିଲା । ଏସବୁ ଭାରତୀୟ ପକ୍ଷୀମାନଙ୍କ ସମ୍ବନ୍ଧରେ ଆମର ମୌଳିକ ଜ୍ଞାନକୁ ଅନେକ ଦୂର ଆଗେଇନେବାରେ ସାହାଯ୍ୟ କରିଅଛି । ଭାରତର ପକ୍ଷୀମାନଙ୍କ ସମ୍ବନ୍ଧରେ କୌଣସି ଗୁରୁତ୍ୱପୂର୍ଣ୍ଣ ଗବେଷଣାମୂଳକ କାର୍ଯ୍ୟ କରିବାକୁ ହେଲେ ଏହି ପତ୍ରିକାରେ ପ୍ରକାଶିତ ତଥ୍ୟକୁ ଅବିରତ ଆଲୋଡ଼ନ କରିବା ଏକାନ୍ତ ପ୍ରୟୋଜନ ।

ବ୍ରିଟିଶ ଶାସନବେଳେ ବିଲାତସ୍ଥିତ 'ଭାରତ ଅଫିସ' (India Office) "ବ୍ରିଟିଶ ଭାରତର ପ୍ରାଣିକୁଳ" ( Fauna of British India ) ଶୀର୍ଷକ ସିରିଜ୍‌ରେ ବୈଜ୍ଞାନିକ ପୁସ୍ତକମାନ ପ୍ରକାଶ କରୁଥିଲେ । ସେହି ସିରିଜ୍‌ରେ ଇ. ଡବଲିଉ. ଓଟସ (E. W. Oates) ଓ ଡବଲିଉ. ଟି. ବ୍ଲାନ୍‌ଫୋର୍ଡ (W. T. Blanford)ଙ୍କ ସଙ୍କଳିତ ଭାରତୀୟ ପକ୍ଷୀମାନଙ୍କ ସମ୍ବନ୍ଧରେ ଚାରିଖଣ୍ଡି ପୁସ୍ତକ 1889ରୁ 1898 ସାଲ ମଧ୍ୟରେ ପ୍ରକାଶିତ ହେବା ଫଳରେ ଭାରତୀୟ ପକ୍ଷୀ ଓ ସେମାନଙ୍କର ଆଚରଣ ସମ୍ବନ୍ଧରେ ସାଧାରଣ ଆଗ୍ରହର ଅଭ୍ୟୁତ୍‌ଥାନ ହେଲା । ଉଭୟ ଲେଖକ ପ୍ରବୀଣ ପକ୍ଷୀତତ୍ତ୍ୱବିତ୍ ଥିଲେ; ମାତ୍ର ଏକଦୃଷ୍ଟିରୁ ବିଚାରକଲେ ସେମାନେ 'ଆମେଚର' । କାରଣ, ଓଟସ୍ ପି. ଡବଲିଉ. ଡ଼ି. ( ପବ୍‌ଲିକ ଓ୍ୱାର୍କସ ଡିପାର୍ଟମେଣ୍ଟ ) ଅଧୀନରେ ଜଣେ ଇଞ୍ଜିନିଅର ଭାବେ କାର୍ଯ୍ୟ କରୁଥିଲେ ଓ ବ୍ଲାନଫୋର୍ଡ଼ ଥିଲେ ସରକାରଙ୍କର ଜଣେ ଭୂତତ୍ତ୍ୱବିତ୍ । ଏହି ଗ୍ରନ୍ଥକାରମାନେ ସେମାନଙ୍କ ବହିରେ ହ୍ୟୁମ୍ ଓ ତାଙ୍କ ଅନୁଗାମୀମାନଙ୍କ ଶ୍ରମ ଫଳରେ ପକ୍ଷୀମାନଙ୍କ ସମ୍ବନ୍ଧରେ ସଂଗୃହୀତ ନୂତନ ବୃତ୍ତାନ୍ତଗୁଡ଼ିକୁ ସନ୍ନିବେଶିତ କରିଥିଲେ । ଗ୍ରନ୍ଥଗୁଡ଼ିକରେ ସେ ସମୟରେ ପ୍ରଚଳିତ ପକ୍ଷୀ-ବର୍ଗୀକରଣ ଓ ବୈଜ୍ଞାନିକ ନାମକରଣ ପଦ୍ଧତି ଅନୁସୃତ ହୋଇଥିଲା । ଅଧିକନ୍ତୁ, ସେଥିରେ ସିନ୍ଧୁ (Sind), କାଶ୍ମୀର, ଆସାମ, ବଙ୍ଗଳା (ଆଧୁନିକ ବଙ୍ଗାଳାଦେଶକୁ ମିଶାଇ), ବର୍ମା, ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ ଏବଂ ଶ୍ରୀଲଙ୍କା (ସିଂହଳ) ଅଞ୍ଚଳଗୁଡ଼ିକୁ ପରିସରଭୁକ୍ତ କରାଯାଇଥିଲା । ଜାର୍-ଡନ୍‌ଙ୍କ ସମୟକୁ ପକ୍ଷୀ-ବିଜ୍ଞାନଦୃଷ୍ଟିରୁ ଏସବୁ ଅଞ୍ଚଳ ଅନାବିଷ୍କୃତ ଥିଲା । ବସ୍ତୁତଃ, ପକ୍ଷୀ-

ବିଜ୍ଞାନର ଗ୍ରନ୍ଥମାନଙ୍କ ନିକଟରେ 'ଭାରତର ପକ୍ଷୀକୁଳ' ( The Fauna) ନାମରେ ସୁପରିଚିତ ଏହି ପ୍ରଥମ ସଂସ୍କରଣରେ ସେତେବେଳର ବ୍ରିଟିଶ ଭାରତୀୟ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ସମସ୍ତ ଅଞ୍ଚଳର ପକ୍ଷୀମାନଙ୍କ ସମ୍ବନ୍ଧରେ ସ୍ଥାନୀୟ ଅଧ୍ୟୟନ ଓ କ୍ଷେତ୍ର-ବିବରଣୀ ସଂଗ୍ରହର ପରିସର ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇଲା । ସବୁଠାରେ, ପକ୍ଷୀପ୍ରେମୀମାନେ —ଏମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ବ୍ରିଟିଶ କ୍ଷେତ୍ର-ସ୍ୱାମୀ (Planters) ଏବଂ ପ୍ରଶାସନିକ (Civil) ଓ ସାମରିକ ଅଫିସାର—ତୁରନ୍ତ ଏହି ଗ୍ରନ୍ଥର ସାହାଯ୍ୟ ନେଇ ପକ୍ଷୀ-ପର୍ଯ୍ୟବେକ୍ଷଣ ଓ ସେମାନଙ୍କ ସମ୍ବନ୍ଧରେ ଅଧ୍ୟୟନ କରିବାକୁ ଲାଗିଲେ । ଫଳରେ ଏହି ଗ୍ରନ୍ଥଯୋଗୁ ଭାରତୀୟ ପକ୍ଷୀମାନଙ୍କ ସମ୍ବନ୍ଧରେ ଅନୁଧ୍ୟାନର ବେଗ ଅତ୍ୟଧିକ ଭାବେ ବୃଦ୍ଧି ପାଇଗଲା । 'ଷ୍ଟ୍ରେ ଫେଦାରସ'ର ପ୍ରକାଶନ ବନ୍ଦ ହୋଇଯିବା ପରେ ସେତେ-ବେଳେ ନୂଆ କରି ପ୍ରକାଶିତ ହେଉଥିବା 'ବମ୍ବେ ପ୍ରକୃତିବିଜ୍ଞାନ ସମିତି ପତ୍ରିକା' ( Journal of the Bombay Natural History Society )ରେ ଭାରତୀୟ ପକ୍ଷୀମାନଙ୍କ ସମ୍ବନ୍ଧରେ ସଂକ୍ଷିପ୍ତ ବିବରଣୀ ଓ ବିଭିନ୍ନ ଅଞ୍ଚଳର ପକ୍ଷୀମାନଙ୍କ ସମ୍ବନ୍ଧରେ ସ୍ୱତନ୍ତ୍ର ପ୍ରବନ୍ଧମାନ ଅଧିକରୁ ଅଧିକ ପ୍ରକାଶିତ ହେବାକୁ ଲାଗିଲା । ସେଦିନ-ଠାରୁ ଆଜିଯାଏ ଏହି ପତ୍ରିକା ( ପତ୍ରିକାର ଏବେ 73 ଭାଗ ଚାଲିଛି ) ଭାରତୀୟ ପକ୍ଷୀ-ମାନଙ୍କ ସମ୍ବନ୍ଧରେ ଲେଖାମାନ ପ୍ରକାଶ କରିବାରେ ମୁଖ୍ୟ ପତ୍ରିକାରୂପେ କାର୍ଯ୍ୟ କରି ଆସୁଅଛି । ଏହି ଲେଖାସବୁ ବିଭିନ୍ନ ଧନ୍ଦାରେ ରତଥିବା ନିମବର୍ଗମାନ କ୍ଷେତ୍ର ପ୍ରକୃତି ବିଜ୍ଞାନବିତ୍‌ମାନଙ୍କଦ୍ୱାରା ଲିଖିତ ହୁଏ ।

ଏହିପରି ଭାବେ ଭାରତୀୟ ପକ୍ଷୀମାନଙ୍କର ଭୌଗୋଳିକ ବିସ୍ତରଣ, ଆଚରଣ ଇତ୍ୟାଦି ସମ୍ବନ୍ଧରେ ଜ୍ଞାନର ଗୁରୁତ୍ୱପୂର୍ଣ୍ଣ ଅଭିବୃଦ୍ଧି ଘଟିବା ଫଳରେ 1920 ସାଲର ଶେଷକୁ 'ଭାରତୀୟ ପ୍ରାଣିକୁଳ' ( The Fauna ) ସିରିଜ୍‌ର 'ପକ୍ଷୀ' (Birds) ଗ୍ରନ୍ଥ ଗୁଡ଼ିକର ପୁନଃ ପାଠର ଆବଶ୍ୟକତା ବିଶେଷଭାବେ ଅନୁଭୂତ ହେଲା । ପୁନଃ ପାଠ ପରେ ଦ୍ୱିତୀୟ ସଂସ୍କରଣରେ ଏହାର କଳେବର ପୂର୍ବର ଚାରିଖଣ୍ଡ ସ୍ଥାନରେ ଆଠଖଣ୍ଡ ହେଲା । ଏଗୁଡ଼ିକର ମୁଦ୍ରଣ 1921ରୁ 1930 ମଧ୍ୟରେ ସମ୍ପୂର୍ଣ୍ଣ ହୋଇଥିଲା । ଦ୍ୱିତୀୟ ସଂସ୍କରଣର ଗ୍ରନ୍ଥକାର ଥିଲେ ଆଉ ଜଣେ 'ଆମେଚର' ମାତ୍ର ବିଶେଷଜ୍ଞ । ତାଙ୍କ ନାମ ଇ. ସି. ଷ୍ଟୁଆର୍ଟ ବେକାର ( E. C. Stewart Baker ) । ସେ ଭାରତୀୟ ପୋଲିସ ବିଭାଗରେ କାର୍ଯ୍ୟ କରୁଥିଲେ ଏବଂ ଆସାମରେ ଚାକିରିଜୀବନ ବିତାଇଥିଲେ । ସେ ସମୟ ଭିତରେ ସେ ସେଠାର ପକ୍ଷୀମାନଙ୍କୁ ସଂଗ୍ରହକରି ସେମାନଙ୍କ ସମ୍ବନ୍ଧରେ ଓ ସେମାନଙ୍କର ନୀଡ଼ ରଚନା ଆଚରଣ ସମ୍ବନ୍ଧରେ ପ୍ରଗାଢ଼ ଅନୁଧ୍ୟାନ କରିଥିଲେ । ଏହି

ନୂତନ ସଂସ୍କରଣରେ କେବଳ ଯେ ଭାରତୀୟ ପକ୍ଷୀମାନଙ୍କ ସମ୍ବନ୍ଧରେ ଅଧୁନାତନ ବର୍ଗୀକରଣ, ନାମକରଣ ପ୍ରଭୃତି ଏବଂ ସାଧାରଣ ବୃତ୍ତାନ୍ତ ଦିଆଯାଇଥିଲା ତାହା ନୁହେଁ, ସେଥିରେ ପାଶ୍ଚାତ୍ୟ ଦେଶମାନଙ୍କରେ ପକ୍ଷୀବିଜ୍ଞାନରେ ହୋଇଥିବା ଅଗ୍ରଗତି ଓ ଆଧୁନିକ ଗତି ସହିତ ସମତା ରକ୍ଷାକରି ତଥ୍ୟ ପରିବେଷିତ ହୋଇଥିବାରୁ, ପକ୍ଷୀମାନଙ୍କ ସମ୍ବନ୍ଧରେ ପୂର୍ବ ପ୍ରକାଶିତ ଗ୍ରନ୍ଥଗୁଡ଼ିକ ତୁଳନାରେ ଉଦ୍ଦେଶ୍ୟ ଓ ଅନ୍ତର୍ଭୁକ୍ତ ବିଷୟର ବୈଜ୍ଞାନିକ ମୂଲ୍ୟ ଦୃଷ୍ଟିରୁ ଯଥାର୍ଥଭାବେ ଉତ୍‌କୋର୍ଷୀର ହୋଇଥିଲା । ଏଥିରେ ଭାରତୀୟ ପକ୍ଷୀମାନଙ୍କ ସମ୍ବନ୍ଧରେ ଆମର ଜ୍ଞାନ କେଉଁ କେଉଁ ନିର୍ଦ୍ଦିଷ୍ଟ ବିଷୟରେ ସୀମିତ ଏବଂ କେଉଁ କେଉଁ ଦିଗରୁ ଅଧିକ ଅନୁଶୀଳନ ଆବଶ୍ୟକ, ତାହା ସ୍ପଷ୍ଟଭାବେ ସୂଚିତ ହୋଇଥିଲା । ପକ୍ଷୀବିଜ୍ଞାନର ଅନୁଧ୍ୟାୟୀମାନେ ଏହି ଆହ୍ୱାନର ମୁକାବିଲା କରିବା ପାଇଁ କାଳ ବିଳମ୍ବ କରିନଥିଲେ ।

'ଭାରତୀୟ ପ୍ରାଣିକୁଳ' (The Fauna)ର ନୂତନ ପ୍ରସ୍ଥ ପ୍ରକାଶିତ ହେବାର 35 ବର୍ଷ ମଧ୍ୟରେ ଏହି ଉପ-ମହାଦେଶର ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ହୋଇ ନ ଥିବା ବିଭିନ୍ନ ଅଞ୍ଚଳରେ, ମୂଲ୍ୟବାନ ସଂଗ୍ରହ ଓ ପକ୍ଷୀମାନଙ୍କ ସମ୍ବନ୍ଧରେ ସ୍ଥାନୀୟ ଅଧ୍ୟୟନ କରାଯାଇଅଛି । ଏହାକୁ ମୁଖ୍ୟତଃ ବ୍ରିଟିଶମାନଙ୍କଦ୍ୱାରା କରାହୋଇଥିଲେ ମଧ୍ୟ କ୍ରମଶଃ ଭାରତୀୟମାନେ ସେଥିରେ ଅଂଶ ଗ୍ରହଣ କରିଛନ୍ତି । ବିଶେଷ କରି 1947 ସାଲରେ ସ୍ୱାଧୀନତା ପରଠାରୁ ପକ୍ଷୀବିଜ୍ଞାନ ସମ୍ବନ୍ଧରେ ଭାରତୀୟ ଅବଦାନ ଅଧିକରୁ ଅଧିକ ହୋଇଅଛି । ଉକ୍ତ କାଳମଧ୍ୟରେ ଯେଉଁମାନେ କାର୍ଯ୍ୟ କରିଥିଲେ, ସେମାନଙ୍କ ମଧ୍ୟରେ ଦୁଇଜଣ କର୍ମୀଙ୍କ ନାମ ସର୍ବାଗ୍ରେ ଆମ ନଜରକୁ ଆସେ, ଯଥା—ହ୍ୟୁଗ୍ ହ୍ୱିସଲର (Hugh Whistler) ଓ କଲ୍‌ଡ ବି. ଟାଇସହାରସଷ୍ଟ (Claude B. Ticehurst) । ଷ୍ଟୁଆର୍ଟ ବେକାରଙ୍କ ପରି ହ୍ୱିସଲର ଭାରତୀୟ ପୋଲିସ ବିଭାଗର ଜଣେ ଅଫିସର ଥିଲେ । ଟାଇସହାରସଷ୍ଟ ଥିଲେ ଜଣେ ଡାକ୍ତର । ପ୍ରଥମ ମହାସମର ସମୟରେ ସେ 'ରାଜକୀୟ ସେନାବାହିନୀ ମେଡ଼ିକାଲ ସଂସ୍ଥା' (Royal Army Medical Corps)ରେ ଅଧୁନା ପାକିସ୍ଥାନ (ପଶ୍ଚିମ ପାକିସ୍ଥାନ)ର ବିଭିନ୍ନ ଅଞ୍ଚଳରେ କାର୍ଯ୍ୟ କରୁଥିଲାବେଳେ ଭାରତୀୟ ପକ୍ଷୀମାନଙ୍କ ସମ୍ବନ୍ଧରେ ଅନୁଧ୍ୟାନ ଆରମ୍ଭ କରିଥିଲେ । ଏହି ଦୁଇ କର୍ମୀ "ଭାରତୀୟ ପ୍ରାଣିକୁଳ" (The Fauna) ସିରିଜ୍‌ରେ ପକ୍ଷୀମାନଙ୍କ ସମ୍ବନ୍ଧରେ ନୂତନ ପ୍ରସ୍ଥ ପ୍ରକାଶିତ ହେବା ପୂର୍ବେ ଓ ବିଶେଷ କରି ତା'ପରେ ଭାରତର ପକ୍ଷୀମାନଙ୍କ ସମ୍ବନ୍ଧରେ ଗୁରୁତ୍ୱପୂର୍ଣ୍ଣ ଅନୁଧ୍ୟାନ କରିଯାଇଅଛନ୍ତି ।

ବର୍ତ୍ତମାନ ଅବସ୍ଥା ଆସିଛି ଯେତେବେଳେ କୌଣସି ସ୍ୱତନ୍ତ୍ର ଦଳ ପକ୍ଷୀ ବା ସୁଦୂର ଅଞ୍ଚଳରେ ଅବସ୍ଥିତ ଅନୁସନ୍ଧାନ ହୋଇ ନଥିବା କୌଣସି ଅଞ୍ଚଳ ଭିନ୍ନ, ଅନ୍ୟ କୌଣସି-ଠାରେ କୌଣସି ପ୍ରକାର ପକ୍ଷୀ ମାରି ତା'ର ଚମଡ଼ା ସଂଗ୍ରହ କରିବାର ଆବଶ୍ୟକତା ନାହିଁ । ବର୍ଗୀକରଣ ଦୃଷ୍ଟିରୁ ଭାରତୀୟ ପକ୍ଷୀମାନଙ୍କର ଅନୁଧ୍ୟାନ ପାଇଁ ପୃଥିବୀର ବଡ଼ ବଡ଼ ମ୍ୟୁଜିୟମ୍‌ମାନଙ୍କରେ ଯଥେଷ୍ଟ ସାମଗ୍ରୀ ଅଛି ଓ ଗବେଷଣା ପାଇଁ ସେସବୁ ଉଧାର ସୂତ୍ରରେ ମିଳିପାରିବ । ବର୍ତ୍ତମାନର ସବୁଠାରୁ ଅଧିକ ଆବଶ୍ୟକତା ହେଉଛି, ମ୍ୟୁଜିୟମ ଓ ବିଜ୍ଞାନାଗାର ଛାଡ଼ି କ୍ଷେତ୍ରକୁ ବାହାରିଯିବା । ଅନ୍ୟ କଥାରେ କହିଲେ, ପ୍ରାକୃତିକ ପରିବେଶରେ ଜୀବନ୍ତ ପକ୍ଷୀର ପର୍ଯ୍ୟବେକ୍ଷଣ କରି ତା'ର ପାରିପାର୍ଶ୍ୱିକ ଅବସ୍ଥିତି (ecology), ସ୍ୱଭାବ ଓ ଆଚରଣ ସମ୍ବନ୍ଧରେ ଜ୍ଞାନ ଆହରଣ କରିବା । କପରି ଓ କେଉଁଠାରେ ପକ୍ଷୀ ବାସକରେ, ସେ କପରି ପରିବେଶ ସହିତ ନିଜକୁ ସନ୍ନିବେଶିତ କରିଛି, ସେ କପରି ପତି ବା ପତ୍ନୀ ଲାଭକରେ, କି ପ୍ରକାର ନୀଡ଼ ରଚନାକରେ, କପରି ଶାବକମାନଙ୍କୁ ବଢ଼ାଏ, ତା'ର ସାମାଜିକ ବ୍ୟବସ୍ଥା ଏବଂ କୌଣସି ଅଞ୍ଚଳରେ କୌଣସି ଜାତିର ପକ୍ଷୀମାନଙ୍କର ସଂଖ୍ୟା କେତେ (Population dynamics)—ଏସବୁ ବିଷୟରେ ପର୍ଯ୍ୟବେକ୍ଷଣ କରି ତଥ୍ୟ ସଂଗ୍ରହ କରିବାର ଆବଶ୍ୟକତା ରହିଛି । ଅର୍ଥନୈତିକ ଦୃଷ୍ଟିକୋଣରୁ ପକ୍ଷୀମାନଙ୍କର ଖାଦ୍ୟ ଓ ଖାଇବା ଅଭ୍ୟାସ ପର୍ଯ୍ୟବେକ୍ଷିତ ହୋଇ, ସେମାନେ ମନୁଷ୍ୟର ବନ୍ଧୁ ନାଁ ଶତ୍ରୁ ତାହା ନିଶ୍ଚିତହେବା ଗୁରୁତ୍ୱପୂର୍ଣ୍ଣ । ଆମ ଦେଶ ଏକ କୃଷିବହୁଳ, ଜନବହୁଳ ଓ ଜଙ୍ଗଲମୟ ଦେଶ । ଏଠାରେ ଖାଦ୍ୟାଭାବ କ୍ରମାଗତ ଲାଗି-ରହିଥିଲାବେଳେ, ଏଭଳି ଅନୁସନ୍ଧାନ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଏକାନ୍ତ ପ୍ରୟୋଜନୀୟ । ଏ ସମସ୍ତ ବୃତ୍ତାନ୍ତ ମ୍ୟୁଜିୟମରେ ସଂରକ୍ଷିତ ହୋଇ ରହିଥିବା ଶୁଷ୍କ ପକ୍ଷୀଚର୍ମରୁ ମିଳିପାରିବନାହିଁ ।

ବିଭିନ୍ନ ଜାତି ପକ୍ଷୀମାନଙ୍କର ଜୀବନ-ଇତିହାସ ଏବଂ ସେମାନେ ଅନ୍ୟ ଜାତିର ପ୍ରାଣୀ-ମାନଙ୍କ ସହିତ କପରି ଭାବେ ଜଡ଼ିତ, ତାହା ଆବିଷ୍କାର କରିବା ସମୟସାପେକ୍ଷ ଏବଂ ପ୍ରଭୂତ ଧୈର୍ଯ୍ୟ ଓ ଅଧ୍ୟବସାୟ ଆବଶ୍ୟକ କରେ । ଭାରତରେ ମାତ୍ର ଅଳ୍ପ କେତୋଟି ଜାତିର ପକ୍ଷୀଙ୍କ ଜୀବନ-ଇତିହାସ ଏଯାଏ ଅନୁଧ୍ୟାନ କରାଯାଇପାରିଅଛି । ତାହା ପୁଣି ଅଗଭୀର ବା ଉପରଠାଉରିଆ ଭାବେ । ଅଧିକାଂଶ ପକ୍ଷୀଙ୍କ ସ୍ୱଭାବ ଓ ଆଚରଣ ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ଏବେ ମଧ୍ୟ ସାମାନ୍ୟ ଓ ବିକ୍ଷିପ୍ତ । ଆମେଚର ପକ୍ଷୀ ପର୍ଯ୍ୟବେକ୍ଷଣ-କାରୀମାନଙ୍କଦ୍ୱାରା ଯୋଗାଯାଉଥିବା ସଙ୍ଗତ ଓ ନିର୍ଭରଯୋଗ୍ୟ ବୃତ୍ତାନ୍ତଗୁଡ଼ିକୁ ଏକତ୍ର କଲେ, ସମୟ ସମୟରେ କୌଣସି ଜାତି ପକ୍ଷୀର ଜୀବନ ଇତିହାସ ସମ୍ବନ୍ଧରେ ଅତି ମୂଲ୍ୟବାନ ସାହାଯ୍ୟ ମିଳିପାରେ ।

ପକ୍ଷୀ-ପର୍ଯ୍ୟବେକ୍ଷଣରେ ପ୍ରଥମ ପଦକ୍ଷେପ ହେଉଛି, କୌଣସି ଅଞ୍ଚଳରେ ସାଧାରଣ ପକ୍ଷୀମାନଙ୍କୁ ଦୃଢ଼ବିଶ୍ୱାସ ସହ ଚିହ୍ନିପାରିବାର ଦକ୍ଷତା ହାସଲ କରିବା । ଏତକ ଜଣେ କରି ନ ପାରିଲେ ତା' ପକ୍ଷରେ ଆଉ ଆଗେଇବା ଅସମ୍ଭବ; ଠିକ୍ ଯେପରି ପ୍ରଥମେ ଅକ୍ଷର ପରିଚୟ ନ ହେଲେ ପଢ଼ିପାରିବା ସମ୍ଭବ ନୁହେଁ । ପକ୍ଷୀ-ପର୍ଯ୍ୟବେକ୍ଷଣରେ ଅକ୍ଷର ପରିଚୟ ପାଇଁ ତିନୋଟି ଉପକରଣ ଆବଶ୍ୟକ । ତାହା ହେଲା, ଗୋଟିଏ ବାଇନୋକ୍ୟୁଲର, ଗୋଟିଏ ନୋଟ୍ ବହି ଓ ପକ୍ଷୀ ଚିହ୍ନିବା ପାଇଁ ଏକ ନିର୍ଦ୍ଦେଶ ପୁସ୍ତକ ।

ପକ୍ଷୀ-ପର୍ଯ୍ୟବେକ୍ଷଣ ପାଇଁ ଦୁଇ ଆଖିରେ ବ୍ୟବହୃତ ଦୂରବୀକ୍ଷଣ ଯନ୍ତ୍ର (ବାଇନୋକୁଲର)ର ସବୁଠାରୁ ଉପଯୋଗୀ ଆକାର ହେଲା 8 × 30 ବା 7 × 50 । ତାହା ନେବା ଆଣିବା କରିବା ପାଇଁ ଖୁବ୍ ବେଶି ବଡ଼ ବା ଭାରି ହେବା ଉଚିତ ନୁହେଁ । ସେଥିରେ କୌଣସି ବସ୍ତୁକୁ ଯଥେଷ୍ଟ ବର୍ଦ୍ଧିତ ଆକାରରେ ଦେଖିହେଉଥିବ ଓ ତାହା ନ୍ୟାଯ୍ୟ ସୀମା ମଧ୍ୟରେ ଫୋକାସ ହୋଇପାରିବା ଭଳି ଉପଯୋଗୀ ହୋଇଥିବ । ପକ୍ଷୀ-ପର୍ଯ୍ୟବେକ୍ଷକ ହେବାକୁ ଆକାଙ୍କ୍ଷା କରୁଥିବା ବ୍ୟକ୍ତି ସର୍ବପ୍ରଥମେ କ୍ଷେତ୍ରରେ ଦେଖୁଥିବା ପକ୍ଷୀମାନଙ୍କୁ ବହି ସାହାଯ୍ୟରେ ଚିହ୍ନିବେ । ଆମର ବିଶ୍ୱାସ, ଏ ବହିଟି ତାଙ୍କୁ ସେଦିଗରେ କିଛି ସାହାଯ୍ୟ କରିବ । ଏଥିପାଇଁ ଆଉ ଦୁଇଟି ଅତି ଦରକାରୀ ବହି ହେଲା, ହୁଇସଲର (Whistler) ଙ୍କ ପ୍ରଣୀତ Popular Hand Book of Indian Birds ( ଭାରତୀୟ ପକ୍ଷୀମାନଙ୍କ ସମ୍ବନ୍ଧରେ ସାଧାରଣ ହେଣ୍ଡବୁକ୍ ) ଓ ସାଲିମ ଆଲିଙ୍କ ଲିଖିତ The Book of Indian Birds (ଭାରତୀୟ ପକ୍ଷୀ ପୁସ୍ତକ) । ଶେଷୋକ୍ତ ବହିରେ ପକ୍ଷୀମାନଙ୍କର ଆକାର, ପ୍ରଧାନ ବର୍ଣ୍ଣ ଓ ସର୍ବାଧିକ ସୁସ୍ପଷ୍ଟ ଲକ୍ଷଣ; ଯଥା—ଲମ୍ବା, ଚଞ୍ଚୁ, ଗୋଡ଼ ଇତ୍ୟାଦି ଅନୁସାରେ ବିବରଣ ପଟ୍ଟ ବା ଚାର୍ଟ ଦିଆଯାଇଛି । ତା' ସଙ୍ଗେ ସଙ୍ଗେ ପ୍ରତ୍ୟେକ ଜାତି ପକ୍ଷୀର ସବର୍ଣ୍ଣ ଚିତ୍ର ସନ୍ନିବେଶିତ ହୋଇଅଛି । ଫଳରେ କୌଣସି ପକ୍ଷୀକୁ ଚିହ୍ନିବା ଅପେକ୍ଷାକୃତ ସହଜ ।

କୌଣସି ପକ୍ଷୀକୁ ଚିହ୍ନିବାକୁ ହେଲେ, ସବୁଠାରୁ ଦରକାରୀ କଥା ହେଉଛି, ନିଜେ କ'ଣ ପ୍ରକୃତରେ ଦେଖିଛ, ତାହା ନିଶ୍ଚିତଭାବେ ଜାଣିବା । ଉଦାହରଣରେ, ଜଣେ ଗୋଟିଏ ଗ୍ରେଟ କଳା ଧଳା ଚଢ଼େଇ ଦେଖିଲା । ତା' ଦେହର କେଉଁ କେଉଁ ଅଂଶ ଧଳା—ମୁଣ୍ଡ ଧଳା, ନା ଲାଞ୍ଜ ଧଳା ନା ପେଟ ପାଖ ଧଳା—ଏହା ଜାଣିବା ଗୁରୁତ୍ୱପୂର୍ଣ୍ଣ । ଆହୁରି ମଧ୍ୟ, ପକ୍ଷୀଟିର ଆଉ ଗୋଟିଏ ଦୁଇଟି ବିଶେଷ ଲକ୍ଷଣ ଯଥା—ଥଣ୍ଟର ଆକାର ଓ ବର୍ଣ୍ଣ, ଗୋଡ଼ ଓ ଲାଞ୍ଜର ଆକାର ଓ ବର୍ଣ୍ଣ ଏବଂ ଅନ୍ୟ କୌଣସି ବୈଶିଷ୍ଟ୍ୟ; ଯଥା—ଚୂଳ ଲକ୍ଷ୍ୟ କରିବା ପ୍ରୟୋଜନ । ପ୍ରଥମ ଥର ପାଇଁ ପକ୍ଷୀଟିଏ ଦେଖିଲାବେଳେ, ସେ

ପୁଣି ଗଛ ପତ୍ର ଭିତରେ କାଗାକୁ କାଗା ଉଡ଼ୁଥିବାବେଳେ କ୍ଷଣମାତ୍ର ଦର୍ଶନରେ, ଜଣେ ଯେ ପକ୍ଷୀଟିର ଏତେଗୁଡ଼ିଏ ଲକ୍ଷଣ ଲକ୍ଷ୍ୟ କରିପାରିବ, ଏହା ସମ୍ଭବ ନୁହେଁ । ପକ୍ଷୀ ବିଷୟରେ ଅନେକଗୁଡ଼ିଏ ଧାରଣା ମନ ଭିତରେ ଅଙ୍କନ କରିବାକୁ ଚେଷ୍ଟାକରିବା ପରିବର୍ତ୍ତେ କେବଳ ଗୋଟିଏ ବା ଦୁଇଟି ନିର୍ଦ୍ଦିଷ୍ଟ ଲକ୍ଷଣକୁ ମନେ ରଖିବାକୁ ଏକାଗ୍ରଚିତ୍ତ (concentrate) ହେବା ଭଲ । ଅନ୍ୟ କଥାରେ କହିଲେ, ଯଦି ଜଣେ ପକ୍ଷୀଟିଏ ଦେଖି ମନେରଖେ ଯେ ତା'ର ବର୍ଣ୍ଣ ଥିଲା ବାଦାମୀ ଓ ଲାଲ, ଆଉ ତା ଡେଣାରେ ଟିକିଏ କଳା ଓ ଧୂସର, ତେବେ ତାକୁ ଚିହ୍ନଟ କରିବା କଷ୍ଟକର । ବରଂ ସେ ଯଦି ମନେରଖେ ଯେ ପକ୍ଷୀଟି ଆକାରରେ ବଣି ଚଢ଼େଇ ପରି ଓ ତା'ର ଗୋଡ଼ ଲାଲ ତେବେ ତାକୁ ଚିହ୍ନଟ କରିବା ବରଂ ସହଜ ହୋଇପାରେ । ପକ୍ଷୀ ଚିହ୍ନିବାର ଜଟିଳତା ସାଙ୍ଗକୁ ଆଉ ଗୋଟିଏ ପ୍ରକୃତ କଥା ଏହି ଯେ, ଆମର ସ୍ମରଣଶକ୍ତି ଯେତେ ନିର୍ଭରଯୋଗ୍ୟ ବୋଲି ଆମେ ଭାବୁ, ତା' ଅପେକ୍ଷା ତାହା ଅନେକ କମ୍ ବିଶ୍ୱାସଯୋଗ୍ୟ । ଘଣ୍ଟା ଦୁଇ ଭିତରେ ଦେଖିଥିବା କୌଣସି ପକ୍ଷୀର ବର୍ଣ୍ଣ ଓ ତା'ର ଅନ୍ୟାନ୍ୟ ଲକ୍ଷଣକୁ ଆମେ ପାଶୋରିଯିବା ଯେ ସମ୍ଭବ ତା' ନୁହେଁ; ବରଂ ପ୍ରାୟ ନିଶ୍ଚିତ । ଏଣୁ ଆମେ ଯାହା ଦେଖିଲୁ, ତାହା ସାଙ୍ଗେ ସାଙ୍ଗେ ଟିପିରଖିବା ଅବଶ୍ୟ କରଣୀୟ ଏବଂ ସେଇଥିପାଇଁ ଆମର ଦ୍ୱିତୀୟ ଉପକରଣ ନୋଟବହି ଓ ପେନ୍‌ସିଲ ସବୁବେଳେ ଆମ ସାଙ୍ଗରେ ରହିଥିବା ଆବଶ୍ୟକ ।

ଯେଉଁ ଅଳ୍ପ କେତୋଟି ଘଟଣାରେ ଦୀର୍ଘ ସମୟ ଧରି ଜଣେ ବ୍ୟକ୍ତି କୌଣସି ପକ୍ଷୀର ଗମନ-ବିରତ ଚମତ୍କାର ଦୃଶ୍ୟ ଦେଖିବାର ସୁଯୋଗ ପାଏ, ସେ ସ୍ଥଳେ ସେ ଯାହା ଲକ୍ଷ୍ୟ କଲେ, ସେ ସମସ୍ତ ବିବରଣୀ ଟିପି ରଖିବା ଦରକାର । ଅନ୍ୟ କୌଣସି ପରିଚିତ ପକ୍ଷୀର ଆକାର ତୁଳନାରେ ଦେଖିଥିବା ପକ୍ଷୀର ଆକାର, ସାଧାରଣ ବର୍ଣ୍ଣ, ସେଥିରେ କୌଣସି ସ୍ୱତନ୍ତ୍ର ଦାଗ ଓ ତା'ର ଅବସ୍ଥିତି, ଥଣ୍ଟ, ଗୋଡ଼, ଡେଣା, ଲାଞ୍ଜ, ବେକ ଓ ସମ୍ଭବ ହେଲେ ଆଖିର ଆକାର, ଆୟତନ ଓ ବର୍ଣ୍ଣ ଲକ୍ଷ୍ୟ କରି ଟିପିରଖିବେ । କାଗଜ ଉପରେ ଯେତେ ମୋଟାମୋଟି ହେଉନା କାହିଁକି ପକ୍ଷୀଟିର ଏକ ସଂକ୍ଷିପ୍ତ ରୂପରେଖ ଅଙ୍କନ କରିନେଲେ ଚିହ୍ନିବାରେ ସହାୟକ ହୁଏ । କେଉଁ ସ୍ଥାନରେ, ଯଥା—ତଳେ ଭୂମି ଉପରେ, ଗଛର ପତ୍ର ମଧ୍ୟରେ, ଥୁଣ୍ଟା ଡାଳରେ ବା ଖୁଣ୍ଟି ଉପରେ, ବା ପାଣିରେ, ପକ୍ଷୀଟିକୁ ଦେଖିଲେ ଓ ସେତେବେଳେ ସେ କ'ଣ କରୁଥିଲା, ତାହା ମଧ୍ୟ ଟିପିରଖିବା ପ୍ରୟୋଜନ । କେତେକ ପକ୍ଷୀଙ୍କର ନିର୍ଦ୍ଦିଷ୍ଟ ପ୍ରକାର ସ୍ୱଭାବ ଅଛି, ଯଥା—ଡେଇଁ ଡେଇଁ ଗତିକରିବା, ନିର୍ଦ୍ଦିଷ୍ଟ ପ୍ରକାର ଠାଣିରେ ଉଡ଼ିବା, ଇତ୍ୟାଦି । ଏହା ଫଳରେ ସେମାନଙ୍କୁ ଚିହ୍ନିବା ସୁବିଧା ହୁଏ । ତେଣୁ ପକ୍ଷୀର ଏଭଳି ସ୍ୱଭାବ ଦେଖିଲେ ନିଶ୍ଚୟ ଟିପିରଖିବେ ।

ଧ୍ୱନି ବା ଗୀତ ଦ୍ୱାରା ମଧ୍ୟ ପକ୍ଷୀକୁ ଚିହ୍ନାଯାଇପାରେ । ମାତ୍ର ଅଧିକାଂଶ କ୍ଷେତ୍ରରେ ଏହାକୁ ଲେଖାରେ ପ୍ରକାଶ କରିବା କଷ୍ଟକର । ତଥାପି, ପକ୍ଷୀଟି କିପରି ରବ କରୁଥିଲା, ତା'ର ସାମାନ୍ୟ ସୂଚନା; ଯଥା—ଏକକ ସ୍ୱର (single note), ଉଡ଼ିଲା ବେଳେ ସିଟି ମାରିବା ବା ଫଡ଼ଫଡ଼ ଶବ୍ଦ କରିବା, ତୀକ୍ଷ୍ଣ କଟର-ମିଟର ଶବ୍ଦ କରିବା ପକ୍ଷୀ ଚିହ୍ନିବାର ପଥପ୍ରଦର୍ଶକ ହୋଇପାରେ । ତାରିଖ ଓ କେଉଁ ପରିବେଶରେ ପକ୍ଷୀଟିକୁ ଦେଖିଥିଲେ ତାହା ଟିପିରଖିବା ଅବଶ୍ୟ ସର୍ବୋପରି ଅଧିକ ଆବଶ୍ୟକ । ତାରିଖ ଅନୁସାରେ ଦେଖିଥିବା ପକ୍ଷୀ କେତେକ ପ୍ରବାସୀ ପକ୍ଷୀ ହୋଇନଥିବେ ବୋଲି ଧରି ନିଆଯାଇପାରେ । ପ୍ରଜନନ କାଳରେ ପକ୍ଷୀମାନଙ୍କର ପକ୍ଷର ବର୍ଣ୍ଣ ବଦଳେ । ଏହି ବର୍ଣ୍ଣ ସହିତ ପକ୍ଷୀ-ପର୍ଯ୍ୟବେକ୍ଷକ ଅନଭ୍ୟସ୍ତ ହୋଇ ନ ଥିଲେ ମଧ୍ୟ କେଉଁ ତାରିଖରେ କୌଣସି ପକ୍ଷୀକୁ ଦେଖିଥିଲେ, ତାହା ଟିପିରଖିଥିଲେ ପକ୍ଷୀ ଚିହ୍ନିବାରେ ସହାୟକ ହୁଏ । ପରିବେଶର ଭଲ ବର୍ଣ୍ଣନା ଥିଲେ ଅନେକ କ୍ଷେତ୍ରରେ ତାହା କେତେକ ନିର୍ଦ୍ଦିଷ୍ଟ ପକ୍ଷୀ ହୋଇଥିବା ସମ୍ଭବ ବୋଲି ସୂଚନା ଦେଇପାରେ ।

ବହିରେ କୌଣସି ପକ୍ଷୀର ବର୍ଣ୍ଣ ବିଷୟରେ ସବିଶେଷ ବର୍ଣ୍ଣନା ଓ ଚିତ୍ର ଥିଲେ ମଧ୍ୟ, ଯେ ନୂଆ କରି ପକ୍ଷୀ-ପର୍ଯ୍ୟବେକ୍ଷଣ କରୁଛନ୍ତି ତା' ପକ୍ଷରେ ପ୍ରଥମ ଥର ଦେଖାରେ ପକ୍ଷୀ ଦେହର ସମସ୍ତ ପ୍ରକାର ବର୍ଣ୍ଣ ଓ ଦାଗ ଦେଖିପାରିବା ସମ୍ଭବ ନୁହେଁ । ଉଡ଼ୁଥିବା ଓ ଗଛପତ୍ରର ଆଲୋକ ଓ ଅନ୍ଧାର ଭିତରେ ଆତଯାତ କରୁଥିବା ପକ୍ଷୀକୁ ପର୍ଯ୍ୟବେକ୍ଷଣ କଲାବେଳକୁ ଏହା ଅଧିକ ସତ୍ୟ । ଏପରିକି ମୁକ୍ତ ଦିବାଲୋକରେ ଆପଣ ଦେଖିଥିବା ପକ୍ଷୀର ବର୍ଣ୍ଣ ଭ୍ରାନ୍ତିକର ହୋଇପାରେ । ବିଶେଷ କରି ଖାଲିଆଖିରେ କେତେକ କୋଣରୁ ଲକ୍ଷ୍ୟ କଲେ ପକ୍ଷୀର ବର୍ଣ୍ଣ ଯାହା ନୁହେଁ ସେପରି ଦେଖାଯାଇପାରେ । ତେଣୁ ପକ୍ଷୀ ଚିହ୍ନିବା ପାଇଁ କେବଳ ତା'ର ବର୍ଣ୍ଣ ଉପରେ ନିର୍ଭର ନ କରି ଅନ୍ତତଃ ଆଉ ଗୋଟିଏ ଲକ୍ଷଣ; ଯଥା—ଥଣ୍ଟ, ଗୋଡ଼, ଚୂଡ଼ା ବା ପୁଚ୍ଛ କିପରି ତାହା ଲକ୍ଷ୍ୟ କରିବା ସମୀଚୀନ ।

ଅଳ୍ପ ଅଭ୍ୟାସ ହୋଇଗଲା ପରେ ଦେଖିବେ ଆପଣ ଅନେକ ସମୟରେ ଅପରିଚିତ ପକ୍ଷୀ ମଧ୍ୟ କେଉଁ ବଂଶଭୁକ୍ତ ହେବ ତାହା ନିର୍ଣ୍ଣୟ କରିପାରୁଛନ୍ତି । ଜଣକର ଚେହେରା ଓ ଅଭ୍ୟାସକୁ ଲକ୍ଷ୍ୟ କଲେ ଯେପରି ସେ କେଉଁ ପରିବାରର ଲୋକ ବୋଲି ଜାଣି-ହୋଇଥାଏ, ଠିକ୍ ସେହିପରି ବଂଶଗତ ଚେହେରା ଓ ବଂଶଗତ ଅଭ୍ୟାସଦ୍ୱାରା ପକ୍ଷୀ କେଉଁ ବଂଶର ତାହା ସ୍ଥିର କରାଯାଇପାରେ । ଉଦାହରଣରେ, ବଗବଂଶର ପକ୍ଷୀମାନଙ୍କର ବେକ ଭଙ୍ଗି ଉଡ଼ିଲା ବେଳର ଠାଣି, ମାଛରଙ୍କାମାନଙ୍କର ଥଣ୍ଟ, ବାଜମାନଙ୍କର ମୁଣ୍ଡ

ଓ ଅଣ୍ଡା ଦେଖିଲେ ସେମାନେ କେଉଁ ନିର୍ଦ୍ଦିଷ୍ଟ ଜାତିର ପକ୍ଷୀ ତାହା ସଠିକଭାବେ ସ୍ଥିର କରି ନ ହେଲେ ମଧ୍ୟ, ସେମାନେ କେଉଁ ବଂଶର ପକ୍ଷୀ ତାହା ନିର୍ଣ୍ଣୟ କରାଯାଇ-ପାରେ । ପକ୍ଷୀ ଚିହ୍ନିବା ପାଇଁ ଆଉ ଏକ ଲକ୍ଷଣ ଲକ୍ଷ୍ୟ କରିବାକୁ ହେବ । ତାହା ହେଉଛି, ସେମାନଙ୍କର ଚଳନ (movement) । ପର୍ଯ୍ୟବେକ୍ଷଣ କରିବାରେ ଅଧିକରୁ ଅଧିକ ଅଭ୍ୟାସ ହେଲା ପରେ ଏ ବିଷୟଟି ଆପଣ ଲକ୍ଷ୍ୟ କରିବାରେ ଅସୁବିଧା ହେବନାହିଁ । କେତେକ ଜାତିର ପକ୍ଷୀଙ୍କର ଓ ସମସ୍ତ ସମୟରେ ସମ୍ପର୍କ ଥିବା ବିଭିନ୍ନ ଜାତିର ପକ୍ଷୀଙ୍କର ଚଳନ ସମାନ ଓ ଏକା ଢାଞ୍ଚର (Pattern) । ଉଦାହରଣରେ, ସବୁଜାତି କନକ ଚଢ଼େଇ (flycatcher) ଏକାଭଙ୍ଗୀରେ ଉଡ଼ନ୍ତାସ୍ଥମାନ କ୍ଷୁଦ୍ର ପତଙ୍ଗଙ୍କ ପିଛା ଧରିଥାନ୍ତି । ସ୍ପଷ୍ଟଭାବେ ଚଢ଼େଇକୁ ନ ଦେଖି ମଧ୍ୟ ଉଡ଼ିବାଭଙ୍ଗୀରୁ କହିହେବ ଯେ ତାହା କନକ ଚଢ଼େଇ । ସେହିପରି ଟିକି ଚଢ଼େଇ (wren-warbler) ମାନଙ୍କୁ ସେମାନଙ୍କର ହଠାତ୍ ଉଠା-ପଡ଼ା ଉଡ଼ିବା ଭଙ୍ଗୀରୁ (twitching flight) ଚିହ୍ନି ହୁଏ । ପକ୍ଷୀ-ପର୍ଯ୍ୟବେକ୍ଷଣରେ ଯେଉଁମାନେ ବେଶ୍ ଆଗେଇଗଲେଣି, ସେମାନେ ଅସାଧାରଣ ବା ଭୁଲି (Vagrant) ପକ୍ଷୀମାନଙ୍କୁ ଚିହ୍ନିବା ପାଇଁ 'ବମ୍ବେ ପ୍ରକୃତି ବିଜ୍ଞାନ ସମିତି' (Bombay Natural History Society) ବା କଲିକତାସ୍ଥିତ 'ଭାରତୀୟ ପ୍ରାଣୀବିଜ୍ଞାନ ସର୍ଭେ' (Zoological Survey of India)ରେ ଥିବା ପକ୍ଷୀ ସଂଗ୍ରହ ଦେଖିବା ଉଚିତ ।

ଆପଣ ଯଦି ଏକ ଚଢ଼େଇବସା ସନ୍ଧାନ କରିପାଇଲେ ଯେଉଁଠି ସହଜରେ ପକ୍ଷୀଟିକୁ ପର୍ଯ୍ୟବେକ୍ଷଣ କରିପାରିବେ, ତେବେ ତାହା ଏକ ଆଶୀର୍ବାଦ । ଏହାଦ୍ୱାରା ଆପଣ ପକ୍ଷୀଟି ସହିତ ପରିଚିତ ହେବାକୁ ଚମତ୍କାର ସୁଯୋଗ ପାଇପାରିବେ । ଅତ୍ୟନ୍ତ ସାବଧାନତା ସହକାରେ ଆପଣଙ୍କୁ ଚଢ଼େଇବସାକୁ ଲକ୍ଷ୍ୟ କରିବାକୁ ହେବ । ନଚେତ୍ ତା'ର ଉପସ୍ଥିତି କାଉ ଓ ଅନ୍ୟ ପରଭକ୍ଷୀମାନେ ଜାଣିନେବେ । ତା' ସଙ୍ଗେ ସଙ୍ଗେ ଆପଣଙ୍କୁ ଅଣ୍ଡା ଓ ଶାବକମାନଙ୍କୁ ହାତରେ ଧରିବାର ଲୋଭ ସମ୍ବରଣ କରିବାକୁ ପଡ଼ିବ । ମଣିଷ ପକ୍ଷୀଶାବକକୁ ହାତରେ ଧରିଲେ ଯେ ତା' ମା' ତାକୁ ଆହାର ଦେବନାହିଁ, ଏ ଧାରଣା ସତ୍ୟ ନୁହେଁ । ମାତ୍ର ନବୀନ ପକ୍ଷୀଶାବକ ଅତ୍ୟନ୍ତ ସୁକୁମାର । ତେଣୁ ସେମାନଙ୍କୁ ଛୁଇଁବା ବା ଭୟଭୀତ କରିବା ଅନୁଚିତ । ଯେଉଁ ଅସ୍ୱାଭାବିକ କ୍ଷେତ୍ରବିଶେଷରେ ଆପଣଙ୍କୁ ଗୋଟିଏ ପକ୍ଷୀକୁ ନିଶ୍ଚୟ ହାତରେ ଧରିବାକୁ ହେବ—ଯେପରିକି ଆଘାତ ପାଇଥିଲେ—ସେପରି ସ୍ଥଳେ ତାକୁ ଠିକ୍ ଭାବେ ହାତରେ ଧରିବାକୁ ହେବ । ହାଲୁକାଭାବେ ଅଥଚ ଜବତ୍ କରି ତା'ର ଦୁଇ ଡେଣାକୁ ଗୋଟିଏ କଡ଼କୁ ରଖି ହାତପାପୁଲିରେ ଗୁଡ଼ି

ଧରିବେ ଏବଂ ପ୍ରଥମ ଓ ମଧ୍ୟାଙ୍ଗୁଳି ଦ୍ୱାରା ବେକକୁ ଦୁଇ ପଟୁ ଧରିନେବେ । କେତେକ କ୍ଷୁଦ୍ର ପକ୍ଷୀ ଅତ୍ୟନ୍ତ ଦୁର୍ବଳ ଏବଂ ଗ୍ରୀବାରେ ସାମାନ୍ୟ ଚାପ ପଡ଼ିଲେ ତାଙ୍କ ପ୍ରାଣବାୟୁ ଉଡ଼ିଯାଏ । କୌଣସି ପକ୍ଷୀକୁ ପରୀକ୍ଷା କଲାବେଳେ ହାତ ପାପୁଲି ଉପରେ ତାକୁ ପଛରୁ ଧରିବା ଭଲ । କାରଣ ସେମାନଙ୍କର ଦସ୍ତୁର, ଯେପର୍ଯ୍ୟନ୍ତ ସେମାନେ ପିଠି ଉପରେ ଶୋଇଛନ୍ତି, ସେପର୍ଯ୍ୟନ୍ତ ନିଶ୍ଚଳ ରହିଥିବେ । ପରୀକ୍ଷା ସରିଲେ ହାତକୁ ବୁଲାଇ ଧରି ପକ୍ଷୀଟିକୁ ଉଡ଼ାଇଦେବାକୁ ହେବ ।

ପ୍ରତ୍ୟେକ ପର୍ଯ୍ୟବେକ୍ଷଣକାରୀଙ୍କ ପକ୍ଷରେ ପକ୍ଷୀମାନଙ୍କ ସମ୍ବନ୍ଧରେ କୌଣସି ନୂତନ ବା ଚମତ୍କାରପ୍ରଦ ଆବିଷ୍କାର କରିବା ସମ୍ଭବ ନୁହେଁ । ମାତ୍ର ଦୀର୍ଘକାଳଧରି ଯତ୍ନଶୀଳ ଭାବେ ପକ୍ଷୀମାନଙ୍କ ପର୍ଯ୍ୟବେକ୍ଷଣ କରିବା ଓ ସେମାନଙ୍କ ହାବଭାବ ଗତିଚଳନ ଲକ୍ଷ୍ୟ କରିବା ଫଳରେ ଯେଉଁ ଘନିଷ୍ଠତା ଗଢ଼ିଉଠେ, ତଦ୍ଦ୍ୱାରା ପ୍ରଭୂତ ଆନନ୍ଦ ମିଳେ ଓ ସାରା-ଜୀବନ ଧରି ଏକ ସଉକରେ ପରିଣତ ହୁଏ । ଆଉ ଏ ସଉକକୁ ପ୍ରାୟ ଯେକୌଣସି ଅବସ୍ଥାରେ ସଞ୍ଜୀବିତ କରି ରଖାଯାଇପାରେ ।

# ପକ୍ଷୀମାନଙ୍କର ପ୍ରଜନନ

ସମସ୍ତ ପକ୍ଷୀମାନଙ୍କ ପାଇଁ ବର୍ଷ ଭିତରେ ସବୁଠାରୁ ଉଦ୍‌ବେଗଜନକ କଥା ହେଲା ଅଣ୍ଡା ଦେଇ ଛୁଆଙ୍କୁ ବଢ଼ାଇବା ସମୟଟିକ । ଏହା ଗୁରୁଭାର ଓ ବିପଦସଙ୍କୁଳ । ଯେଉଁଠି ନୀଡ଼ ରଚନା କରିବା ପୂର୍ବରୁ ଦୀର୍ଘ ପଥ ପ୍ରବାସଯାତ୍ରା କରିବାକୁ ପଡ଼େ, ସେ କ୍ଷେତ୍ରରେ କୁଟୁମ୍ବ ବୃଦ୍ଧି ଆହୁରି ଅଧିକ ବିପଦ ଓ ଦାୟିତ୍ୱ ପରିପୂର୍ଣ୍ଣ । ନୀଡ଼ରଚନା କରି ବାସକରୁଥିବା ଏକ ପକ୍ଷୀ-ପରିବାର ଅତି ସହଜରେ ଆକ୍ରାନ୍ତ ହୋଇପାରେ । ସେଥିପାଇଁ ପରିବେଶରୁ ସମସ୍ତ ପ୍ରକାର ସାହାଯ୍ୟ ଓ ଆଶ୍ରୟ ସେମାନଙ୍କର ଲୋଡ଼ା ହୁଏ । ନୀଡ଼କୁ ଲୁଚାଇ ରଖିବା ପାଇଁ ଗୋପନ ସ୍ଥାନ ଦରକାର । ନୀଡ଼ ରଚନା କରିବା ପାଇଁ ବିଭିନ୍ନ ସାମଗ୍ରୀ ଆବଶ୍ୟକ । ପ୍ରଥମେ ଅଣ୍ଡାକୁ ଓ ତା'ପରେ ଶାବକମାନଙ୍କୁ ରକ୍ଷା କରିବା ପାଇଁ ଗଛ ପାଗ ଗୃହ । ଶାବକମାନଙ୍କୁ ଆହାର ଦେବା ପାଇଁ ଯଥେଷ୍ଟ ଖାଦ୍ୟ ଆବଶ୍ୟକ । ସର୍ବୋପରି ଖାଦ୍ୟ ଅନ୍ୱେଷଣ କରିବା ପାଇଁ ସେମାନଙ୍କର ବେଶି ଦିବାଲୋକ ଦରକାର ଅର୍ଥାତ୍ ଦିନ ବଡ଼ ହେବା ଆବଶ୍ୟକ । ମୋଟାମୋଟି କହିବାକୁ ଗଲେ, ସବୁଠାରୁ ବଡ଼ କଥା ହେଲା ଖାଦ୍ୟସଂଗ୍ରହ । ଅନ୍ୟ କେତେକ କଥାରେ ସାମାନ୍ୟ ଅସୁବିଧା ଥିଲେ ମଧ୍ୟ ପକ୍ଷୀମାନେ ଯେଉଁ ସମୟରେ ଯଥେଷ୍ଟ ଖାଦ୍ୟ ପାଇପାରିବେ ସେଇ ବେଳକୁ ନୀଡ଼ ରଚନା କରନ୍ତି । ଉଦାହରଣରେ କୁହାଯାଇପାରେ ଯେ ଏହି କାରଣରୁ ବମ୍ବେ ଓ ତା'ର ଆଖପାଖ ଅଞ୍ଚଳରେ ଛୋଟ ଛୋଟ ପକ୍ଷୀମାନେ ବର୍ଷା ଋତୁରେ ନୀଡ଼ ରଚନା କରନ୍ତି । ବର୍ଷା ବତାସ ସମୟରେ ସେମାନେ ତାଙ୍କର ଭଙ୍ଗୁର ବସାଟିମାନ ଗଢ଼ନ୍ତି, ଏହା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଝଡ଼ବର୍ଷାରେ ନୀଡ଼ ଭାଙ୍ଗି ଧୋଇଯିବାର ଭୟ ଥିଲେ ମଧ୍ୟ ସେମାନଙ୍କ ପାଇଁ ଖାଦ୍ୟ ସରବରାହ ସେତେବେଳେ ଯଥେଷ୍ଟ ଅଧିକ । କାରଣ ବର୍ଷା ଋତୁରେ ପୋକ-ଜୋକ ସାଲୁବାଲୁ । ଅବଶ୍ୟ ଥଣ୍ଡା ଦେଶମାନଙ୍କରେ, ବସନ୍ତ ଓ ଗ୍ରୀଷ୍ମକାଳରେ ଅବସ୍ଥା ସବୁଠାରୁ ଅନୁକୂଳ ହୋଇଥିବାରୁ, ପ୍ରାୟ ସମସ୍ତ ପ୍ରକାର ପକ୍ଷୀ ସେଇ ସମୟରେ ପ୍ରଜନନ ଓ ନୀଡ଼ ରଚନା କରିଥାନ୍ତି । ଏହା ମଧ୍ୟ ଲକ୍ଷ୍ୟ କରାଯାଇଛି, ଠିକ୍ ଯେତିକି ବେଳେ ସବୁଠାରୁ ଅଧିକ ପସନ୍ଦର ପୋକଜୋକ ବେଶି ସଂଖ୍ୟାରେ ମିଳନ୍ତି, ସେଇ ସମୟକୁ ଲକ୍ଷ୍ୟ କରି ନିର୍ଦ୍ଦିଷ୍ଟ ଜାତି ପକ୍ଷୀ ବସା ବାନ୍ଧନ୍ତି । ଏଇଥିପାଇଁ ବିଭିନ୍ନ ଜାତି ପକ୍ଷୀମାନଙ୍କର ବସା କରିବା ସମୟରେ ଅଳ୍ପ ତାରତମ୍ୟ ରହେ ।

ଯେଉଁ ଋତୁରେ ଯେଉଁ ଜାତି ପକ୍ଷୀଙ୍କ ପାଇଁ ଖାଦ୍ୟ ସବୁଠାରୁ ଅଧିକ ମିଳେ ଓ ପାରିପାର୍ଶ୍ୱିକ ଅବସ୍ଥାରୁ ସବୁଠାରୁ କମ୍ ବିପଦର ଆଶଙ୍କା ଥାଏ, ସେହି ଋତୁରେ ସେ ଜାତି ପକ୍ଷୀ ପ୍ରଜନନ କରିଥାଏ । ଠିକ୍ ଋତୁରେ ପ୍ରଜନନ ପାଇଁ ସେମାନଙ୍କ ଶରୀରରେ କ୍ରିୟାତ୍ମକ ପ୍ରସ୍ତୁତି ତଦନୁସାରେ ଭ୍ରଣ୍ୱନ୍ତିତ ହୋଇଥାଏ ବୋଲି ମନେହୁଏ । ପାଗ ସୁବିଧା ନହେଲେ ଅନେକ ଜାତି ପକ୍ଷୀ ପ୍ରଜନନ କରନ୍ତି ନାହିଁ, ଏହା ଜଣା ଅଛି । ଗୁଜରାଟର କଚ୍ଛ ଅଞ୍ଚଳରେ (Rann of Cutch) ମୌସୁମୀ ବର୍ଷା ଋତୁରେ ମରାଳ (Flamingo) ମାନେ ପ୍ରଜନନ କରନ୍ତି । ଏମାନେ ପାଗ ବିଷୟରେ ଅତ୍ୟନ୍ତ ସଚେତନ ଓ ଠିକ୍ ପାଗ ନ ହେଲେଯାଏ ରମଣ କରନ୍ତି ନାହିଁ । ଯେଉଁ ବର୍ଷ ବର୍ଷା ଅତ୍ୟଧିକ ବା ଅତି କମ୍ ହୁଏ ସେ ବର୍ଷ ସେମାନେ ନୀଡ଼ ରଚନା କରନ୍ତି ନାହିଁ ।

ପ୍ରଜନନ ଋତୁ ଆଖର ହେଲେ, ପକ୍ଷୀମାନେ ସେମାନଙ୍କର ବିଶ୍ରାଘର ପକ୍ଷ-ସାଜ ଧାରଣ କରନ୍ତି । ଏ ସାଜ ବିଭିନ୍ନ ପ୍ରକାର । ଏ ସମୟରେ ଗୋଟିଏ ନୂଆ ସୁନ୍ଦର ପର ଉଠି-ପାରେ, ଦେହରେ ଏକ ଅଧିକା ବର୍ଣ୍ଣପଟି ଦେଖାଯାଇପାରେ ବା ପର ନବରୂପ ଧାରଣ କରି ପରିଚ୍ଛନ୍ନ ଦିଶେ । ଉଦାହରଣରେ ନନ୍ଦୀ ବଗ (Cattle egret)ର ମୁଣ୍ଡ ଓ ବେକରେ କମଳା ରଙ୍ଗର ଆଭା ଦେଖାଯାଏ । ବର୍ଷ ସାରାକୁ ଅଧିକାଂଶ ଅଣ୍ଡିରା ପକ୍ଷୀ ସଙ୍ଗୀତମୁଖର ହୋଇଉଠନ୍ତି, ନହେଲେବେଳକୁ ଅନ୍ତତଃ ନିତିଦିନଆ କାକଳି ସାଙ୍ଗକୁ ଗୋଟିଏ ଯୋଡ଼ିଏ ସୁର ମିଶେ । ବର୍ଷର ଅନ୍ୟ ସବୁ ସମୟର ଧ୍ୱନିଠାରୁ ପ୍ରଜନନ କାଳର ସଙ୍ଗୀତମୁଖରତା ଭିନ୍ନ । ସବୁଦିନେ ଯେଉଁ କାକଳି ଶୁଣିବାକୁ ମିଳେ ତାହା ଗୋଟିଏ ପକ୍ଷୀ ଅନ୍ୟ ଗୋଟିଏ ପକ୍ଷୀ ସହିତ ସମ୍ପର୍କ ରଖିବା ପାଇଁ ଉଦ୍ଦିଷ୍ଟ । ଏ ସମୟରେ ଯେଉଁ ସ୍ୱତନ୍ତ୍ର ସ୍ୱର ଶୁଣାଯାଏ ତାହା ପ୍ରଜନନ ବ୍ୟାପାରରେ ଏକ ନିର୍ଦ୍ଦିଷ୍ଟ କ୍ରିୟା । ଦେଖାଯାଇଛି ଯେ କେତେକ ଅତି ସୁନ୍ଦର ଗାୟକ ପକ୍ଷୀମାନଙ୍କର କଣ୍ଠ-ସଙ୍ଗୀତ ଗୁରୁତ୍ୱପୂର୍ଣ୍ଣ କ୍ରିୟା ପାଇଁ ଉଦ୍ଦିଷ୍ଟ । ତାହା ହେଲା, ନୀଡ଼ ଥିବା ଅଞ୍ଚଳରେ ତା'ର ଅଧିକାର ସାବ୍ୟସ୍ତ କରିବା ଓ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ଦୂରେଇଯିବା ପାଇଁ ସତର୍କ କରିଦେବା । ଅବଶ୍ୟ ପୂର୍ବେ ଧାରଣା ଥିଲା ଯେ ଅଣ୍ଡିରା ପକ୍ଷୀର ସଙ୍ଗୀତ କେବଳ ମାଈ ପକ୍ଷୀକୁ ଆକୃଷ୍ଟ କରିବା ପାଇଁ ଉଦ୍ଦିଷ୍ଟ । ଅଣ୍ଡିରା ପକ୍ଷୀର ସଙ୍ଗୀତର ପ୍ରକାର ମାଈ ପକ୍ଷୀକୁ ପତି ନିର୍ବାଚନରେ ପ୍ରଭାବିତ କରେ କି ନାହିଁ ତାହା ଜଣାନାହିଁ; ମାତ୍ର ଏହା ସତ୍ୟ ଯେ ସଙ୍ଗୀତ ଏକ ଅଞ୍ଚଳ ଅଧିକାର କରି ରହିଥିବା ଗୋଟିଏ ଅଣ୍ଡିରା ପକ୍ଷୀର ଉପସ୍ଥିତି ଘୋଷଣା କରେ । ତାହା ଆହୁରି ଘୋଷଣା କରେ ଯେ ସେ କେବଳ ଏକ ଉପଯୁକ୍ତ ସଙ୍ଗିନୀ ଆଶାରେ ଅପେକ୍ଷା କରି ରହିଛି ଓ ତା' ପାଇଲେ ନୀଡ଼ ରଚନା କରିବାକୁ ଆରମ୍ଭ କରିବ । କୌଣସି

ନିର୍ଦ୍ଦିଷ୍ଟ ଅଞ୍ଚଳ ମଧ୍ୟରେ ଖାଦ୍ୟ ସୀମିତ ହୋଇଥିବାରୁ କ୍ଷୁଦ୍ରାର୍ତ୍ତର ଗାୟକ ପକ୍ଷୀମାନଙ୍କୁ ଜଣା ଯେ ସେହି ଅଞ୍ଚଳରେ ଗୋଟିକରୁ ଅଧିକ ପରିବାର ପୋଷା ଯାଇ ପାରିବେ ନାହିଁ । ସେଥିପାଇଁ ଅଣ୍ଡିରା ପକ୍ଷୀଟିଏ ଗୋଟିଏ ଅଞ୍ଚଳ ବାଛିବା ପରେ ଅନ୍ୟ କୌଣସି ଅଣ୍ଡିରା ସେ ଅଞ୍ଚଳକୁ ପଶିଆସିଲେ ତା' ସହିତ ଲଢ଼େଇ କରି ତାକୁ ହଟାଇଦିଏ । ଏଥିପାଇଁ ତା'ର ସବୁଠାରୁ ଶକ୍ତିଶାଳୀ ଅସ୍ତ୍ର ହେଲା ଉଚ୍ଚସ୍ୱର ସଙ୍ଗୀତ । ଯେଉଁ ପକ୍ଷୀମାନେ କୌଣସି ପ୍ରକାର ଗୀତ ଗାଇପାରନ୍ତି ନାହିଁ, ସେମାନେ ମଧ୍ୟ ପ୍ରଜନନ ଋତୁରେ କେମିତି ହେଉ ଅଧିକା ଶବ୍ଦ କରନ୍ତି । ଉଦାହରଣରେ, ଢେଙ୍କ (Stork) ଜାତୀୟ ପକ୍ଷୀମାନଙ୍କର ସଙ୍ଗୀତ ପାଇଁ ସ୍ୱରପେଶୀ ନ ଥିଲେ ମଧ୍ୟ ସେମାନଙ୍କର ଥଣ୍ଟ (ମାଣ୍ଡିବଲ) ସାହାଯ୍ୟରେ ଏକପ୍ରକାର ଖଟ୍ ଖଟ୍ ଶବ୍ଦ କରନ୍ତି ।

ଅଧିକାଂଶ ଅଣ୍ଡିରା ପକ୍ଷୀ ମାଈ ପକ୍ଷୀର ଚିତ୍ତ ଜୟକରି ଆପଣାର କରିବାକୁ ଚେଷ୍ଟା କଲାବେଳେ କୌଣସି ନା କୌଣସି ପ୍ରକାର ପ୍ରଣୟ ଅନୁରାଗ (courtship) ପ୍ରଦର୍ଶନ କରନ୍ତି । ମୟୂରର ନୃତ୍ୟ ଆମର ଅତି ପରିଚିତ । ପକ୍ଷୀ ବା ମନୁଷ୍ୟ, ଯେ କେହି ଉପସ୍ଥିତ ଥାଉ ନା ଥାଉ, କାହିଁକି ସେ ନିର୍ବିଶେଷରେ ତା'ର ନୃତ୍ୟ ପ୍ରଦର୍ଶନ କରେ । ପ୍ରାୟଶଃ, କେହି ନ ଦେଖୁଥିଲେ ମଧ୍ୟ ସେ ନାଚେ । ମାଈ ଭଦଭଦଳିଆ ପକ୍ଷୀଟିଏ ବସିଥିବା ସମୟରେ ଅଣ୍ଡିରା ପକ୍ଷୀ ଉଡ଼ୁ ଉଡ଼ୁ ସହସା ତଳକୁ ଖସିଆସି ଓଲଟି ପଡ଼ି କୌତୁକ ଖେଳ ଦେଖାଏ । ଅଣ୍ଡିରା ଶୁକପକ୍ଷୀ ମାଈ ଆଗରେ ହାସ୍ୟକର ଅଙ୍ଗଭଙ୍ଗୀ ପ୍ରଦର୍ଶନ କରେ । ପ୍ରଥମେ ସେ ଗୋଟିଏ ଗୋଡ଼ରେ ଠିଆହୁଏ, ତା'ପରେ ଅନ୍ୟ ପାଦରେ ଠିଆ-ହୁଏ । କେତେକ ଅଣ୍ଡିରା ପକ୍ଷୀ ବହୁ ଆଡ଼ମ୍ବରସହକାରେ ଦେହଭଙ୍ଗୀ କରି ଓ ସଗର୍ବରେ ପାଦ ପକାଇ ମାଈ ପକ୍ଷୀକୁ ସେମାନଙ୍କର ସ୍ୱତନ୍ତ୍ର ଅତ୍ୟୁଜ୍ଜ୍ୱଳ ପ୍ରଦର୍ଶନ କରନ୍ତି । ଆଉ କେତେକ ପୁରୁଷ ପକ୍ଷୀ ଶାନ୍ତ ଓ ସତର୍କଭାବେ ପ୍ରଣୟ ନିବେଦନ କରନ୍ତି । ବାୟା-ଚଢ଼େଇମାନଙ୍କ ମଧ୍ୟରେ ନୀଡ଼ ରଚନା କିମ୍ବା ଏକପ୍ରକାର ପ୍ରଣୟ ଅନୁରାଗ । ଯେଉଁ ପୁରୁଷର ନୀଡ଼ ଯେଉଁ ମାଈ ବାୟା ଚଢ଼େଇର ମନୋହରଣ କରେ, ସେ ତାକୁ ପତି ରୂପେ ଗ୍ରହଣ କରେ । ଅନେକ ପକ୍ଷୀଙ୍କଠାରେ ପୁରୁଷ ମାଈକୁ ଗୋଟିଏ ପୋକ ବା ଉପାଦେୟ ଖାଦ୍ୟ ଟୁକୁରା ଯାଚିବା ପ୍ରଣୟ ନିବେଦନର ଅଙ୍ଗୀଭୂତ । ପ୍ରାୟଶଃ, ମାଈ ପକ୍ଷୀ ପୁରୁଷର ଆଗ୍ରହ ମିଜାଜର ସୁବିଧା ନେଇ ତା'ଠାରୁ ରୁଚିକର ଭୋଜ୍ୟ ପଦାର୍ଥ ଆଦାୟ କରେ ।

ପରବର୍ତ୍ତୀ କାର୍ଯ୍ୟ ହେଲା ଯୌନ-ମିଳନ । କେତେକ କ୍ଷେତ୍ରରେ ରମଣ ପରିବର୍ତ୍ତେ କେବଳ ଅଣ୍ଡିରା ବା ମାଈ ନୀଡ଼ ରଚନା କରିବାରେ ଲାଗିପଡ଼ନ୍ତି । ଯେଉଁ ପରିବେଶ

ସହିତ ପକ୍ଷୀ ଅଭ୍ୟସ୍ତ ସେଇ ପରିବେଶରେ ସେ ନୀଡ଼ ରଚନା କରେ । ଏହା ସାଧାରଣ ନିୟମ । ଇଗଲ୍ ପକ୍ଷୀ ଅତି ଉଚ୍ଚ ସ୍ଥାନରେ ବାସକରିବାରେ ଅଭ୍ୟସ୍ତ । ଏଣୁ ସେ ଖୋଲ-ଗିରିଚୂଡ଼ା ବା ପାହାଡ଼ର ପାଷାଣଖଣ୍ଡ ଉପରେ ବସାକରେ । ବୃକ୍ଷବାସୀ ପକ୍ଷୀମାନେ ଗଛର ପତ୍ର ଆଢ଼ୁଆଳରେ ନୀଡ଼ ରଚନା କରନ୍ତି । ଯେଉଁ ପକ୍ଷୀମାନେ ଅଧିକାଂଶ ସମୟ ଭୂମି ଉପରେ କଟାନ୍ତି; ଯଥା—ତିତିର (Partridge) ଓ ପୁଣ୍ଡୁକ ଚଢ଼େଇ (Quail), ସେମାନେ ଭୂମିରେ ଅଣ୍ଡା ଦିଅନ୍ତି । ଯେଉଁ ପକ୍ଷୀମାନେ ଜଳରେ ବାସ-କରନ୍ତି; ଯଥା—କର୍ମୋରାଣ୍ଟ (Cormorant) ଓ ବଗ, ସେମାନେ ଜଳ ନିକଟରେ ବସା ବାନ୍ଧନ୍ତି । ଏହାହିଁ ସାଧାରଣ ଧାରଣା; ମାତ୍ର ତା' ଭିତରେ ଅନେକ ତାରତମ୍ୟ ରହିଥାଏ । ଦୁଇଟି ବ୍ୟତିକ୍ରମର ଉଦାହରଣ ନେବା । ବାଂଶ ପାତ୍ରୁଆ (Bee-eater) ଭୂମିବାସୀ ପକ୍ଷୀ ନହେଲେ ମଧ୍ୟ ମାଟିବନ୍ଧ ବା ନଦୀ ଅତଡ଼ାରେ ଆନୂଭୂମିକ ସୁଡ଼ଙ୍ଗ ତିଆରି କରିଥାଏ । ଅନେକ ଜାତିର ପାତିହଂସ ଗଛରେ ନୀଡ଼ ରଚନା କରନ୍ତି ।

ନୀଡ଼ର ଆକାର ଓ ଗଠନରେ ବିଶେଷ ପାର୍ଥକ୍ୟ ଦେଖାଯାଏ । କେତେକ ଭୂମିଗୃହୀ ପକ୍ଷୀ କେବଳ ମାଟିକୁ ଗୋଟିଏ କଡ଼କୁ ଟିକିଏ ଆଞ୍ଚୁଡ଼ି ଦେଇ ସେଇ ଖାତରେ ଅଣ୍ଡା ଦିଅନ୍ତି । ଅପର ପକ୍ଷରେ ଆମର ସୁପରିଚିତ ବାୟା ଚଢ଼େଇର ବସା ନଡ଼ା ଓ ବେଣ୍ଟ ଯତ୍ନ ଓ ପରିଶ୍ରମ ସହକାରେ ତିଆରି ହୋଇଥାଏ । ଏଥିରେ ଡିମ୍ବ ରଖିବା ପାଇଁ ଭିତର ଆଡ଼କୁ ଏକ ସ୍ୱତନ୍ତ୍ର କକ୍ଷ ରହିଥାଏ । ନୀଡ଼ ଦେଖିଲେ ମନେହୁଏ ସତେ ଯେପରି ଟୋକେଇ-ବୁଣାଳିର ନିପୁଣ କାରିଗର ହାତରେ ବୁଣାହୋଇଛି । କେତେକ ପକ୍ଷୀ ଗଛର କୋରଡ଼ ବା ଘର କାନ୍ଥ ଉପରେ ନରମ ପଦାର୍ଥ ବିଛାଇ ସେଥିରେ ଅଣ୍ଡା ଦିଅନ୍ତି, କେତେକ ମାଟିରେ ସୁଡ଼ଙ୍ଗ ତିଆରି କରନ୍ତି; ପୁଣି କେତେକ ଗଛ ଡାଳରେ ଘାସରେ କପ୍ ପରି ବସା ନିର୍ମାଣ କରନ୍ତି । କେତେକ ଜଳଗୃହୀ ପକ୍ଷୀ; ଯଥା—ଦଳଫିମ୍ପି (Jacana), ସେମାନଙ୍କର ସାମାନ୍ୟ ବସା ଭାସମାନ ପତ୍ର ଉପରେ ତିଆରି କରନ୍ତି । ଆମେ ଆଗରୁ କହିଛୁ, କେତେକ ପକ୍ଷୀ ବସା ବାନ୍ଧିବା ପୂର୍ବରୁ ତାଙ୍କ ନିଜ ଜାତିର ଚଢ଼େଇ ଆଖପାଖରେ ଯେ ନୀଡ଼ ରଚନା କରୁନାହିଁ, ସେ ବିଷୟରେ ଆଗ ନିଶ୍ଚିନ୍ତ ହୁଅନ୍ତି । ଅପର ପକ୍ଷରେ କେତେକ ଜାତିର ପକ୍ଷୀ ବସତି କଲା ପରି ବହୁସଂଖ୍ୟାରେ ଏକ ସ୍ଥାନରେ ନୀଡ଼ ରଚନା କରନ୍ତି । ଏକତ୍ର ବେଶୀ ସଂଖ୍ୟାରେ ପକ୍ଷୀ ନୀଡ଼ ରଚନା କଲେ, ନିରାପତ୍ତା ଦୃଷ୍ଟିରୁ ସୁବିଧା । ମାତ୍ର ଆଶ୍ଚର୍ଯ୍ୟର କଥା ଏହି ଯେ ପ୍ରାୟଶଃ ଦୁର୍ବଳ ପକ୍ଷୀ ତୁଳନାରେ ଅପେକ୍ଷାକୃତ ସବଳ ଓ ବଡ଼ ପକ୍ଷୀ; ଯଥା—ସାରସ (Stork) ଓ ବଗ (Heron, egret) ମାନେ ଏକ ସ୍ଥାନରେ ବସା ତିଆରି କରନ୍ତି । ଅପର ପକ୍ଷରେ କ୍ଷୁଦ୍ର ଓ ନିରୀହ ତରୁଶାଖାବାସୀ ପକ୍ଷୀ (Passerines); ଯଥା—ଦର୍ଜି ଟିକ୍କ

ଚଢ଼େଇ (Tailor bird) ଓ ଟିକ ଚଢ଼େଇ (Wren warbler) ଓ ସୁଇଁ (Robin) ଅଲଗା ଅଲଗା ସ୍ଥାନରେ ନୀଡ଼ ବାନ୍ଧନ୍ତି ଓ ପକ୍ଷୀବସାର ଛଦ୍ମରୂପ ଯୋଗୁଁ ଶତ୍ରୁ ତାହା ସହଜରେ ସନ୍ଧାନ କରିପାରେନାହିଁ । ଏହାର ଏକ ସମ୍ଭାବ୍ୟ କାରଣ ହୋଇପାରେ, କ୍ଷୁଦ୍ରତର ପକ୍ଷୀମାନେ ଦୂର ପଥ ଉଡ଼ିଯାଇ ଖାଦ୍ୟ ସଂଗ୍ରହ କରିବା ସମ୍ଭବ ନୁହେଁ; ତେଣୁ ସେମାନେ ବସା କରୁଥିବା ଅଞ୍ଚଳରେ ତାଙ୍କ ସହିତ ଖାଦ୍ୟ ପାଇଁ ଆଉ କେହି ପ୍ରତିଦ୍ୱନ୍ଦ୍ୱୀ ନାହିଁ, ସେ ବିଷୟରେ ନିଶ୍ଚିନ୍ତ ହୁଅନ୍ତି । ଅପର ପକ୍ଷରେ ବଡ଼ ବଡ଼ ପକ୍ଷୀମାନେ ଖାଦ୍ୟ ଅନ୍ୱେଷଣ ପାଇଁ ବହୁ ଦୂର ସ୍ଥାନକୁ ଉଡ଼ିଯାନ୍ତି; ତେଣୁ ଖାଦ୍ୟ ଅନ୍ୱେଷଣରେ ତାଙ୍କ ସହିତ କିଏ ପ୍ରତିଦ୍ୱନ୍ଦ୍ୱୀ, ସେ ବିଷୟରେ ସେମାନେ ଉଦ୍‌ବିଗ୍ନ ହୁଅନ୍ତି ନାହିଁ ।

ଅଣ୍ଡା ଉଷୁମାଇବା ଓ ଶାବକକୁ ଆହାର ଦେବାରେ ଅଣ୍ଡିରି ଓ ମାଈ ପକ୍ଷୀର ଅଂଶ ପକ୍ଷୀର ଜାତି ଅନୁସାରେ ଭିନ୍ନ ହୋଇଥାଏ । କେତେକ କ୍ଷେତ୍ରରେ ସେ କାମକୁ ଉଭୟ ଅଧାଅଧି ଭାଗକରିନିଅନ୍ତି । କେତେକ କ୍ଷେତ୍ରରେ ପକ୍ଷିଣୀ ବେଶି ଭାଗ ଦାୟିତ୍ୱ ବହନ କରେ । କେତେକ କ୍ଷେତ୍ରରେ ଅବଶ୍ୟ ଏହାର ବ୍ୟତିକ୍ରମ ଦେଖାଯାଏ । ବାଲି ଟେଣ୍ଟେଇ (Painted snipe) ଓ ଦଳଫିମ୍ପି (Jacana) ପକ୍ଷୀମାନଙ୍କ ମଧ୍ୟରେ ପୁରୁଷ ପକ୍ଷୀ ଘରର ଅଧିକାଂଶ ଦାୟିତ୍ୱ ବହନ କରେ । ସେ ଯାହାହେଉ ପ୍ରତ୍ୟେକ ପକ୍ଷୀ-ପିତାମାତା-ମାନଙ୍କୁ କଠିନ ପରିଶ୍ରମ କରିବାକୁ ପଡ଼ିଥାଏ । ନିରୂପିତ ହୋଇଛି ଯେ ପ୍ରଥମ କେଇଦିନ ପକ୍ଷିଶାବକ ପ୍ରତ୍ୟହ ନିଜ ଓଜନର ଦୁଇଗୁଣା ଖାଦ୍ୟ ଖାଏ । ଏତେବେଳେ ସେମାନେ ଅଦ୍ଭୁତ ବେଗରେ ବୃଦ୍ଧି ପାନ୍ତି । ଅବଶ୍ୟ କେବଳ ପ୍ରଥମାବସ୍ଥାରେ ସେମାନଙ୍କୁ ଏପରି ଭାବରେ ଖୁଆଇବାକୁ ପଡ଼ିଥାଏ । ଛୁଆ ଫୁଟିବାଠାରୁ ସାତ ଆଠ ଦିନ ଯାଏ ସୂର୍ଯ୍ୟ ଉଦୟଠାରୁ ଅସ୍ତ ହେବା ପର୍ଯ୍ୟନ୍ତ ବାପ-ମା' ଅବିରାମଭାବେ ଦଉଡ଼ି ଦଉଡ଼ି ଖାଦ୍ୟ ଆଣି ଆଣି ନୟାନ୍ତ ହୋଇଗଲେ ମଧ୍ୟ ପିଲାମାନଙ୍କ ପେଟ ପୂରେନାହିଁ ।

ପକ୍ଷିଶାବକମାନେ ହିଂସ୍ର ପ୍ରାଣୀ ଓ ଅନ୍ୟାନ୍ୟ ଦୁର୍ଘଟଣାରୁ ରକ୍ଷାପାଇଲେ ମଧ୍ୟ ନୀଡ଼ରେ ସେମାନଙ୍କର ଜୀବନ ସଙ୍କଟାପନ୍ନ ରହିଥାଏ । ଯେଉଁ ପକ୍ଷିଶାବକମାନେ ସେଁ-ସାଁ ହୋଇ ବେଶି ଥଣ୍ଟ ବଢ଼ାନ୍ତି, ସେମାନଙ୍କ ପାଟିରେ ଆଗ ଆହାର ପଡ଼େ । ଏଣୁ ଯେଉଁ ଶାବକ ସବାପଛରେ ଅଣ୍ଡାରୁ ଫୁଟିଥାଏ ବା ଯେ ମୂଳରୁ ଦୁର୍ବଳ ତା' ପାଇଁ ଜୀବନ ଦୁର୍ବହ ହୋଇଉଠେ । ଆହୁରି ମଧ୍ୟ ଦୁର୍ବଳ ଶାବକକୁ ଅନ୍ୟ ଶାବକମାନେ ମାଡ଼ି-ଚକଟି ପକାଇବା ଓ ସେ ନୀଡ଼ ବାହାରକୁ ଖସିପଡ଼ିବାର ମଧ୍ୟ ଆଶଙ୍କା ରହିଥାଏ । ଏସବୁ ନୀଡ଼ ଭିତର ଦୁର୍ଘଟଣା । ନୀଡ଼ ବାହାରୁ ବିଲେଇ, ଏଣ୍ଡୁଅ, ମୂଷା, ସାପ, କାଉ-

ଓ ଅନ୍ୟାନ୍ୟ ପକ୍ଷୀ ଆସି ସେମାନଙ୍କୁ ଖାଇଯାଇପାରନ୍ତି । ଝଡ଼ ବତାସ ଓ ଅନ୍ୟାନ୍ୟ ପ୍ରାକୃତିକ ଦୁର୍ଘଟଣାରୁ ମଧ୍ୟ ବିପଦ ରହିଥାଏ । ପକ୍ଷୀଛୁଆ ନୀଡ଼ ଛାଡ଼ି ଗଲେ ମଧ୍ୟ ଏସବୁ ଦୁର୍ଘଟଣାରୁ ବିପଦର ଆଶଙ୍କା ଥାଏ । ଏଥିରୁ ବୁଝାପଡ଼ିବ, ଅନେକ ଜାତି ପକ୍ଷୀ ଥରକରୁ ଅଧିକ ଅଣ୍ଡା ଦେଇ ଛୁଆ କାଢ଼ିଲେ ମଧ୍ୟ ଓ ଥରକେ ଅନେକ ଅଣ୍ଡା ଦେଲେ ମଧ୍ୟ ସେମାନଙ୍କର ସଂଖ୍ୟା ବଢ଼େନାହିଁ । ସ୍ୱଭାବତଃ, ବେଶି ବିପଦର ସମ୍ମୁଖୀନ ହେଉଥିବା ପକ୍ଷୀମାନେ ଥରକରେ ଅଧିକ ଅଣ୍ଡା ଦିଅନ୍ତି; ଯଥା ପାତିହଂସ; ବା ପ୍ରଜନନ ଋତୁରେ ଥରକରୁ ଅଧିକ ଥର ଅଣ୍ଡା ଦେଇ ଶାବକ ଉତ୍ପାଦନ କରନ୍ତି; ଯଥା—କ୍ଷୁଦ୍ର ଆକୃତିର ପକ୍ଷୀମାନେ । ଯଦି ଅଣ୍ଡା ବା ଶାବକଭର୍ତ୍ତି ନୀଡ଼ ନଷ୍ଟ ହୋଇଯାଏ, ତେବେ ବାପ ମା' ଶୋକରେ ସମୟ ନଷ୍ଟ କରନ୍ତି ନାହିଁ । ସେମାନେ ଗୋଟିଏ ନୂଆ ନୀଡ଼ ରଚନା କରିବାରେ ଲାଗିପଡ଼ନ୍ତି । ଏହି ଅଧ୍ୟାୟର ମୂଳରେ ଆମେ ଉଲ୍ଲେଖ କରିଛୁ ଯେ ସମସ୍ତ ପ୍ରାଣୀମାନଙ୍କ ପରି, ପକ୍ଷୀମାନଙ୍କଠାରେ ମଧ୍ୟ ବଂଶବୃଦ୍ଧି ପାଇଁ ସହଜାତ ପ୍ରବୃତ୍ତି ସବୁଠାରୁ ବଳବତ୍ତର ପ୍ରବୃତ୍ତି ଏବଂ ଏଥିପାଇଁ ସେମାନେ ଆଶ୍ଚର୍ଯ୍ୟକର ଭାବେ ବାଧା-ବିଘ୍ନ ଏଡ଼ି ତାହା କରନ୍ତି ।

# ପକ୍ଷୀମାନଙ୍କର ଦେଶାନ୍ତର-ବାସ (Migration)

ପକ୍ଷୀମାନଙ୍କର ଦେଶାନ୍ତର ବାସ ପକ୍ଷୀବିଜ୍ଞାନରେ ସବୁଠାରୁ ବଳି କୌତୁକପୂର୍ଣ୍ଣ । ଆହୁରି ବିଚିତ୍ର କଥା ଏହି ଯେ ଏହାର ରହସ୍ୟ ଏବେ ମଧ୍ୟ ଉଦ୍‌ଘାଟିତ ହୋଇନାହିଁ । ବର୍ଷରେ ଦୁଇଥର, ବସନ୍ତ ଓ ଶରତ୍ କାଳରେ ପକ୍ଷୀମାନେ ଲକ୍ଷ ଲକ୍ଷ ସଂଖ୍ୟାରେ ଆକାଶମାର୍ଗରେ ଦୀର୍ଘପଥ ଯାତ୍ରାକରି ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳରେ ପହଞ୍ଚନ୍ତି ଏବଂ ଏଥିପାଇଁ ସେମାନଙ୍କୁ ସମୟ ସମୟରେ ମହାସାଗର ଓ ମହାଦେଶ ଅତିକ୍ରମ କରିବାକୁ ପଡ଼ିଥାଏ । କି ପ୍ରକାର ପ୍ରବର୍ତ୍ତନା ଫଳରେ ସେମାନେ ଏହା କରନ୍ତି ? ସେମାନେ କାହିଁକି ଏପରି ବିପଦସଙ୍କୁଳ ଯାତ୍ରାରେ ବାହାରନ୍ତି ? ସେମାନେ କିପରି ଜାଣନ୍ତି କେଉଁ ବାଟରେ ଯିବାକୁ ହେବ ?—ଏସବୁ ମୌଳିକ ପ୍ରଶ୍ନର ଉତ୍ତର ଏଯାଏଁ ସନ୍ତୋଷଜନକ ଭାବେ ମିଳି ନାହିଁ । ଅବଶ୍ୟ ଯନ୍ତ୍ରସହକାରେ ପରୀକ୍ଷଣ ଫଳରେ ଓ ବହୁ ସଂଖ୍ୟାରେ ପରିବ୍ରାଜୀ (migratory) ପକ୍ଷୀମାନଙ୍କୁ ଧରି ସେମାନଙ୍କ ଗୋଡ଼ରେ ମୁଦି ପିନ୍ଧାଇ ପୁଣି ଛାଡ଼ିଦେବା ଓ ଅନ୍ୟତ୍ର ଧରିବା ଫଳରେ ଏ ସମ୍ବନ୍ଧରେ ପୂର୍ବେ ଆମର ଯେତିକି ଜ୍ଞାନ ଥିଲା, ତା'ଠାରୁ ଅତି ଅଧିକ ସତ୍ୟ ଉଦ୍‌ଘାଟିତ ହୋଇଅଛି ।

ପକ୍ଷୀମାନଙ୍କର ପରିବ୍ରଜନର ମୂଳକଥା ହେଲା, ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରୁ ଅନ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନକୁ ନିୟମିତ ଭାବେ ଯିବା ଓ ଫେରିଆସିବା । ଏଭଳି ଯାତ୍ରା କେଉଁ ସପ୍ତାହ ଭିତରେ ଓ ସମୟ ସମୟରେ କେଉଁ ଦୁଇ ଗୋଟି ଦିନ ଭିତରେ ଘଟିବ, ତାହା ଆଗରୁ ଭବିଷ୍ୟତ୍ ବାଣୀ କରି ଜଣାଯାଇପାରେ । ପକ୍ଷୀମାନେ ଏହି ଯାତ୍ରାରେ ବାହାରି ପୁଣି ସେହି ଅଞ୍ଚଳକୁ, ପ୍ରାୟଶଃ ସେହି ଉଦ୍ୟାନ ବା କ୍ଷେତ୍ରକୁ ଫେରିଆସନ୍ତି । ସେମାନଙ୍କର ଗ୍ରୀଷ୍ମ ଓ ଶୀତ ନିବାସ ଉଭୟତ୍ର ଏହା ଦେଖିବାକୁ ମିଳିଥାଏ । ଏହି ଦୁଇ ନିବାସ ମଧ୍ୟରେ ବ୍ୟବଧାନ ବହୁ ଶତ ମାଇଲ ହୋଇପାରେ ।

ସ୍ୱତଃ ମନରେ ପ୍ରଶ୍ନ ଉଠେ, କାହିଁକି କେବଳ କେତେକ ଜାତିର ପକ୍ଷୀ ଦେଶାନ୍ତର-ବାସ କରନ୍ତି ଓ ଅନ୍ୟମାନେ ସେପରି କରନ୍ତି ନାହିଁ ? ଏହାର ସୁସ୍ପଷ୍ଟ ଉତ୍ତର ଏହି ଯେ କେତେକ ଜାତି ପକ୍ଷୀ ଦେଶାନ୍ତର-ବାସ ଫଳରେ ଦୀର୍ଘତର ଜୀବନ ଧାରଣ କରିବାକୁ ସକ୍ଷମ ହୁଅନ୍ତି; ମାତ୍ର ଅନ୍ୟ ଜାତି ପକ୍ଷୀଙ୍କ ପାଇଁ ତାହା ମୂଲ୍ୟହୀନ । କେତେକ ଜାତି ପକ୍ଷୀଙ୍କ ମଧ୍ୟରେ ଏହି ଦୀର୍ଘତର ଜୀବନ ନିଶ୍ଚୟ ସାମାନ୍ୟ; କାରଣ ସେମାନଙ୍କ ମଧ୍ୟରୁ ମାତ୍ର କେତେକ ଦେଶାନ୍ତର-ବାସ କଲାବେଳେ ଅନ୍ୟମାନେ ସ୍ୱସ୍ଥାନରେ ରହନ୍ତି, ପରିବ୍ରଜନ କରନ୍ତି-

ବାହାରନ୍ତି ନାହିଁ । ଏପ୍ରକାର ପରିବ୍ରଜନର ଉଦାହରଣ ହେଲା, ଆମର ଚଢ଼ା (Coot) ଓ ଚାମଚ ଗୋଡ଼ା ବା ଚାମଚ ଦାଢ଼ (Spoon bill) ପକ୍ଷୀ । କୌଣସି ସ୍ଥାନରେ ବାସ କରୁଥିବା ଏହି ପକ୍ଷୀମାନଙ୍କ ମଧ୍ୟରୁ କେତେକ ପ୍ରତି ବର୍ଷ ଦେଶାନ୍ତର ବାସରେ ବାହାରି-ଯାଆନ୍ତି ଓ ବାକି ପକ୍ଷୀମାନେ ରହିଯାନ୍ତି । ଯେଉଁମାନେ ରହିଯାନ୍ତି, ପରିଭ୍ରମଣରେ ନ ଯିବା ଫଳରେ ସେମାନଙ୍କର କୌଣସି ହାନି ହେଉଥିଲା ପରି ଜଣାପଡ଼େନାହିଁ ।

ଉତ୍ତର ଗୋଲାର୍ଦ୍ଧରେ ପକ୍ଷୀମାନେ ଶରତ୍ କାଳରେ ଉତ୍ତରରେ ଅବସ୍ଥିତ ସେମାନଙ୍କର ଜନ୍ମଭୂମିରୁ ଦକ୍ଷିଣକୁ ଅର୍ଥାତ୍ ଉଚ୍ଚ ସ୍ଥାନରୁ ନିମ୍ନଭୂମିକୁ ଉଡ଼ିଯାନ୍ତି । ଅବଶ୍ୟ ଦକ୍ଷିଣ ଗୋଲାର୍ଦ୍ଧରେ ଏହାର ଓଲଟା ହୁଏ । ସେମାନେ ଦକ୍ଷିଣର ଶୈତ୍ୟକୁ ଏଡ଼ାଇବା ପାଇଁ ଉତ୍ତରକୁ ଉଡ଼ିଯାନ୍ତି । ଏଥିରୁ ବୁଝାପଡ଼ିବ, ଅନେକ ପକ୍ଷୀ କଠୋର ଶୀତରୁ ରକ୍ଷା ପାଇବାପାଇଁ, ଶୀତ ଆରମ୍ଭ ହେବା ପୂର୍ବରୁ ଅପେକ୍ଷାକୃତ ଅଳ୍ପ ଶୀତ ଅଞ୍ଚଳକୁ ପରି-ଭ୍ରମଣରେ ଚାଲିଯାନ୍ତି ଓ ମାତୃଭୂମିରେ ଗରମ ପଡ଼ିବାକୁ ଆରମ୍ଭ କଲାବେଳକୁ ବାହୁଡ଼ି ଆସନ୍ତି । ଜନ୍ମଭୂମିକୁ ଫେରିଆସିଲାବେଳକୁ ସେଠାରେ ଗଛରେ ଶୀତ ପରେ ନୂତନ ମୁକୁଳର ଉଦ୍‌ଗମ ହୋଇଥାଏ ଓ ଫୁଲ ଫୁଟିବାକୁ ଆରମ୍ଭ କରୁଥାଏ ଏବଂ ପକ୍ଷୀ-ପରିବାରର ଭରଣପୋଷଣ ପାଇଁ ଯଥେଷ୍ଟ ପୋକଜୋକ ମିଳେ । ଗ୍ରୀଷ୍ମ ଶେଷବେଳକୁ ପକ୍ଷୀଶାବକ ବଡ଼ ହୋଇ ସ୍ୱାଧୀନଭାବେ ଚଲାବୁଲା କରିବାକୁ ସକ୍ଷମ ହୋଇସାରିଥାନ୍ତି ଏବଂ ଶରତ୍ କାଳର ପ୍ରଥମ ହେମାଳ ଆରମ୍ଭ ହେବା ପୂର୍ବେ ସେମାନେ ଦକ୍ଷିଣ ପଥରେ ଯାତ୍ରା ପାଇଁ ପ୍ରସ୍ତୁତ ହୋଇଥାନ୍ତି । କେତେକ ପକ୍ଷୀ ସେମାନଙ୍କର ଜନ୍ମଭୂମିରେ ନିତାନ୍ତ ଅଳ୍ପକାଳ କଟାଉଥିବା ପରି ମନେହୁଏ । ଉଦାହରଣରେ, ଭଲେର ପକ୍ଷୀ (Rosy Pastor) ମଧ୍ୟ-ଏସିଆରେ ଛୁଆ କରେ; ମାତ୍ର ସେ ମେ' ମାସରେ ଭାରତରୁ ସ୍ୱଦେଶକୁ ବାହୁଡ଼ିଯାଏ ଓ ଅଗଷ୍ଟ ମାସ ବେଳକୁ ଭାରତକୁ ପୁଣି ଫେରିଆସିଥାଏ । ଅବଶ୍ୟ ଅଧିକାଂଶ ପକ୍ଷୀ ଆଉ ଟିକେ ଅଧିକ ସମୟ ନେଇଥାନ୍ତି । ସେମାନେ ମାର୍ଚ୍ଚ ମାସରେ ଭାରତରୁ ପ୍ରତ୍ୟାବର୍ତ୍ତନ କରି ସେପ୍‌ଟେମ୍ବର ମାସକୁ ଚାଲିଆସନ୍ତି ।

ଏପର୍ଯ୍ୟନ୍ତ ଯାହା ଦେଖିଲେ, ସେଥିରୁ ମନେହୁଏ, ପକ୍ଷୀମାନଙ୍କର ଶ୍ରମସାଧ୍ୟ ଦେଶାନ୍ତର ଯାତ୍ରାର ମୂଳ୍ୟ ଅଛି ଓ, କେତେକ ପରିମାଣରେ ଆବଶ୍ୟକତା ମଧ୍ୟ ରହିଛି; ମାତ୍ର ପ୍ରହେଳିକା ଏହି ଯେ କେତେକ ପକ୍ଷୀ ପୂର୍ବରୁ ପଶ୍ଚିମକୁ, ସମାନ ଉଚ୍ଚଭୂମି ଓ ସମାନ ଜଳବାୟୁରେ ଅବସ୍ଥିତ ସ୍ଥାନକୁ ନୀଡ଼ ରଚନା କରିବା ପାଇଁ ଉଡ଼ିଯାନ୍ତି । ପୁଣି ଅନେକ ପକ୍ଷୀ ମାତ୍ର କେତେ କିଲୋମିଟର ପରିବ୍ରଜନରେ ଯାଇଥାନ୍ତି । ଏହି ସ୍ଥାନୀୟ ସ୍ଥାନାନ୍ତର (Local migration) ସେମାନଙ୍କ ପାଇଁ କିପରି ଅତ୍ୟାବଶ୍ୟକ ବା ହିତକର

ତାହା ବୁଝିବା କଷ୍ଟ । ଉଦାହରଣରେ, ବମ୍ବେରେ ହଳଦ ବସନ୍ତ (Oriole), ବାଂଶ ପାତୁର (Bee-eater) ଆଦ ପକ୍ଷୀମାନେ ମୌସୁମୀ ବର୍ଷାକାଳରେ ନଗରାଞ୍ଚଳ ପରିତ୍ୟାଗ କରି ଅଳ୍ପଦୂର ଦାକ୍ଷିଣାତ୍ୟ ଉପତ୍ୟକା (Deccan Plateau) ବା ମଧ୍ୟ-ଭାରତକୁ ଉଡ଼ିଯାଆନ୍ତି ଓ ଠିକ୍ ସେପ୍ଟେମ୍ବର ମାସ ଆରମ୍ଭକୁ ଫେରିଆସନ୍ତି । ଏହି ସ୍ଥାନୀୟ ପରିବ୍ରଜନ ବେଶ୍ ଅଧିକ ସଂଖ୍ୟାରେ ଘଟେ, ଏତିକ ଜାଣିବା ଛଡ଼ା ସେ ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ସୀମିତ; କାରଣ ଆମ୍ଭେ ଯେ ପର୍ଯ୍ୟନ୍ତ ବହୁସଂଖ୍ୟାରେ ପକ୍ଷୀ ଧରି ତାଙ୍କ ଗୋଡ଼ରେ ମୁଦ ପିନ୍ଧାଇ ନ ଛାଡ଼ିଛୁ ଓ ପୁଣି ଧରି ନିର୍ଭୁଲ ତଥ୍ୟ ସଂଗ୍ରହ ନ କରିଛୁ, ସେପର୍ଯ୍ୟନ୍ତ ସେମାନଙ୍କର ଗତିବିଧି ସମ୍ବନ୍ଧରେ ଆମର ଜ୍ଞାନ ସୀମାବଦ୍ଧ ହୋଇ ରହିଥିବ ।

ଆଉ ଗୋଟିଏ କଥା ପକ୍ଷୀମାନଙ୍କର ଦେଶାନ୍ତର ଭ୍ରମଣ ବିଷୟଟିକୁ ଆହୁରି ଜଟିଳ କରେ । ଅଧିକାଂଶ ପକ୍ଷୀମାନଙ୍କ ପାଇଁ ଦେଶାନ୍ତର ଭ୍ରମଣ ପ୍ରଜନନ କିମ୍ବା ସମାପନ ପାଇଁ ଉଦ୍ଦିଷ୍ଟ । ସେମାନେ ଜନ୍ମଭୂମିକୁ ସିଧାସଳଖ ଯାତ୍ରା କରିଥାନ୍ତି ଓ ପ୍ରତ୍ୟାବର୍ତ୍ତନ କରନ୍ତି । ଅବଶ୍ୟ ସେମାନେ ଗୋଟିଏ ବାଟେ ଯାଆନ୍ତି ଓ ଅନ୍ୟ ଏକ ପଥରେ ଫେରନ୍ତି । ମାତ୍ର କେତେକ ଦୁଃସାହସିକ ପକ୍ଷୀମାନଙ୍କ ପକ୍ଷରେ ଦେଶାନ୍ତର ଭ୍ରମଣ କଥାଟା ଆହୁରି ଅଧିକ ଜଟିଳ । ସେମାନେ ତାଙ୍କର ପ୍ରଜନନ ଭୂମିକୁ ଯାନ୍ତି ଓ ସେଠାରେ ଅଣ୍ଡା ଦେଇ ଛୁଆ ଫୁଟାଇ ଶାବକ ନିଜ କଥା ନିଜେ ବୁଝିପାରିବା ଭଳି ବଡ଼ ହେବା ପରେ ଯାଇ ତାଙ୍କୁ ଛାଡ଼ି ଅନ୍ୟ ସ୍ଥାନକୁ ଯାନ୍ତି । ମନେହୁଏ, ଏ ଦ୍ୱିତୀୟ ସ୍ଥାନକୁ ସତେ ଯେପରି ଛୁଟି କଟାଇବାକୁ ଯାଇଥିଲେ । ସେଠାରେ କିଛି ଦିନ କଟାଇ ସେମାନେ ପୁଣି ତାଙ୍କର ଜନ୍ମଭୂମିକୁ ଫେରି ଅଳ୍ପ କାଳ ରହନ୍ତି । ତା'ପରେ ସେମାନେ ତାଙ୍କର ଶୀତକାଳୀନ ନିବାସକୁ ଉଡ଼ିଆସନ୍ତି । ଏଥିରୁ ଦେଖାଯିବ, ପକ୍ଷୀମାନଙ୍କର ପରିବ୍ରଜନ ଅତି ଜଟିଳ ଏବଂ କେତେକଙ୍କର ଏହି ଯାତ୍ରା ଆମ୍ଭମାନଙ୍କର ଅବୋଧ । ଆମ୍ଭେ ଏତିକ ଜାଣୁ ଯେ ପକ୍ଷୀମାନଙ୍କର ଦେଶାନ୍ତର ଯାତ୍ରାର ମୁଖ୍ୟ ଲକ୍ଷଣ ହେଲ, ସେମାନେ ଗୋଟିଏ ସ୍ଥାନରୁ ଅନ୍ୟ ଗୋଟିଏ ସ୍ଥାନକୁ ଉଡ଼ିଯାନ୍ତି ଓ ବାହୁଡ଼ି ଆସନ୍ତି । ଏହା ନିୟମିତ ଭାବେ ସାଧିତ ହୁଏ ଏବଂ ଏହି ଯାତ୍ରାର ମୂଳ ଉଦ୍ଦେଶ୍ୟ, ବର୍ଷର ବିଭିନ୍ନ ସମୟରେ ବିଭିନ୍ନ ବାଞ୍ଛନୀୟ ବାସସ୍ଥାନ ନିରୂପଣ କରିବା ।

ଦୀର୍ଘ ପଥ ଯାତ୍ରାରେ ବାହାରିବା ପୂର୍ବରୁ ସେମାନେ ଦିନଦିନ ଧରି ପ୍ରସ୍ତୁତ ହେଉଥାନ୍ତି । ପେଟଭରି ପରି ସେମାନେ ବହୁତ ବହୁତ ଖାନ୍ତି; ତା'ହେଲେ ତାଙ୍କ ଦେହରେ ଯେପରି ଅଧିକ ଚର୍ବି ସଞ୍ଚିତ ହେବ ଓ ସେମାନେ ଦୀର୍ଘ ପଥ ଉଡ଼ି-

ପାରିବେ । ଏପରିକି କେତେକ ପକ୍ଷୀ ପରିବ୍ରଜନରେ ବାହାରିବା ପୂର୍ବରୁ ନିୟମିତଭାବେ ବ୍ୟାୟାମ ଅଭ୍ୟାସ କରନ୍ତି । ଉଦାହରଣରେ, ଏକାଠି ଦଳବାନ୍ଧିବା ଓ ଖଣ୍ଡେ ବାଟ ଉଡ଼ିଯିବା ଏହାର ଅନ୍ତର୍ଭୁକ୍ତ । ପରୀକ୍ଷଣଦ୍ୱାରା ଜଣାପଡ଼ିଛି ଯେ, ଦୀର୍ଘ ପଥ ଯାତ୍ରାରେ ବାହାରିଯିବା ପାଇଁ ସେମାନେ ଶେଷ ଇଙ୍ଗିତ ପାନ୍ତି ସୂର୍ଯ୍ୟ ଉଦୟ ଓ ଅସ୍ତର କାଳରୁ । ଏହି ଦୀର୍ଘ ଯାତ୍ରାରେ ସୂର୍ଯ୍ୟ ସେମାନଙ୍କ ପାଇଁ ଦିକ୍ ନିୟନ୍ତ୍ରଣ ଯନ୍ତ୍ର (କମ୍ପାସ୍) ପରି କାର୍ଯ୍ୟ କରେ । ବୈଜ୍ଞାନିକମାନେ ବିଶ୍ୱାସ କରନ୍ତି, ସୂର୍ଯ୍ୟ ଗଠନ କରୁଥିବା କୋଣ ଅନୁସାରେ ଏହି ପରିବ୍ରାଜୀ ପକ୍ଷୀମାନେ ସେମାନଙ୍କର ଦିଗ-ନିର୍ଣ୍ଣୟ କରନ୍ତି । କୁହୁଡ଼ି ଓ କୁଜ୍ଝଟିକା ଫଳରେ ସୂର୍ଯ୍ୟ ଦେଖାଯାନ୍ତି ନାହିଁ ଏବଂ ତା'ଫଳରେ ଅଳ୍ପ ସମୟ ପାଇଁ ସେମାନେ ଦିଗ ହରାଇ ପାରନ୍ତି; ମାତ୍ର ପୁଣି ତାହା ଛାଡ଼ିଗଲେ ଓ ସୂର୍ଯ୍ୟ ଦୃଶ୍ୟମାନ ହେଲେ ସେମାନେ ସେମାନଙ୍କର ଗନ୍ତପଥ ସଜାଡ଼ି ନେଇପାରନ୍ତି । ଯାତ୍ରାପଥରେ, ଭୂମି ଉପରେ କିଛି ଚିହ୍ନ ଥିଲେ ସେଗୁଡ଼ିକୁ ସେମାନେ ଉପେକ୍ଷା ନ କଲେ ମଧ୍ୟ, ସେମାନଙ୍କର ପ୍ରକୃତ ପଥ-ପ୍ରଦର୍ଶକ ଦିନବେଳେ ସୂର୍ଯ୍ୟ ଓ ରାତିରେ ତାରା । ପକ୍ଷୀମାନେ ୬୦୦ ରୁ ୧୩୦୦ ମିଟର ଉଚ୍ଚରେ ଉଡ଼ୁଥିବାରୁ ଭୂମି ଉପରେ ଥିବା କ୍ଷୁଦ୍ର କ୍ଷୁଦ୍ର ଚିହ୍ନ ସେମାନଙ୍କୁ ଦୃଶ୍ୟ ହୋଇ ନ ଥିବ । ଦିଗ ନିର୍ଣ୍ଣୟ କରିବାରେ ଭୂମି ଉପରେ ଥିବା ଚିହ୍ନର ଗୁରୁତ୍ୱ ଯେ ଅଳ୍ପ ଏହାର ଅନେକ ବିସ୍ମୟକର ପ୍ରମାଣ ଅଛି । ଅନେକ ଜାତି ପକ୍ଷୀମାନଙ୍କ ମଧ୍ୟରେ, ପ୍ରଥମ ଥର ପାଇଁ ପରିବ୍ରଜନ କରୁଥିବା ତରୁଣ ପକ୍ଷୀମାନେ ସେମାନଙ୍କର ପିତାମାତାଙ୍କ ସାହାଯ୍ୟ ନ ନେଇ ଅଲଗା ବାହାରିଯାନ୍ତି । ପକ୍ଷୀମାନେ କେଉଁ ଇନ୍ଦ୍ରିୟ ଶକ୍ତି ବଳରେ ସୂର୍ଯ୍ୟଙ୍କ ଅବସ୍ଥିତି ଅନୁସାରେ ଦିଗନିର୍ଣ୍ଣୟ କରି ଯାତ୍ରାପଥରେ ପରିଚାଳିତ ହୁଅନ୍ତି, ତାହା ବିଶ୍ଳେଷଣ କରିବାକୁ ଆମେ ଯେ ଅକ୍ଷମ, ଏହା ଆମେ ସ୍ୱୀକାର କରିବାକୁ ବାଧ୍ୟ ଏବଂ ସେଥିପାଇଁ ଆମେ ତାକୁ ସହଜାତ ପ୍ରବୃତ୍ତି (instinct) ବୋଲି କହିଥାଉ ।

ଅଳ୍ପ କେତେକ ଜାତିର ପକ୍ଷୀ ଗୋଟିକିଆ ଭାବେ ପରିବ୍ରଜନରେ ବାହାରନ୍ତି । ଅବଶ୍ୟ ଅଧିକାଂଶ ପକ୍ଷୀ ବଡ଼ ବା ସାନ ସାନ ଦଳରେ ଦେଶାନ୍ତର ଗମନ କରିଥାନ୍ତି । ଅନେକ କ୍ଷୁଦ୍ର ପକ୍ଷୀ ଅନ୍ୟ ସବୁ କାର୍ଯ୍ୟ ଦିନବେଳେ କରୁଥିଲେ ମଧ୍ୟ ଦେଶାନ୍ତର ଯାତ୍ରା ସମୟରେ ରାତିରେ ଉଡ଼ନ୍ତି । ସମ୍ଭବତଃ ପରଭକ୍ଷୀମାନଙ୍କ ଦାଉରୁ, ଅଧିକ ନିରାପତ୍ତା ପାଇଁ ସେମାନେ ଏପରି କରନ୍ତି । କ୍ଷୁଦ୍ର କ୍ଷୁଦ୍ର ପକ୍ଷୀମାନଙ୍କର ଯାତ୍ରାକାଳୀନ ବେଗ ପ୍ରାୟ ଘଣ୍ଟାକେ ୩୦ କିଲୋମିଟର । ଗୋଟିଏ ପରିବ୍ରାଜୀ ପକ୍ଷୀର ଗୋଟିଏ ଦିନର ଉଡ଼ିବା ପାଇଁ ସମୟ ପ୍ରାୟ ଆଠଘଣ୍ଟା ବୋଲି ହିସାବ କରାଯାଇଅଛି । ସେ ହିସାବରେ, ଗୋଟିଏ ପକ୍ଷୀ

ଗୋଟାଏ ଦୌଡ଼ରେ ପ୍ରାୟ ୨୫୦ କିଲୋମିଟର ପଥ ଉଡ଼ିଯାଏ । ବଡ଼ ପକ୍ଷୀମାନେ ଅଟଳଭାବେ ଘଣ୍ଟାକେ ପ୍ରାୟ ୮୦ କିଲୋମିଟର ବେଗରେ ଯାତ୍ରା କରନ୍ତି ଓ ତା’ ଫଳରେ ଗୋଟିଏ ଦିନରେ ବହୁତ ଅଧିକ ପଥ ଅତିକ୍ରମ କରନ୍ତି । ସମୁଦ୍ର ପାରହେଲାବେଳେ ସେମାନଙ୍କୁ ବାଧ୍ୟରେ ଅଧିକ ସମୟ ଉଡ଼ିବାକୁ ପଡ଼େ । ସେତେବେଳେ ଅନେକ ଛୋଟ ପକ୍ଷୀଙ୍କୁ ଏକାଦିକ୍ରମେ ୩୬ ଘଣ୍ଟା ପର୍ଯ୍ୟନ୍ତ ଉଡ଼ିବାର ଦେଖାଯାଇଅଛି । ଅନେକ ସମୟରେ ବିଶେଷ କରି, ଉଚ୍ଚରେ ଉଡ଼ୁଥିଲାବେଳେ ତଳକୁ ଓହ୍ଲାଇବା ସମୟରେ ଖରାପପାଗ ଓ ପ୍ରବଳ ଝଡ଼ର ସମ୍ମୁଖୀନ ହୁଅନ୍ତି । ଏତେବେଳେ ହତାହତ ସଂଖ୍ୟା ବଢ଼ିଯିବାର ସମ୍ଭାବନା ଅଧିକ । ମୋଟ ଉପରେ, ଦେଶାନ୍ତର ଯାତ୍ରା ସବୁବେଳେ କ୍ଲେଶକର ଓ କ୍ଳାନ୍ତିକ ଏବଂ ଅନେକ ସମୟରେ ବିପଜ୍ଜନକ ହୋଇପାରେ ।

ପକ୍ଷୀମାନଙ୍କ ମଧ୍ୟରେ କେତେ ଜାତି ପକ୍ଷୀ ପରିବ୍ରଜନ କରନ୍ତି, ତାହା ନିର୍ଣ୍ଣୟ କରିବା କଷ୍ଟକର । ହିସାବ କରାଯାଇଛି, ଯେତେ ଜାତିର ପକ୍ଷୀ ୟୁରୋପ ଓ ଏସିଆର ଉତ୍ତରାଞ୍ଚଳରେ ନୀଡ଼ ରଚନା କରନ୍ତି, ସେମାନଙ୍କ ମଧ୍ୟରୁ ଶତକଡ଼ା ପ୍ରାୟ ୪୦ ଭାଗ ପରିବ୍ରାଜୀ ପକ୍ଷୀ, ଅର୍ଥାତ୍ ଅଧିକରୁ ଊଣା । ବ୍ରିଟେନ୍‌ର ୬୮ ଜାତି ଗାୟକ ପକ୍ଷୀମାନଙ୍କ ମଧ୍ୟରୁ ୨୨ ଜାତି ପରିବ୍ରାଜୀ ପକ୍ଷୀ । ଭାରତରେ ଦେଖାଯାଉଥିବା ୧୨୦୦ ବିଭିନ୍ନ ଜାତି ପକ୍ଷୀମାନଙ୍କ ମଧ୍ୟରେ ୩୦୦ରୁ ଅଧିକ ଜାତି ପକ୍ଷୀ ଶୀତକାଳରେ ଦୂର ଦେଶରୁ ଆସିଥାନ୍ତି । ଅନ୍ୟ କଥାରେ କହିଲେ, ପକ୍ଷୀମାନଙ୍କ ମଧ୍ୟରେ ପରିବ୍ରାଜୀଙ୍କ ସଂଖ୍ୟା ଆଶ୍ଚର୍ଯ୍ୟଜନକ ଭାବେ ଉତ୍ତମ ସଂଖ୍ୟକ । ସୁମେରୁ ମଣ୍ଡଳୀୟ ଟର୍ନ୍ (Arcitic Tern) ପକ୍ଷୀ ପ୍ରତିବର୍ଷ ସୁମେରୁ ଅଞ୍ଚଳରୁ କୁମେରୁ ଅଞ୍ଚଳକୁ ଉଡ଼ିଯାଏ ଓ ପୁଣି ଫେରିଆସେ । ଏହି ଚକ୍ରଭ୍ରମଣ ଯାତ୍ରାର ପରିମାଣ ପ୍ରାୟ ୩୫୦୦୦ କିଲୋମିଟର । ପକ୍ଷୀମାନଙ୍କ ପକ୍ଷରେ କେତେ ହଜାର କିଲୋମିଟର ଯାତ୍ରା ଅସାଧାରଣ କଥା ନୁହେଁ । ୟୁରୋପରେ ନୀଡ଼ ରଚନା କରୁଥିବା ପକ୍ଷୀମାନଙ୍କ ମଧ୍ୟରୁ ଅନେକେ ଶୀତକାଳରେ ଦକ୍ଷିଣ ଆଫ୍ରିକା ପର୍ଯ୍ୟନ୍ତ ଉଡ଼ିଯାନ୍ତି । ଅବଶ୍ୟ ଅନେକ ଜାତି ୟୁରୋପୀୟ ପକ୍ଷୀ ଭୂମଧ୍ୟସାଗର (Mediteranean Sea) ଅଞ୍ଚଳର ଦେଶମାନଙ୍କୁ ଉଡ଼ିଯାଇ ସେଠାରେ ମାତ୍ର ଶୀତକାଳଟି କଟାନ୍ତି ।

ଆମ ଦେଶକୁ ପରିବ୍ରଜନରେ ଆସୁଥିବା ଅଧିକାଂଶ ପକ୍ଷୀ ଶୀତକାଳରେ ଆସନ୍ତି ଏବଂ ତାଙ୍କର ଅଣ-ପ୍ରଜନନ (non-breeding) କାଳଟି ଏଠାରେ ହିଁ କଟାନ୍ତି; ଆଉ କୁଆଡ଼କୁ ଉଡ଼ିଯାନ୍ତି ନାହିଁ । ପୂର୍ବ-ୟୁରୋପ, ଉତ୍ତର ଓ କେନ୍ଦ୍ର ଏସିଆ, ଏପରିକି ହିମାଳୟ ପର୍ବତମାଳା ଅଞ୍ଚଳରେ ନୀଡ଼ ରଚନା କରୁଥିବା ପକ୍ଷୀମାନଙ୍କ ମଧ୍ୟରୁ ଅନେକ

ଜାତି ପକ୍ଷୀ ଶୀତକାଳରେ ଭାରତୀୟ ଉପଦ୍ୱୀପକୁ ଆସିଥାନ୍ତି । ଆମ ଦେଶରେ ଦେଖା-ଯାଉଥିବା ପରିବ୍ରାଜୀ ପକ୍ଷୀମାନଙ୍କ ମଧ୍ୟରେ ସମୁଦ୍ରକୂଳ ଏବଂ ନଦୀ ଓ ହ୍ରଦରେ ପଡ଼ୁଥିବା ପାତିହଂସ (Ducks ) ଓ ଜଳଗୃଧ୍ର ପକ୍ଷୀ ସବୁଠାରୁ ବହୁଳ ।

ଏହି କଟିଏ ସତ୍ୟ କଥାଗୁଡ଼ିକ ବ୍ୟତୀତ ଭାରତରେ ପକ୍ଷୀମାନଙ୍କର ପରିବ୍ରଜନ ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ଅତ୍ୟନ୍ତ ଅଳ୍ପ । କେଉଁ ନିର୍ଦ୍ଦିଷ୍ଟ ସ୍ଥାନ ଓ ଅଧିବାସୀଙ୍କ ଭିତରୁ ସେମାନେ ଆସନ୍ତି, ଏ ଦେଶକୁ ଆସିଲାବେଳେ ଓ ଏ ଦେଶରୁ ଫେରିଲାବେଳେ କେଉଁ ମାର୍ଗ ଦେଇ ଉଡ଼ନ୍ତି ଏବଂ ଋତୁ ଅନୁସାରେ ସେମାନଙ୍କର ଗତିବିଧି ସମ୍ବନ୍ଧରେ ବିଶେଷ ବିବରଣୀ—ଏ ସମସ୍ତ ବିଷୟରେ ଆମେ ବିଶେଷ କିଛି ଜାଣୁନା । ପରିବ୍ରାଜୀ ପକ୍ଷୀମାନଙ୍କ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ବିବରଣୀ ସଂଗ୍ରହ ପାଇଁ ଚଳିତ ଶତାବ୍ଦୀର ପ୍ରାରମ୍ଭରୁ ଏକ ପଦ୍ଧତି ଅଧିକରୁ ଅଧିକ ଅନୁସୃତ ହେଉଅଛି । ତାହା ହେଲା, ସେମାନଙ୍କ ଗୋଡ଼ରେ ଆଲୁମିନିୟମ୍ ମୁଦି ପିନ୍ଧାଇବା । ପକ୍ଷୀମାନଙ୍କୁ ଜାଲରେ ଧରି, ମୁଦି ପିନ୍ଧାଇ, ନମ୍ବର ଖାତାରେ ଟିପି ରଖି ପୁଣି ସେମାନଙ୍କୁ ଛାଡ଼ିଦିଆଯାଏ । ମୁଦି ସବୁ ବିଶେଷ କାର୍ଯ୍ୟ ଲାଗି ବିଭିନ୍ନ ଆକାରର ହୋଇଥାଏ । ମୁଦି ଉପରେ ଏକ କ୍ରମିକ ସଂଖ୍ୟା ମୁଦ୍ରିତ ହୋଇଥାଏ ଏବଂ ମୁଦି ପିନ୍ଧାଇଥିବା ବ୍ୟକ୍ତି ବା ଅନୁଷ୍ଠାନର ଠିକଣା ଥାଏ । ତାହାହେଲେ ଦୈବକ୍ରମେ ବା ଅନ୍ୟ କୌଣସି ପ୍ରକାରେ କେହି ସେହି ପକ୍ଷୀକୁ ଧରିଲେ ବା ପାଇଲେ, ମୁଦି-ପିନ୍ଧାଳିକୁ ଜଣାଇ ଦେଇ ପାରିବେ । ବମ୍ବେ-ପ୍ରକୃତି-ବିଜ୍ଞାନ-ସମିତି (Bombay Natural History Society) ଏକ ଯୋଜନା ଅନୁସାରେ, ଭାରତର ବିଭିନ୍ନ ଅଞ୍ଚଳରେ ବହୁସଂଖ୍ୟାରେ ବିଭିନ୍ନ ଜାତିର ପରିବ୍ରାଜୀ ପକ୍ଷୀମାନଙ୍କୁ ଧରି ତାଙ୍କ ଗୋଡ଼ରେ ମୁଦି ପିନ୍ଧାଇ ଛାଡ଼ିଦିଏ । ଏହା ଫଳରେ ଗତ ଦଶବର୍ଷ ମଧ୍ୟରେ, ବହୁ ପରିମାଣରେ ପ୍ରକୃତ ତଥ୍ୟ ସଂଗୃହୀତ ହୋଇପାରିଛି, ଯାହା ପୂର୍ବେ ଆଦୌ ଜଣା ନ ଥିଲା । ଆମର କେତେକ ବଣ୍ୟ ପାତିହଂସ ୪୮୦୦ କିଲୋମିଟରରୁ ଅଧିକ ଦୂରରେ ସାଇବେରିଆ ଅଞ୍ଚଳରେ ଦେଖାଯାଇଛନ୍ତି ଏବଂ ଅନ୍ୟ କେତେକ ଜାତି ପକ୍ଷୀ ବହୁ ଦୂର ସ୍ଥାନରେ ଧରା-ହେବା ଫଳରେ ବହୁ ଦରକାରୀ ବିବରଣୀ ସଂଗୃହୀତ ହୋଇପାରିଛି । ଆଲୁମିନିୟମ୍ ମୁଦିରେ କ୍ରମିକ ନମ୍ବର ସାଙ୍ଗକୁ ଲେଖାଥାଏ "ବମ୍ବେ-ପ୍ରକୃତି-ବିଜ୍ଞାନ-ସମିତିକୁ ଜଣାନ୍ତୁ" ପାଠକମାନଙ୍କୁ ଅନୁରୋଧ ସେମାନେ ଏ ବିଷୟଟିକୁ ବିଶେଷ ଭାବେ ପ୍ରଚାର କରିବେ । ତାହାହେଲେ, କେହି କୌଣସି ମୃତପକ୍ଷୀର ଗୋଡ଼ରେ ମୁଦି ଥିଲେ କ'ଣ କରିବାକୁ ହେବ ଜାଣିଥିବେ । ତା' ନହେଲେ ମୂଲ୍ୟବାନ ତଥ୍ୟ ସଂଗୃହୀତ ହୋଇପାରିବ ନାହିଁ । ଅନେକ ବିଦେଶୀ ମୁଦି ଲାଗିଥିବା ପକ୍ଷୀ ମଧ୍ୟଭାରତରେ ଧରାହୁଅନ୍ତି । ସମସ୍ତ ପ୍ରକାର ମୁଦି

ଭାରତୀୟ ହେଉ ଅବା ବିଦେଶୀ ହେଉ, ବମ୍ବେ ପ୍ରକୃତି ବିଜ୍ଞାନ ସମିତିଠାକୁ ପଠାଇଦେବା ଭଲ । ତା' ସମ୍ଭବ ନ ହେଲେ, ନମ୍ବରଟି ଠିକ୍‌ଭାବେ ଟିପି, କେଉଁ ଅବସ୍ଥାରେ, ତାରିଖ ଓ ଅଞ୍ଚଳରେ ପକ୍ଷୀଟି ମିଳିଥିଲା, ତାହା ଜଣାଇଦେବେ । ଏ ପ୍ରକାର ସହଯୋଗମୂଳକ ଉଦ୍ୟମଦ୍ୱାରା ହିଁ ଭାରତରେ ପକ୍ଷୀମାନଙ୍କ ପରିବ୍ରଜନ ସମ୍ବନ୍ଧରେ ତଥ୍ୟ ସଂଗୃହୀତ ହୋଇପାରିବ ।

# ପକ୍ଷୀମାନଙ୍କର ବିବରଣୀ

**ବର୍ଗ ପୋଡ଼ିସିପେଡ଼ି ଫରମିସ** (Order PODICIPEDIFORMES) —ହଂସରାଳି (Grebe)—କ୍ଷୁଦ୍ରପକ୍ଷବିଶିଷ୍ଟ, ପ୍ରାୟ ଲାଞ୍ଜହୀନ ଜଳପକ୍ଷୀ; ଗୋଡ଼ଶରୀରରେ ଖୁବ୍ ପଛରେ ଅବସ୍ଥିତ; ପଦାଙ୍ଗୁଳି ପାଳି ପରି (Lobed) ଓ ମଧ୍ୟ-ଶିରା ଦୁଇକଡ଼ରେ ପଦ୍ମ ପତ୍ରୀ ପରି ପଦାଙ୍ଗୁଳି ଦୁଇପଟେ ଝାଲର ପରି ଚର୍ମ ରହିଥାଏ । ଏ ବର୍ଗର ପକ୍ଷୀ ମଧ୍ୟରେ ଆମ ଦେଶରେ ଦେଖାଯାଉଥିବା ସବୁଠାରୁ ପରିଚିତ ପକ୍ଷୀ ହେଲି ହଂସରାଳି (Little Grebe) ବା ପାଣିହଂସ (Dabchick) । ଏହି ପକ୍ଷୀର ବୈଜ୍ଞାନିକ ନାମ "ପୋଡ଼ିସେପ୍ସ ରୁଫିକୋଲିସ" (Podiceps ruficollis) ( ବର୍ଣ୍ଣଚିତ୍ର ୧ ) । ହିନ୍ଦୀରେ ଏମାନଙ୍କୁ ପାନ୍ଡୁବି, ଡୁବ୍ଡୁବି ଓ ଲିଓର୍ଡୀ ବୋଲି କହିଥାନ୍ତି । ଏହା ଏକ ହୃଷ୍ଟପୁଷ୍ଟ, କ୍ଷୁଦ୍ର ଧୂସର ବା ମସିଆ—ବାଦାମୀ ରଙ୍ଗର ସନ୍ତରଣକାରୀ ପକ୍ଷୀ । ଏହାର ପେଟପାଖ ରେଶମପରି, ଅଣ୍ଟ କ୍ଷୁଦ୍ର ଓ ଗୋଳିଆ ଏବଂ ଲାଞ୍ଜ ନାହିଁ । ପ୍ରଜନନ କାଳରେ ଏହାର ମୁଣ୍ଡ ଓ ବେକର ପକ୍ଷ ଘନ ବାଦାମୀ ବା ରକ୍ତାଭ ପୀତବର୍ଣ୍ଣ ଧାରଣ କରେ ଏବଂ ସ୍ଫୀତ ହଳଦିଆ ମୁଖପ୍ରାନ୍ତ ଅଧିକ ସ୍ପଷ୍ଟ ଓ ଦୃଶ୍ୟମାନ ହୁଏ । ଏହା ପ୍ରାୟ ସବୁ ଗାଡ଼ିଆ, ଗାଁ ପୋଖରୀ ଓ ଯୋର୍‌ରେ ଏକ କ୍ଷୁଦ୍ର ହଂସରାଳିପରି ସନ୍ତରଣ କରୁଥିବାର ଦେଖାଯାଏ ଓ ସାମାନ୍ୟ ଭୟର ସୂଚନା ପାଇଲେ ପାଣି ଭିତରକୁ ଡୁବ ମାରେ । ସାନ ସାନ ପୋଖରୀରେ ଏମାନେ ଦୁଇ ବା ତିନୋଟି ଏକାଠି ପଡ଼ିଥିବାର ଦେଖାଯାନ୍ତି; ମାତ୍ର ବଡ଼ ବଡ଼ ଯୋର୍‌ରେ ଗୋଟିଏ ଗୋଟିଏ ଦଳରେ ପଚିଶ ବା ଅଧିକ ସଂଖ୍ୟାରେ ଦେଖାଯାନ୍ତି । ବୁଡ଼ାଳି ଭାବରେ ଏମାନେ ଅତି ପାରଙ୍ଗମ । ଆଖିପିଛୁଳାକେ ହଂସରାଳି ଯେପରି ଭାବେ ସାମାନ୍ୟ ତରଙ୍ଗ ମଧ୍ୟ ସୃଷ୍ଟି ନ କରି ପାଣି ଭିତରକୁ ବୁଡ଼ିଯାଏ, ତାହା ପ୍ରକୃତରେ ଆଶ୍ଚର୍ଯ୍ୟଜନକ । ଦ୍ୱିଚଙ୍ଗି ଛୁଟା ଗୁଳି ବନ୍ଧୁକ (Shotgun) ଫୁଟାଇଲେ ଅନେକ ସମୟରେ ଗୁଳି ପହଞ୍ଚିବା ପୂର୍ବରୁ ହଂସରାଳି ପାଣି ଭିତରେ ଡ଼ୁବେଇ ଯାଇଥାଏ । ସେମାନେ ପାଣି ଛାଡ଼ି ଉଠିବାକୁ ପସନ୍ଦ କରନ୍ତି ନାହିଁ ଓ ଶାନ୍ତିଭଙ୍ଗ ହେଲେ ପାଣି ଉପରେ କିଛି ବାଟ ଫଡ଼ଫଡ଼ ହୋଇ ପୁଣି ପାଣି ଉପରେ ପହଁରନ୍ତି । ସେ ଯାହାହେଉ, ସେମାନଙ୍କର ପକ୍ଷ କ୍ଷୁଦ୍ର ହେଲେହେଁ ସେମାନେ ଶକ୍ତ ଉଡ଼ାଳି ଓ ଗୋଟିଏ ପୋଖରୀରେ ପାଣି ଶୁଖିଗଲେ ଆଉ ଗୋଟିଏ ପୋଖରୀରେ ପହଞ୍ଚିବା ପାଇଁ ଅନେକ

ସମୟରେ ବେଶ୍ ଦୂର ପଥ ଉଡ଼ିଯାନ୍ତି । ସେମାନଙ୍କର ସାଧାରଣ ସ୍ୱର ଏକ କର୍କଶ ଚପା ସାଙ୍କେତିକ ହର୍ଷଧ୍ୱନିପରି । ସାୟଂକାଳରେ ସେମାନେ ଯଥାସ୍ଥିତ ଜଳ ଉପରେ ସେମାନଙ୍କର କ୍ଷୁଦ୍ର ଓ ଶକ୍ତ ପକ୍ଷର ମୁହୁର୍ମୁହୁଃ ଆନ୍ଦୋଳନଦ୍ୱାରା ଫଡ଼ଫଡ଼ ଶବ୍ଦକରି ଏକ ଆରେକକୁ ଗୋଡ଼ାଇ ଆମୋଦ ବିହାର କରୁଥିବା ସମୟରେ ଏହି ଶବ୍ଦ ଶୁଣିବାକୁ ମିଳିଥାଏ । ଜଳବାସୀ କୀଟ ଓ କୀଟ ଶୂକ, ବେଙ୍ଗଫୁଲ, ଗେଣ୍ଡା ଓ କ୍ଷୁଦ୍ର କ୍ଷୁଦ୍ର ମାଛ ସେମାନଙ୍କର ଆହାର । ଏସବୁକୁ ସେମାନେ ତଳୁ ବା ଭାସମାନ ଜଳଜ ଉଦ୍ଭିଦରୁ ସଂଗ୍ରହ କରନ୍ତି ଅଥବା ବୁଡ଼ମାରି ବା ପାଣିତଳେ ଅନ୍ୱେଷଣକରି ପାଆନ୍ତି । ହଂସରାଳର ନୀଡ଼ ଖରିଡ଼ାପରେ ସେକା ହୋଇଯାଇଥିବା ଜଳଜ ଅନାବନା ଗଛର ଡାଳରେ ତିଆରି ହୋଇଥାଏ । ଏହା ଆଂଶିକ ବୁଡ଼ିଥିବା ଭାସମାନ ଗଛ ଉପରେ ରହିଥାଏ । ଧୋଇଲେ ସେ ତନୋଟିରୁ ପାଞ୍ଚୋଟି ଯାଏ ଅଣ୍ଡା ଦିଏ । ଏଗୁଡ଼ିକ ପ୍ରଥମେ ଦେଖିବାକୁ ଧଳା; ମାତ୍ର ନୀଡ଼ର ଡାଳ ପତ୍ର ସହିତ ଲାଗି ଶୀଘ୍ର ମଳିଆ ହୋଇଯାଏ । କାରଣ, ଗୋଳମାଳ ହେଲେ ନରୁବା ଆହାର ସଂଗ୍ରହ କରିବାକୁ ଗଲାବେଳେ ପ୍ରତି ଥର ହଂସରାଳ ଅଣ୍ଡାଗୁଡ଼ିକୁ ଖରାରେ ଦର ସେକା ଜଳଜ ଅନାବନା ଗଛ ଡାଳରେ ଢାଙ୍କି ଦେଇଯାଏ । କ୍ଷୁଦ୍ର ଶାବକମାନଙ୍କର ଦେହ କୋମଳ ପକ୍ଷଦ୍ୱାରା ଆବୃତ ଥାଏ ଓ ତା' ଉପରେ ଡୋରା ଦାଗ ପଡ଼ିଥାଏ । ଅନେକ ସମୟରେ ଶାବକମାନେ ପିତାମାତାଙ୍କ ପିଠିରେ ଚଢ଼ି ବୁଲୁଥିବାର ଦେଖାଯାଏ ।

ବର୍ଗ **ପେଲିକାନି ଫରମସ** (PELICANIFORMES)—ପେଲିକାନିଡ଼ି (Pelicanidae) ଓ ଫାଲକ୍ରୋକୋରାସିଡି (Phala-crocoracidae), ଏ ଦୁଇ ପକ୍ଷୀବଂଶ ଏହି ବର୍ଗ ଅନ୍ତର୍ଭୁକ୍ତ । ଦଦରାହଣା (Pelican) ଓ ପାଣିକୁଆ (Darter) ପେଲିକାନିଡ଼ି ବଂଶର ଏବଂ କର୍ମୋରାଣ୍ଟ (Cormorant) ଫାଲକ୍ରୋ-କୋରାସିଡ଼ି ବଂଶର ।

ଦଦରାହଣା ଦେଖିବାକୁ ଏକ ଓଜନଦାର ପକ୍ଷୀ ପରି ମନେହୁଏ । ଏହାର ଗୋଡ଼ ଛୋଟ ଓ ମଜବୁତ୍ । ପାଦର ଅଙ୍ଗୁଳି ମଧ୍ୟରେ ଥିବା ଚର୍ମ ଉତ୍ତମ ବର୍ଦ୍ଧିତ । ଚଞ୍ଚୁ ବୃହତ୍‌କାୟ ଓ ଚେପ୍‌ଟା । ଏହା ତଳକୁ ଚର୍ମର ଏକ ପ୍ରଶସ୍ତ ସଂପ୍ରସାରଣଶୀଳ ଥଳୀ ରହିଥାଏ । ଏହି ଥଳୀଟି ମାଛ ଧରିବା ପାଇଁ ଘାଟ ଜାଲ (Landing net) ପରି ବ୍ୟବହୃତ ହୋଇଥାଏ । ଦଦରାହଣାର ପ୍ରଧାନ ଖାଦ୍ୟ ମାଛ । ଚଲବୁଲ କରିବାପାଇଁ ଏହି ପକ୍ଷୀଟିକୁ ଯଥେଷ୍ଟ କଷ୍ଟ ହେଉଥିବ ବୋଲି ମନେହେଲେ ସୁଦ୍ଧା, ଏମାନଙ୍କର ହାଡ଼ ବେଶ ହାଲୁକା ଏବଂ ଏମାନେ ଭଲ ଉଡ଼ିପାରନ୍ତି । ଅନ୍ୟ ଜାତିମାନଙ୍କ ତୁଳନାରେ ଏବଂ




ଚିତ୍ର ନଂ 1

ହଂସରାଲ ବା ପାଣିହଂସ

( Little Grebe or Dabchick )

ପୃଷ୍ଠା ନଂ 31 ଦେଖ




ଚିତ୍ର ନଂ 2

ଦଦଗ୍ର ହ୍ଵଣା

( Spottedbilled or Grey Pelican )

ପୃଷ୍ଠା ନଂ 33 ଦେଖ

ଚିତ୍ର ନଂ 3

ପାଣିକୁଆ

( Darter )

ପୃଷ୍ଠା ନଂ 34 ଦେଖ






ଚିତ୍ର ନଂ 4
କ୍ଷୁଦ୍ର କର୍ମୋରାଣ୍ଟ
( Little Cormorant )
ପୃଷ୍ଠା ନଂ 35 ଦେଖ




ଚିତ୍ର ନଂ 5

କାଣ୍ଡିଆ ବଗ

( Grey Heron )

ପୃଷ୍ଠା ନଂ 37 ଦେଖ



ଚିତ୍ର ନଂ 6

ଗୁଣୀ ବଗ

( Small Egret )

ପୃଷ୍ଠା ନଂ 38 ଦେଖ

ଚିତ୍ର ନଂ 7

ନନ୍ଦୀ ବଗ

( Cattle Egret )

ପୃଷ୍ଠା ନଂ 39 ଦେଖ






ଚିତ୍ର ନଂ 8

ଗ୍ରେଟ କାଣ୍ଡିଆ ବଗ

(Pond Heron or Paddy Bird)

ପୃଷ୍ଠା ନଂ 40 ଦେଖ

ଚିତ୍ର ନଂ 9

ଚିତ୍ରିତ କ୍ରୌଞ୍ଚ

( Painted Stork )

ପୃଷ୍ଠା ନଂ 42 ଦେଖ





ଚିତ୍ର ନଂ 10
ଟେଣ୍ଡାଳିଆ ବା କୋଁସ
( Openbilled Stork )
ପୃଷ୍ଠା ନଂ 43 ଦେଖ



ଚିତ୍ର ନଂ 11
ହାଡ଼ ଗିଳା
( Adjutant Stork )
ପୃଷ୍ଠା ନଂ 44 ଦେଖ




ଚିତ୍ର ନଂ 12
କଳା ବାକେଣି
( Black Ibis )
ପୃଷ୍ଠା ନଂ 47 ଦେଖ

ଛବି ନଂ 13

ଗ୍ମଚ ଦାଢ଼

( Spoonbill )

ପୃଷ୍ଠା ନଂ 48 ଦେଖ






ଚିତ୍ର ନଂ 14

ଏର୍

( Flamingo )

ପୃଷ୍ଠା ନଂ 50 ଦେଖ

ଚିତ୍ର ନଂ 15

ଖେର ହଂସ

( Barheaded Goose )

ପୃଷ୍ଠା ନଂ 52 ଦେଖ






ଚିତ୍ର ନଂ 16

ଲଞ୍ଜମ ପାତିହଂସ

( Spotbill or Grey Duck )

ପୃଷ୍ଠା ନଂ 53 ଦେଖ

ଶାଗୁଣା ଓ ସାରସ ପରି ଖରିଷିଆ ଦିନରେ ଦଦରାହଣା ବେଶି ସମୟ ଉଚ୍ଚାକାଶରେ ତପ୍ତ ପ୍ରଶ୍ୱାସରେ ଉଡ଼ିଥିବାର ଓ ପକ୍ଷକୁ ସ୍ଥିର ରଖି ଚକ୍କର ଦେଉଥିବାର ଦେଖାଯାଏ । ତିନି ଜାତି ଦଦରାହଣା ଭାରତରେ ଦେଖାଯାନ୍ତି । ସେଥିମଧ୍ୟରୁ ଦୁଇ ଜାତି ଦଦରାହଣା ସାଧାରଣତଃ ଶୀତକାଳରେ ଆମ ଦେଶକୁ ପରିବ୍ରଜନରେ ଆସନ୍ତି । ଯେଉଁ ଦଦରାହଣା ଏ ଦେଶରେ ସ୍ଥାୟୀ ଭାବରେ ବାସକରେ, ତା'ର ବୈଜ୍ଞାନିକ ନାମ 'ପେଲିକାନାସ ଫିଲିପେନ୍‌ସିସ' (Pelicanus Philippensis) (ବର୍ଣ୍ଣଚିତ୍ର ୨) । ଇଂରାଜୀରେ ଏହାକୁ 'ଦାଗ-ଥଣ୍ଟିଆ' (Spotted billed) ଓ 'ଧୂସର ଦଦରାହଣା' (Grey Pelican) କହନ୍ତି । ହିନ୍ଦୀରେ ଦଦରାହଣା ହାଓ୍ୱାସିଲ ଓ କୁରେର ନାମରେ ପରିଚିତ । ଏହାର ଥଣ୍ଟର ଉପର ଫାଳରେ ଅନେକ ବଡ଼ ବଡ଼ ନୀଳ-କଳା ରଙ୍ଗର ଚିହ୍ନ ଥାଏ ଏବଂ ଥଣ୍ଟ ତଳର ଥଳୀ ମସିଆ ବାଇଗଣୀ ରଙ୍ଗ । ପ୍ରାପ୍ତବୟସ୍କ ଦଦରାହଣାର ଦେହର ବର୍ଣ୍ଣ ଧୂସରିଆ ଧଳା; ମାତ୍ର ଅଳ୍ପ ବୟସ୍କମାନଙ୍କର ବର୍ଣ୍ଣ ବାଦାମୀଆସିଆ । ଆହୁରି ମଧ୍ୟ, ଏହାର ଡେଣାର ମୂଳ ଅଂଶ କଳା ଓ ଉଡ଼ିଲାବେଳେ ସ୍ପଷ୍ଟ ଦେଖାଯାଏ । ଲାଞ୍ଜ ଧୂସର-ବାଦାମୀ । ଏସବୁ ଲକ୍ଷଣଦ୍ୱାରା ଦଦରାହଣାକୁ ସହଜରେ ଚିହ୍ନି ହେବ । ଏମାନେ କ୍ଷୁଦ୍ର କ୍ଷୁଦ୍ର ବା ବଡ଼ ବଡ଼ ଦଳରେ ଜୋରମାନଙ୍କରେ ପହଁରି ପହଁରି ମାଛ ଧରିବାର, ଜଳରେ ଭାସି ଭାସି ବିଶ୍ରାମ ନେବାର, ବା କୂଳରେ ବସି କ୍ଷୁଧାର ଉଦ୍ରେକ ହେବାଯାଏ ଚଞ୍ଚୁଦ୍ୱାରା ପର ସବୁର ପ୍ରସାଧନ କରିବାରେ ରତଥିବାର ଦେଖାଯାନ୍ତି । ଏମାନେ ପେଟୁ ଓ ବହୁ ପରିମାଣରେ ମାଛ ଗିଳନ୍ତି । କର୍ମୋରାଣ୍ଟମାନଙ୍କ ପରି ଦଦରାହଣାମାନେ ଏକାଠି ମିଶି ମାଛ ଧରନ୍ତି; ମାତ୍ର ଦଦରାହଣାମାନେ ବୁଡ଼ ଦେଇ ମାଛଙ୍କ ପିଚ୍ଛା ଧରନ୍ତିନାହିଁ । କେତେଗୁଡ଼ିଏ ପକ୍ଷୀ ଅର୍ଦ୍ଧବୃତ୍ତାକାରରେ ରହି ସେମାନଙ୍କର ବଡ଼ ବଡ଼ ଡେଣାକୁ ପ୍ରବଳଭାବେ ପାଣିରେ ପିଟି ଏକ ମାଛପଲଙ୍କୁ ଅଳ୍ପ ଗଭୀର ଜଳକୁ ତଡ଼ି-ଆଣନ୍ତି । ଏଥର ଏହି ପରିବେଷ୍ଟିତ ଅଂଶ ଭିତରକୁ ପାଟି ମେଲିକରି ଦଦରାହଣା-ଗୁଡ଼ିକ ପହଁରି ଆସନ୍ତି ଓ ଚଞ୍ଚୁରେ ଧରିଲା ପରି ମାଛଙ୍କୁ ଥଣ୍ଟ ତଳର ପ୍ରସାରିତ ଥଳୀ ଭିତରୁ ଅଡ଼େଇନିଅନ୍ତି । ଏମାନେ ଅନାୟାସରେ ଜଳ ମଧ୍ୟରୁ ଉପରକୁ ଉଡ଼ିପାରନ୍ତି ଓ ବେକକୁ ପଛ ଆଡ଼କୁ ବଙ୍କାଇ ଚେପ୍‌ଟା ଇଂରାଜୀ ଏସ୍ (S) ଅକ୍ଷର ପରି କରି ଉଡ଼ି-ଯାନ୍ତି । ଦୃଢ଼ ପକ୍ଷର ସ୍ପନ୍ଦନ ଫଳରେ ଏକପ୍ରକାର ସୁସୁରି ମାରିବା ପରି ଶବ୍ଦ ଜାତ ହୁଏ ଏବଂ ଚେପ୍‌ଟା ନୌକାକାର ଦେହ ହୁଲିଡଙ୍ଗା ଭେଳା କଥା ସ୍ମରଣ କରାଇଦିଏ । ଦଦରାହଣା ଆନ୍ଧ୍ର ପ୍ରଦେଶର ପୂର୍ବ ଗୋଦାବରୀ ଜିଲାରେ ନୀଡ଼ ରଚନା କରେ । ଭାରତୀୟ ଉପଦ୍ୱୀପର ଅନ୍ୟ କେତେକ ସ୍ଥାନରେ ମଧ୍ୟ ଏମାନେ ଅଳ୍ପ ସଂଖ୍ୟାରେ ବସାକରି ଅଣ୍ଡା

ହିଅନ୍ତି । ବିସ୍ତୃତ ଅଞ୍ଚଳବ୍ୟାପୀ ଉଚ୍ଚ ପତ୍ରବହୁଳ ବୃକ୍ଷ ଓ ତାଳଗଛମାନଙ୍କରେ ଏମାନେ ବଡ଼ ବଡ଼ ଦଳରେ ବିଭକ୍ତ ହୋଇ ବସା ବାନ୍ଧନ୍ତି । ଦଦରାହୁଣାର ନୀଡ଼ ବଡ଼ ଓ ଅସୁନ୍ଦର କାଠି ନିର୍ମିତ ମଞ୍ଚାପରି ଦେଖାଯାଏ । ଗୋଟିଏ ଗଛରେ ଲଗାଲଗି ହୋଇ କେତେଗୁଡ଼ିଏ ବସା ହୋଇଥାଏ । ଥରକେ ଗୋଟିଏ ପକ୍ଷୀ ତିନୋଟି ଯାଏ ଅଣ୍ଡା ଦିଏ । ସେଗୁଡ଼ିକ ଚକ୍ ଖଡ଼ି ପରି ଧୋବ । ଉତ୍ତାପ ପାଇ ପାଇ କ୍ରମେ ତା'ର ରଙ୍ଗ ମସିଆ-ବାଦାମୀ ହୋଇଯାଏ ।

**ପାଣିକୁଆ** ଓ କର୍ମୋରାଣ୍ଟ ଫାଲ୍‌କୋ କୋରାସିଡ଼ି ବଂଶ ଅନ୍ତର୍ଗତ । ପାଣିକୁଆ (ବର୍ଣ୍ଣଚିତ୍ର ୩) ର ବୈଜ୍ଞାନିକ ନାମ 'ଅନହିଙ୍ଗା ରୁଫା' (Anhinga rufa) । ଏହାକୁ ଇଂରାଜୀରେ 'ଡାର୍ଟର' (Darter) ଓ ହିନ୍ଦୀରେ ବେନ୍ଉ କହନ୍ତି । ଏହା ଏକ କଳା ଜଳପକ୍ଷୀ । ପାଣିକୁଆର ବେକ ସାପପରି କ୍ଷୀଣ, ମଖମଲ ପରି ମସୃଣ ଓ ବାଦାମୀ ରଙ୍ଗର । ମୁଣ୍ଡ ସଂକୀର୍ଣ୍ଣ ଓ ଚଞ୍ଚୁ ଛୁରୀ ପରି ଗୋଜିଆ । ଦେହରେ ରୂପେଲି ଧୂସର ଡୋର ଦାଗ ପଡ଼ିଥାଏ । ଲାଞ୍ଜ ଲମ୍ବା, ଦୃଢ଼ ଓ ନଳାକୃତ । ଏସବୁ ଲକ୍ଷଣ ସାହାଯ୍ୟରେ ପାଣିକୁଆକୁ ଚିହ୍ନାଯାଇପାରେ । ଜୋର, ଗାଁ ପୋଖରୀ, ଜଳଭଣ୍ଡାର ଓ ନଦୀମାନଙ୍କରେ ଏହାକୁ ଏକାକୀ ବା କ୍ଷୁଦ୍ର କ୍ଷୁଦ୍ର ଅସଂଲଗ୍ନ ଦଳରେ ଦେଖିବାକୁ ମିଳେ । ସମୟ ସମୟରେ କୁଆଁରିଆ ନଦୀ ମୁହାଣମାନଙ୍କରେ ମଧ୍ୟ ପାଣିକୁଆ ଦେଖାଯାନ୍ତି । ସନ୍ତରଣ କଲାବେଳେ ଏହାର ଦେହ ଆଂଶିକ ଓ ସମୟ ସମୟରେ ପୂରାପୂରି ଜଳରେ ନିମଜ୍ଜିତ ରହେ; କେବଳ ସାପ ପରି ମୁଣ୍ଡ ଓ ବେକ ଉପରକୁ ବାହାରିରହିଥାଏ ଏବଂ ତାକୁ ଏପଟ ସେପଟ ବୁଲାଇ ଓ ଦୋହଲାଇ ସେ ପହଁରୁଥାଏ । ଏହାର ପ୍ରଧାନ ଖାଦ୍ୟ ମାଛ । ପାଣିକୁଆ ଗୋଟିଏ ଦକ୍ଷ ବୁଡ଼ାଳି ଓ ବୁଡ଼ାଜାହାଜ ପରି ପାଣି ତଳେ ମଧ୍ୟ ପହଁରି ପାରେ । ଜେଭଲିନ୍ ଫିଙ୍ଗିଲାବେଳେ ଖେଳାଳି ଯେପରି ତା'ର ବର୍ଚ୍ଛାକୁ ହାତରେ ଧରି ଆଗକୁ ଓ ପଛକୁ କରେ, ପାଣିକୁଆ ସେହିପରି ମୁଣ୍ଡ ଓ ବେକ ଆଗକୁ ପଛକୁ କରି ପକ୍ଷ ଅଧା ମେଲାଇ ଡ଼ିବ ମାରି ମାଛଙ୍କ ପିଛା ପାଣି ତଳେ ତଳେ ଗୋଡ଼ାଏ । ବେକର ହାଡ଼ (କଶେରୁକା) ରେ ବିଶେଷ ବ୍ୟବସ୍ଥା ଯୋଗୁ ଏକ ଶକ୍ତିଶାଳୀ ସ୍ପ୍ରିଙ୍ଗରୁ ଉଦ୍‌ଗତ ହେବା ପରି ଚଞ୍ଚୁ ତଡ଼ିତ୍‌ବେଗରେ ଆଗେଇ ଆସେ ଓ କ୍ଷୁଦ୍ର ତଲୁଆର ପରି ଚଞ୍ଚୁର ତଳ ଫାଳ (ନିମ୍ନ ମେଣ୍ଡିବ୍‌ଲ) ମାଛ ଦେହରେ ଗଳିଯାଏ । ପାଣିକୁଆ ସାପ ପରି ବେକକୁ ପାଣି ଉପରକୁ ଉଠାଇ ଉପର ଆଡ଼କୁ ଥରେ ଜୋରରେ ଝାଡ଼ିଦେବା ଫଳରେ ମାଛ ଉପର ଆଡ଼କୁ ଛିଟିକି ପଡ଼େ । ଏଥର ସେ ଥଣ୍ଟର ଦୁଇଫାଳ ମଧ୍ୟରେ ତାକୁ ଧରିନେଇ ମୁଣ୍ଡଆଡ଼ୁ ଗିଳିଦିଏ । ପାଣିକୁଆର ମୁଣ୍ଡ ଓ

ତଣ୍ଟି କ୍ଷୀଣ ହେଲେହେଁ, ଏହାର ଭିତରେ ସେ ଆଶ୍ଚର୍ଯ୍ୟଜନକ ଭାବେ ବଡ଼ ଆକାରର ମାଛ ମଧ୍ୟ ଅନେକ ସମୟରେ ଗିଳିପକାଇଥାଏ । ପରିତୃପ୍ତ ହେଲେ ସେ ଉଡ଼ିଯାଇ ଠିଆ ବାଗରେ ବସେ; ନହେଲେ ପକ୍ଷ ଓ ଲାଞ୍ଜ ମେଲାକରି ଶୁଖାଏ । ଆଶ୍ଚର୍ଯ୍ୟର କଥା, ଏହା ସାରା ଜୀବନକାଳ ଜଳରେ କଟାଇଲେ ମଧ୍ୟ ପାଣିହଂସ ପରି ଏହାର ପକ୍ଷ ଜଳାଭେଦ୍ୟ (ଓ୍ୱାଟରପ୍ରୁଫ୍) ନୁହେଁ । ସେଥିରେ ପାଣି ପଶିଯାଏ ଓ ପାଣିରେ ଯୋଷରି ହେବା ଫଳରେ ଖରାପ ହୋଇଯାଏ । ସେଥିଲାଗି ପକ୍ଷର କର୍ମକୁଶଳତା ରକ୍ଷାକରିବା ପାଇଁ କ୍ରମାଗତ ତାକୁ ଶୁଖାଇବା ଆବଶ୍ୟକ ପଡ଼େ । ପାଣିକୁଆର ସାଧାରଣ ଡାକ କର୍କଶ ଓ ଦୁଇଟି ପଦରେ ଗଠିତ 'ଚ-ଗି, ଚ-ଗି' । ଏମାନେ ସାଧାରଣତଃ କର୍ମୋରାଣ୍ଟ-ମାନଙ୍କ ସହିତ ମିଶି ରହନ୍ତି ଏବଂ ଏମାନଙ୍କର ଉଡ଼ିବା ଓ ସାଧାରଣ ଅଭ୍ୟାସ କର୍ମୋରାଣ୍ଟ-ମାନଙ୍କ ପରି । ସାଧାରଣତଃ ବଗ, ସାରସ ଓ ସେହିପରି ପକ୍ଷୀମାନଙ୍କ ସହ ପାଣିକୁଆ ବୃକ୍ଷରେ ନୀଡ଼ ରଚନା କରେ । ଜଳରେ ବା ଜଳ ନିକଟରେ ଥିବା ଗଛରେ ସେମାନେ ବସା କରନ୍ତି । ନୀଡ଼ କାଠିରେ ତିଆରି ହୋଇଥାଏ ଓ ଅପରିଷ୍କାର । ପାଣିକୁଆ ଥରକେ ତିନୋଟିରୁ ଚାରିଟି ଯାଏ ଅଣ୍ଡା ଦିଏ । ଅଣ୍ଡା ଅପ୍ରଶସ୍ତ ଓ ଲମ୍ବା; ଦେଖିବାକୁ ଫିକା ସବୁଜଆସିଆ ନୀଳ । ତା' ଉପରେ ଚକ୍ ପରି ଧଳା ପ୍ରଲେପ ଦିଆଥାଏ ।

**କ୍ଷୁଦ୍ରକର୍ମୋରାଣ୍ଟ** (ବର୍ଣ୍ଣଚିତ୍ର ୬)—ଏହାର ବୈଜ୍ଞାନିକ ନାମ 'ଫାଲାକ୍ରୋକୋରାକ୍ସ ନାଇଗାର' (Phalacrocorax niger) । ଇଂରାଜୀରେ ଏହା 'କ୍ଷୁଦ୍ର କର୍ମୋରାଣ୍ଟ' (Little Cormorant) ଓ ହିନ୍ଦୀରେ ପାନ୍ କୋଓ୍ୱା ବା ଗେନହିଲ ନାମରେ ପରିଚିତ । ଏହା ଡାମରା କୁଆଠାରୁ ସାମାନ୍ୟ ବଡ଼ । ଏହା ଦେଖିବାକୁ ଅପରିଚ୍ଛନ୍ନ ଏବଂ ଝକ୍‌ଝକ୍ କରୁଥିବା କଳା ପାଣିହଂସ ପରି । କର୍ମୋରାଣ୍ଟର ଲାଞ୍ଜ ଲମ୍ବା ଓ ଟାଣ ଏବଂ ଥଣ୍ଟ କ୍ଷୀଣ ଓ ଚଟାଳିଆ । ତଣ୍ଟିରେ ଗୋଟିଏ ଧଳା ଚିହ୍ନ ଥାଏ । ମୁଣ୍ଡର ପଛ ଅଂଶ ସାମାନ୍ୟ ସ୍ଫୀତ ।

ଏକାକୀ, କ୍ଷୁଦ୍ର କ୍ଷୁଦ୍ର ଦଳ ବା ବହୁସଂଖ୍ୟାରେ ଘନ ଦଳବଦ୍ଧଭାବେ ଏମାନେ ଗାଁ ପୋଖରୀ, ଦହ ଏବଂ ବଡ଼ ବଡ଼ ଜଳଭଣ୍ଡାରମାନଙ୍କରେ ଦେଖାଯାନ୍ତି । ଅଳ୍ପ ଲୁଣିଆ କୋର ଓ ଜୁଆରିଆ ଝାଡ଼ମାନଙ୍କରେ ମଧ୍ୟ ଅଳ୍ପ ସଂଖ୍ୟାରେ ଦେଖାଯାନ୍ତି । ଶିଳାସ୍ତୂପ, ମାଛଧରା ଖୁଣ୍ଟି, ପାଣି ଉପରକୁ ଝୁଲିରହିଥିବା ବୃକ୍ଷଶାଖାରେ କର୍ମୋରାଣ୍ଟ ଡେଣା ମେଲି ଖରା ପୁହାଉଥିବାର ଦେଖିବାକୁ ମିଳେ । ସେମାନଙ୍କର ପ୍ରଧାନ ଖାଦ୍ୟ ମାଛ । ସେମାନେ ଭିଲ ପହଁରାଳି ଓ ବୁଡ଼ାଳି । ସେମାନେ ସବୁବେଳେ ପାଣି ତଳେ ମାଛଙ୍କୁ ଧରନ୍ତି । କେତେବେଳେ ଦଳେ କର୍ମୋରାଣ୍ଟ ଏକାଠି ହୋଇ ମାଛ ଶିକାର କରନ୍ତି ।

ଏତେବେଳେ ସେମାନେ ଦଳେ ମାଛଙ୍କୁ ଗୋଡ଼ାଇ, ତାଙ୍କ ପିଚ୍ଛ ବାରମ୍ବାର ବୁଡ଼ ମାରି, ଉତ୍ତେଜିତ ଭାବେ ଏକ ପକ୍ଷୀ ଆରେକ ସଙ୍ଗେ ଧକ୍କା ଖାଇ ଓ ଏକ ଆରେକ ଉପରେ ବେଙ୍ଗପରି କୁଦାମାରି, ମାଛଙ୍କୁ କଣିକିଆ କରି ଘଉଡ଼ାଇ ଆଣନ୍ତି । କର୍ମୋରାଣ୍ଟ ମାଛକୁ ଥଣ୍ଟରେ ଆଡ଼ ବାଗରେ ଧରି ପାଣି ଉପରକୁ ଉଠେ ଓ ହଠାତ୍ ଉପରଆଡ଼କୁ ଝାଡ଼ିଦେବା ଫଳରେ ମାଛ ମୁଣ୍ଡପଟିଆ ହୋଇଯାଏ ଏବଂ ସେ ମୁଣ୍ଡପଟୁଆ ତାକୁ ଗିଳେ । ତା'ପରେ ସାଙ୍ଗେ ସାଙ୍ଗେ ସେ ଆଉ ଗୋଟିଏ ମାଛ ଧରିବାକୁ ବୁଡ଼ନ ମାରେ । ଏହିପରି ଚାଲିଥାଏ । ଆଶ୍ଚର୍ଯ୍ୟଜନକଭାବେ ବଡ଼ ବଡ଼ ମାଛଙ୍କୁ ମଧ୍ୟ ସେମାନେ ଏଇପରି ଭାବେ ଗିଳିପକାନ୍ତି । କର୍ମୋରାଣ୍ଟ ଯେତେ ଖାଇଲେ ବି ତା' ମନ ବୋଧହେଲା ପରି ମନେହୁଏନାହିଁ ।

କ୍ଷୁଦ୍ର କର୍ମୋରାଣ୍ଟ ସହିତ ଆଉ ଦୁଇଟି କଳା କର୍ମୋରାଣ୍ଟ ମଧ୍ୟ ଦେଖାଯାନ୍ତି । ସେମାନଙ୍କୁ 'ବଡ଼ କର୍ମୋରାଣ୍ଟ' (Large Cormorant) ଓ 'ଭାରତୀୟ ସାଗ୍' (Indian Shag) କୁହାଯାଏ । ଏମାନଙ୍କର ବୈଜ୍ଞାନିକ ନାମ ଯଥାକ୍ରମେ 'ଫାଲକ୍ରୋକୋରାକ୍ସ କାର୍ବୋ' (Phalacrocorax carbo) ଓ 'ଫାଲକ୍ରୋ-କୋରାକ୍ସ ଫୁସସିକୋଲିସ') (Phalacrocorax fuscicollis) । ବଡ଼ କର୍ମୋରାଣ୍ଟ ଆକାରରେ ଗୃହପାଳିତ ପାତିହଂସ ପରି । ପ୍ରଜନନ ଋତୁରେ ଏହାର ମସ୍ତକ ଓ ବେକ ଧୂସରିଆ ଧଳା ହୋଇଯାଏ । ଜାନୁରେ ଥିବା ଅଣ୍ଡାକାର ବଡ଼ ଧଳା ଚିହ୍ନ ଉଡ଼ିଲାବେଳେ ସ୍ପଷ୍ଟ ଦେଖାଯାଏ । ସାଗ୍ ମଧ୍ୟମ ଆକାରର । ପ୍ରଜନନ ଋତୁ ଭିନ୍ନ ଅନ୍ୟ ସମୟରେ ଜଣେ ତାକୁ ବଡ଼ ବା କ୍ଷୁଦ୍ର କର୍ମୋରାଣ୍ଟ ବୋଲି ଭ୍ରମ କରିପାରେ । ପ୍ରଜନନ ଋତୁରେ ଆଖି ପଛକୁ ଗୋଛାଏ ଧଳାରଙ୍ଗର ପର ଉଠେ ଏବଂ ମୁଣ୍ଡ ଓ ବେକରେ କେତେକ ଧଳା ଫୁଟଫୁଟିଆ ଦାଗ ଦେଖାଯାଏ । ସବୁଜାତି କର୍ମୋରାଣ୍ଟ ଜଳ ଭିତରେ ବା ନିକଟରେ ଥିବା ଗଛରେ ବଗ ଓ ସାରସଙ୍କ ଗହଣରେ କାଠିରେ ଅଗଭୀର ନୀଡ଼ ରଚନାକରନ୍ତି । ଥରକରେ ୪ରୁ ୫ଟି ଅଣ୍ଡା ଦିଅନ୍ତି । ରଙ୍ଗ ଫିକା ନୀଳ ବର୍ଣ୍ଣ ଓ ତା' ଉପରେ ଚକ୍ ପରି ଧଳା ରଙ୍ଗର ପ୍ରଲେପ ପଡ଼ିଥାଏ । କର୍ମୋରାଣ୍ଟର ଜାତି ଅନୁସାରେ କେବଳ ଅଣ୍ଡାର ଆକାରରେ ପ୍ରଭେଦ ଲକ୍ଷିତ ହୁଏ ।

ବର୍ଗ **ସିକୋନିଫର୍ମିସ** (CICONI FORMES)—ଏହି ବର୍ଗ ଅନ୍ତର୍ଭୁକ୍ତ ଚାରିଟି ବଂଶର ପକ୍ଷୀ ଭାରତରେ ଦେଖାଯାନ୍ତି; ଯଥା—ଆରଡେଇଡ଼ି (Ardeidae) (ବଗ), ସିକୋନିଡ଼ି (Ciconidae) (ସାରସ), ଥ୍ରେସକିଓରନିଥିଡ଼ି (Threskiornithidae) (ଧଳା ବାଙ୍କେଣି, କଳା ବାଙ୍କେଣି) ଓ ଫୋନିକପ୍ଟେରିଡ଼ି (Phoenicop-

teridae) (ମରାଳ ବା Flamingo) ।

ବଗମାନେ ଲମ୍ବାଗୋଡ଼ିଆ । ଏମାନଙ୍କର ଅନୁଜଙ୍ଘ (Tibia) ଆଂଶିକଭାବେ ଅନାବୃତ; ଅର୍ଥାତ୍ ପରସ୍ପର ତଳ୍କା ନୁହେଁ ଓ ଲମ୍ବା ପଦାଙ୍ଗୁଳି ମଧ୍ୟରେ ପାଦ-ଜାଲି ନଥାଏ । ସେମାନଙ୍କର ବେକ ଲମ୍ବା, ପାତଳ ଓ ନମନୀୟ ଏବଂ ଥଣ୍ଟ ବର୍ଚ୍ଛା ପରି ଓ ସୂକ୍ଷ୍ମାଗ୍ର । କାଣ୍ଡିଆ ବଗ (Grey heron) ବଗମାନଙ୍କର ଏକ ପ୍ରକୃଷ୍ଟ ଉଦାହରଣ । ଏହାର ବୈଜ୍ଞାନିକ ନାମ 'ଆରଡ଼ିଆ ସାଇନେରିଆ' (Ardea cinerea) (ବର୍ଣ୍ଣ ଚିତ୍ର ୫) । ଓଡ଼ିଶାରେ କାଣ୍ଡିଆ ବଗକୁ ସ୍ଥାନବିଶେଷରେ ମାଟିଆ ବଗ ଓ ବଡ଼ କାଙ୍କ ବୋଲି ମଧ୍ୟ କହୁଥାନ୍ତି । ହିନ୍ଦୀରେ ଏହା ନାରି କାବୁଦ୍ ଓ ଅଞ୍ଜନ ନାମରେ ପରିଚିତ । ଏହା ସାରସ ପରି ଏକ ଦୀର୍ଘଦେହୀ, ଅନାବୃତ ପଦ୍ମ ଜଳାଭୂମି ପକ୍ଷୀ । ଏହାର ପିଠି ପାଉଁଶିଆ ଏବଂ ମୁଣ୍ଡର ଚୂଡ଼ା ଓ ବେକ ଧଳା; ପେଟପାଖ ଧୂସରିଆ ଧଳା । ଏହାର ବେକ ଲମ୍ବା, କ୍ଷୀଣ ଓ ଇଂରାଜୀ ଅକ୍ଷର S (ଏସ୍) ଆକାରର । ମୁଣ୍ଡ ଅଣଓସାରିଆ; ଚଞ୍ଚୁ ମଜବୁତ୍, ଗୋଜିଆ ଓ ଛୁରିପରି । ଏହି ପକ୍ଷୀକୁ ଚିହ୍ନିବା କରିବାପାଇଁ ଅନ୍ୟ ଲକ୍ଷଣଗୁଡ଼ିକ ହେଲି—ପଶ୍ଚାତ୍ କପାଳ ଅଂଶରେ ଥିବା ଦୀର୍ଘ କଳା ଚୂଳ, ଗ୍ରୀବାରେ କଳା ଡୋରିଆ ଦାଗ ଥିବା ଲମ୍ବା ଲମ୍ବା ପର ଏବଂ ବେକରେ ସାମନା ପଟେ ମଧ୍ୟ-ସ୍ଥଳରେ ତଳକୁ ଖସିଯାଇଥିବା ସ୍ପଷ୍ଟ ଟିପଟିପିକିଆ କଳାରେଖା । ମାଈ କାଣ୍ଡିଆ ବଗ ଦେଖିବାକୁ ଅଣ୍ଡିରା ପରି; ମାତ୍ର ତାର ଚୂଳ ଓ ଗ୍ରୀବାର ପର ଅପେକ୍ଷାକୃତ ସାନ । କାଣ୍ଡିଆ ବଗ ସାଧାରଣତଃ ମୁଣ୍ଡକୁ କାନ୍ଧ ଭିତରେ ଗୁଞ୍ଜି ଆଣୁ ଏ ପାଣିରେ ଏକଟିଆ ନିଶ୍ଚଳ ଭାବରେ ଠିଆହୋଇଥିବାର ଦେଖିବାକୁ ମିଳେ । ମନେହେବ, ଯେପରିକି ନିଘୋଡ଼ ନିଦରେ ଶୋଇଯାଇଛି; ମାତ୍ର ପ୍ରକୃତ ପକ୍ଷେ, ଅଣ୍ଟରେ ମାରିପାରିବା ଭଳି ପାଖକୁ ମାଛ ବା ବେଙ୍ଗଟି ଏଆସୁଛି କି ନାହିଁ ତାହା ଲକ୍ଷ୍ୟକରିବା ପାଇଁ ତା'ର ସଜାଗ ଦୃଷ୍ଟି ସବୁବେଳେ ନିବିଷ୍ଟ ଥାଏ । ଅନ୍ୱେଷିତ ପ୍ରାଣୀକୁ ଦେଖିଲା ମାତ୍ରେ, କାଣ୍ଡିଆ ବଗ ତା'ର ଦୀର୍ଘ ପ୍ରସାରଣଶୀଳ ବେକକୁ ଲମ୍ବାଇ ମାଛକୁ ମାରିବା ପାଇଁ ନିଶ୍ଚଳ ରହେ । ଅନନ୍ତର ସେ ତା'ର ସରୁ ଫଳାବିଶିଷ୍ଟ ତରବାରି ପରି ହୋଇଥିବା ଅଣ୍ଟକୁ ବିଦ୍ୟୁତ୍ ବେଗରେ ମାଛ ଦେହରେ ବିଦ୍ଧକରେ ଅଥବା ଅଣ୍ଟ ସାହାଯ୍ୟରେ ତା'କୁ ଧରିପକାଏ । ପଟାପଟ୍ ଉପର ଆଡ଼କୁ ସଞ୍ଚାଳନଦ୍ୱାରା ସେ ମାଛଟିକୁ ବାଗରେ ଧରି ମୁଣ୍ଡପଟିଆ ଗିଳିଦିଏ । ଉଡ଼ିଲା ବେଳେ କାଣ୍ଡିଆ ବଗ ପ୍ରବଳ ଅଥଚ ଦୃଢ଼ଭାବେ ପକ୍ଷ ଆନ୍ଦୋଳିତ କରେ । ଏତେବେଳେ ବେକ ସମ୍ପୂର୍ଣ୍ଣଭାବେ ଭିତରିକୁ ପଶିଯାଏ ଯେ ମୁଣ୍ଡ ଦୁଇ କାନ୍ଧ ମଧ୍ୟରେ ରହେ । ଉଡ଼ିଲା ବେଳର ଏହି ଠାଣି ବଗ (Heron) ବଂଶର ବିଶେଷତ୍ୱ । ଏ ସମୟରେ ଲମ୍ବା ଗୋଡ଼

ଦୁଇଟି ଲମ୍ବ ତଳେ ଗୁଡ଼ି ହୋଇ ପଛ ଆଡ଼କୁ ବାହାରି ରହିଥାଏ । ଉଡ଼ିଲାବେଳେ ମଧ୍ୟେ ମଧ୍ୟେ ସେମାନେ ସାଧାରଣତଃ ଏକପ୍ରକାର ଗମ୍ଭୀର, କର୍କଶ ଶବ୍ଦ କରନ୍ତି । ଏତଦ୍‌ବ୍ୟତୀତ ଅନ୍ୟ ସମୟରେ ସେମାନେ ଅନ୍ୟ କୌଣସି ପ୍ରକାର ଶବ୍ଦ କରିବାର ଜଣାନାହିଁ । କାଣ୍ଡିଆ ବଗ କାଠି ଓ ଘାସ ଇତ୍ୟାଦିରେ ନୀଡ଼ ରଚନାକରେ । ତାହା ଏକ କ୍ଷୁଦ୍ର ମଞ୍ଚାପରି ଓ ତା' ମଝି ଅଂଶ ଖାଲୁଆ । ସାଧାରଣତଃ ଜଳ ନିକଟରେ ଗଛମାନଙ୍କରେ ସେ ବସାକରେ । ପ୍ରାୟଶଃ ବିଭିନ୍ନ ଜାତି ବଗମାନଙ୍କର ନୀଡ଼ ମଧ୍ୟରେ କାଣ୍ଡିଆ ବଗର ବସା ଦେଖିବାକୁ ମିଳେ । ସେ ଥରକେ ତିନୋଟିରୁ ଛଅଟି ଯାଏ ଅଣ୍ଡା ଦିଏ । ଅଣ୍ଡା ଦେଖିବାକୁ ସମୁଦ୍ର ଜଳ ପରି ସବୁଜ ।

କାଣ୍ଡିଆ ବଗ ତୁଳନାରେ କେତେକ ପରିମାଣରେ ଶ୍ରେଷ୍ଠ ଅଥଚ ଦେଖିବାକୁ ଓ ହାବଭାବରେ ଏକାପରି ଆଉ ଏକ ଜାତି ବଗ ଜଳାଭୂମିମାନଙ୍କରେ ଦେଖିବାକୁ ମିଳେ । ଏହାକୁ ଇଂରାଜୀରେ 'ବାଇଗଣୀ ବଗ' (Purple heron) ବୋଲି କହନ୍ତି । ଏହାର ବୈଜ୍ଞାନିକ ନାମ 'ଆରଡ଼ିଆ ପାରପୁରିଆ' (Ardea Purpurea) । ଏହାର ପିଠିପାଖ ନୀଳାଭ-ଧୂସର ବା ବାଇଗଣୀ-ଧୂସର ଏବଂ ମୁଣ୍ଡ ଓ ବେକ ଲାଲ ବା ବାଦାମୀଆସିଆ । ତଳପାଖ ବାଦାମୀ ଓ କଳା ।

ଆଉ ତିନି ଜାତି ଧଳା ବଗ ଜଳାଭୂମିରେ ସାଧାରଣତଃ ଦେଖିବାକୁ ମିଳନ୍ତି । ସେମାନେ ହେଲେ 'ବଡ଼ ବଗ' (Large egret), 'ମଝିଆ ବଗ' (Median egret) ଓ 'ସାନ ବଗ' (Small egret, Little egret) । 'ବଡ଼ ବଗ' ଆକାର ଓ ଗଢ଼ଣରେ 'ବାଇଗଣୀ ବଗ' ପରି; ମାତ୍ର ବରଫ ପରି ସମ୍ପୂର୍ଣ୍ଣ ଧଳା ଓ ସାଧାରଣତଃ ଏକାକୀ ଦେଖିବାକୁ ମିଳେ । ଏହାର ବୈଜ୍ଞାନିକ ନାମ 'ଇଗ୍ରେଟା ଆଲ୍‌ବା' (Egretta alba) । 'ମଝିଆ ବଗ' ଅଳ୍ପ ସାନ । ଏହାର ବୈଜ୍ଞାନିକ ନାମ 'ଇଗ୍ରେଟା ଇଣ୍ଟାରମିଡ଼ିଆ' (Egretta intermedia) । 'ସାନ ବଗ'ର (ବର୍ଣ୍ଣ ଚିତ୍ର-୭) ବୈଜ୍ଞାନିକ ନାମ 'ଇଗ୍ରେଟା ଗାରଜେଟ୍‌ଟା' (Egretta garzetta) । ହିନ୍ଦୀରେ ଏହାକୁ 'କରଚଆ ବଗଲ୍' କହନ୍ତି । ଓଡ଼ିଶାରେ ସ୍ଥାନବିଶେଷରେ ଏହାର ଅନେକ ନାମ ଅଛି; ଯଥା—ବଗ, ଝିଲଆ ବଗ, ରାଣୀ ବଗ ଓ ଚିଲଆ ବଗ । ଏହାର ଆକାର ଗୃହପାଳିତ କୁକୁଡ଼ା ବା ନନ୍ଦୀ ବଗ (Cattle egret) (ପରବର୍ତ୍ତୀ ବର୍ଣ୍ଣନା ଦେଖନ୍ତୁ) ପରି । ପ୍ରଜନନ ଋତୁରେ ସବୁ ଜାତି ଧଳା ବଗମାନଙ୍କର ପିଠିରେ ଆଲଂକାରିକ ଫିତା ପରି ପର ଉଠେ । ଚଳିତ ଶତାବ୍ଦୀର ପ୍ରଥମ ଭାଗରେ ୟୁରୋପ ଓ ଆମେରିକାରେ ମହିଳାମାନଙ୍କର ପୋଷାକରେ ବ୍ୟବହାର ଲାଗି ପୋଷାକ-ନିର୍ମାତା

ମାନଙ୍କଦ୍ୱାରା ବହୁ ପରିମାଣରେ ଏପରି ପରର ଚାହିଦା ଥିଲା । ପର-ବ୍ୟବସାୟ ଏଭଳି ଲାଭଜନକ ଥିଲା ଓ ସେଥିଲାଗି ଏତେ ଅଧିକ ସଂଖ୍ୟାରେ ବଗ ସବୁ ମରାହେଲେ ଯେ ପୃଥିବୀର ଅନେକ ଅଞ୍ଚଳରେ ବଗ ସବୁ ଲୋପପାଇଯିବା ଅବସ୍ଥାକୁ ଆସିଗଲେ । ତାହାପରେ ବଣ୍ୟପକ୍ଷୀମାନଙ୍କର ପର ନେବାଆଣିବାରେ ଆନ୍ତର୍ଜାତିକ ବାଣିଜ୍ୟ କଟକଣା, ବଗ ସଂଖ୍ୟା ବିଶେଷ ଭାବେ କମିଯାଇଥିବା ଦେଶମାନଙ୍କରେ ପକ୍ଷୀ ସଂରକ୍ଷଣ ଲାଗି ଆଇନ ପ୍ରଣୟନ ଏବଂ ମହିଳାମାନଙ୍କର ଫେସନ ରୀତିରେ ପରିବର୍ତ୍ତନ ଫଳରେ ବଗ ରକ୍ଷା ପାଇଗଲେ; ନଚେତ୍ ସମ୍ପୂର୍ଣ୍ଣରୂପେ ଅବଲୁପ୍ତ ହୋଇଥାନ୍ତେ ।

**ନନ୍ଦୀ ବଗ** (ବର୍ଣ୍ଣଚିତ୍ର ୭)—ଓଡ଼ିଆରେ ଏହାକୁ ଗାଈଗୁଡ଼ିବଗ ମଧ୍ୟ କହନ୍ତି । ହିନ୍ଦୀ ନାମ ସୁରଖିଆ ବଗଲ୍ ଓ ଗାଈ ବଗ୍‌ଲା; ଇଂରାଜୀରେ 'ଗାଈ ବଗ' (Cattle egret) । ଏହାର ବୈଜ୍ଞାନିକ ନାମ 'ବୁବୁଲକାସ ଇବିସ' (Bubulcus ibis) । ଏହା ଗୋଟିଏ ଧଳା ବଗ ଓ ଅନେକ ପରିମାଣରେ ଦେଖିବାକୁ ଚୂଳିଆ ବଗ (Little egret) ପରି । ତା' ହେଲେ ମଧ୍ୟ ସେମାନଙ୍କ ମଧ୍ୟରେ ସବୁବେଳେ ପ୍ରଭେଦ ବାରିହେବ । ନନ୍ଦୀ ବଗର ଥଣ୍ଟ ଅଧିକା ମଜବୁତ୍ ଏବଂ କଳା ନ ହୋଇ ହଳଦିଆ । ପ୍ରଜନନ ଋତୁରେ ଏହାର ମୁଣ୍ଡ, ବେକ ଓ ପିଠିରେ ସ୍ୱର୍ଣ୍ଣାଭ ବା ପୀତ-ଆସିଆ ସ୍ୱର୍ଣ୍ଣାଭ ଏହା ପର ଉଠେ ଏବଂ ଦ୍ୱାରା ତାକୁ ଚିହ୍ନିବାରେ ଭୁଲ ହୋଇନପାରେ । ଏହା ଚୂଳିଆ ବଗ ଓ ଅନ୍ୟ ଜଳାଭୂମିବାସୀ ବଗମାନଙ୍କ ତୁଳନାରେ ପାଣି ଉପରେ ଅପେକ୍ଷାକୃତ ଅଳ୍ପ ନିର୍ଭରଶୀଳ । ପ୍ରାୟଶଃ ପାଣି ପାଖରେ ନ ରହି ଏମାନେ ଏକାକୀ ବା ଦଳବଦ୍ଧ ଭାବରେ ଚରୁଥିବା ଗାଈମାନଙ୍କ ପିଛୁ ଧରିବାର ଦେଖାଯାନ୍ତି । ଏମାନଙ୍କର ଖାଦ୍ୟ ମୁଖ୍ୟତଃ ସ୍ଥଳବାସୀ କୀଟପତଙ୍ଗ । କୀଟ ଶିକାର କରିବାପାଇଁ ନନ୍ଦୀ ବଗ ଆଡ଼ମ୍ବର ସହକାରେ ଗାଈମାନଙ୍କ ଗୋଡ଼ ଭିତରଦେଇ ଏପଟ ସେପଟ ଦୌଡ଼ିବାର ଦେଖାଯାଏ । କୀଟପତଙ୍ଗ ବ୍ୟତିବ୍ୟସ୍ତ ହୋଇ କଡ଼କୁ ପଳାଇ ଗଲାବେଳେ ସେ ଲମ୍ଫଦେଇ ସେମାନଙ୍କୁ ଧରେ । ଅନ୍ୟ ସମୟରେ ଭଲଭାବେ ଚତୁର୍ଦ୍ଦିଗ ପର୍ଯ୍ୟବେକ୍ଷଣ କରିପାରିବା ପାଇଁ ଗାଈର ପିଠି ଉପରେ ବସି ଯାଉଥିବାର ମଧ୍ୟ ଦେଖାଯାଏ । ଘାସ ଉପରେ ଗାଈ ଚାଲିଗଲାବେଳେ ଝିଣ୍ଟିକା ଓ ଅନ୍ୟ ପତଙ୍ଗମାନେ ଏପଟ ସେପଟ ପଳାନ୍ତି, ଆଉ ନନ୍ଦୀ ବଗ ସେଥିପ୍ରତି ସତର୍କ ଦୃଷ୍ଟି ରଖିଥାଏ । ସେ ତା'ର ଦୀର୍ଘ ବେକକୁ ସଂପ୍ରସାରିତ କରି ମୁନିଆ ଥଣ୍ଟରେ ପଳାଇଯାଉଥିବା କୀଟମାନଙ୍କୁ ଧରି ଖାଏ । ଆହୁରି ମଧ୍ୟ, ଏମାନେ ଗାଈର ପିଠି, ପେଟ କାନରେ ଲାଗିଥିବା ରକ୍ତପାୟୀ ମାଛି ଓ ଅନ୍ୟ ପରଜୀବୀ କୀଟମାନଙ୍କୁ ଟୁଙ୍କି ଖାଇଦିଅନ୍ତି । ଏଥିପାଇଁ ନନ୍ଦୀ ବଗ ଗାଈ-ମଇଁଷିର

ପିଠି ଉପରେ ପରିତୃପ୍ତ ସହକାରେ ଏପଟ ସେପଟ ବୁଲବୁଲି କରି କୀଟ ଖୋଜିବାରେ ବ୍ୟସ୍ତ ରହିଥିବାର ଦେଖାଯାଏ । ନନ୍ଦୀ ବଗମାନେ ଆଦୃତ ଗଛରେ ସଂଘବଦ୍ଧ ଭାବେ ବାସକରନ୍ତି । ଏ ଗଛରେ ସେମାନଙ୍କ ବ୍ୟତୀତ କାଉ, ଛୋଟ କାଣ୍ଡିଆ ବଗ (Pond heron) ଓ ଅନ୍ୟ ପକ୍ଷୀମାନେ ମଧ୍ୟ ବାସକରିବାର ଦେଖାଯାଏ । ସୂର୍ଯ୍ୟ ଅସ୍ତଗଲେ ନନ୍ଦୀ ବଗମାନେ ଆକାଶ ମାର୍ଗରେ ବିକର୍ଣ୍ଣ ରେଖାରେ (diagonal lines) ବା ଅସଂଘବଦ୍ଧ ଭାବେ ଆଦୃତ ଗଛକୁ ରାତ୍ରି ଯାପନ ପାଇଁ ଉଡ଼ିଆସନ୍ତି । ଏତେବେଳେ ସେମାନଙ୍କର ବେକ ପଛଆଡ଼କୁ ଭାଙ୍ଗି ରହିଯାଏ, ମୁଣ୍ଡ ଦୁଇ କାନ୍ଧ ଭିତରେ କୁଜ ପରି ରହେ ଏବଂ ଗୋଡ଼ ଲାଞ୍ଜତଳେ ଜାକି ହୋଇ ପଛ ଆଡ଼କୁ ବାହାରିଥାଏ । ସେମାନେ ଦଳ ଦଳ ହୋଇ ଗଛରେ ନୀଡ଼ ରଚନା କରି ଅଣ୍ଡା ଦେଇ ଛୁଆ ଫୁଟାନ୍ତି । ସାଧାରଣତଃ ସେମାନେ ଛୋଟ କାଣ୍ଡିଆ ବଗମାନଙ୍କ ସହିତ ଏକାଗଛରେ ବସା କରନ୍ତି । କେତେବେଳେ ଗୋଟାଏ ଗଛରେ ବିଭିନ୍ନ ଜାତି ପକ୍ଷୀ; ଯଥା—ନନ୍ଦୀବଗ, ପାଣିକୁଆ, କର୍ମୋରାଣ୍ଟ ଓ ଧଳା ବଗମାନଙ୍କର ନୀଡ଼ ଦେଖିବାକୁ ମିଳେ । ନନ୍ଦୀ ବଗର ନୀଡ଼ କାଠି-ବସା ପରି କାଠିରେ ଅପୁରୁଷ ଭାବେ ତିଆରି ହୋଇଥାଏ । ଏମାନେ ଗହଳିଆ ଗଛରେ ନୀଡ଼ ରଚନା କରନ୍ତି । ପାଣି ପାଖରେ ଥିବା ଗଛରେ ଯେ ବସା କରିବେ ଏପରି କିଛି କଥା ନାହିଁ । କୋଳାହଳମୟ ସହର ବା ଗାଁ ବଜାର ଭିତରେ ଗଛମାନଙ୍କରେ ଏମାନେ ବସା କରିବାର ଦେଖାଯାଏ । ଥରକେ ନନ୍ଦୀ ବଗ ତିନୋଟିରୁ ପାଞ୍ଚଟି ଯାଏ ଅଣ୍ଡା ଦିଏ । ଅଣ୍ଡାର ରଙ୍ଗ ମସିଆ—ସରକଢ଼ା-ଦୁଧରେ ନୀଳରଙ୍ଗ ମିଶିଲେ ଯେପରି ବର୍ଣ୍ଣ ହେବ ସେହିପରି ।

ବଗବଂଶର ଆଉ ଏକ ସାଧାରଣ ପକ୍ଷୀ ହେଲା ଛୋଟ କାଣ୍ଡିଆ ବଗ (ବର୍ଣ୍ଣ ଚିତ୍ର ୮) । ଏହାକୁ ଇଂରାଜୀରେ 'ଗଡ଼ିଆ ପକ୍ଷୀ' (Pond bird) ଓ 'ଧାନକ୍ଷେତ ପକ୍ଷୀ' (Paddy bird) ବୋଲି କହନ୍ତି । ହିନ୍ଦୀ ନାମ "ଅନ୍ଧା ବଗଲା" । ବୈଜ୍ଞାନିକ ନାମ 'ଆରଡ଼ିଓଲା ଗ୍ରେୟୀ' (Ardeola grayii) । ଏହା ଆକାରରେ ଦେଶୀ ଗୃହପାଳିତ କୁକ୍କୁଟୀର ଆକାର ପରି । ବସିଥିଲାବେଳେ ଏହାର ରଙ୍ଗ ଈଷତ୍ ପୀତ ରଙ୍ଗର ଡୋରିଆ ଦାଗ ପଡ଼ିଥିବା ମାଟିଆ ବାଦାମୀ । ଉଡ଼ିଲା ମାତ୍ରେ ଲୁଚି ରହିଥିବା ଚକ୍‌ଚକ୍ ଧଳା ଡେଣା ଓ ଲାଞ୍ଜ ପ୍ରତିଭାତ ହୁଏ । ପ୍ରଜନନ ଋତୁରେ ଏମାନଙ୍କର ପିଠିରେ ବାଦାମୀ-ଅସିଆ ଗାଢ଼ ଲାଲ ରଙ୍ଗର କେଶ ପରି କୋମଳ ପର ସବୁ ଏବଂ ପଶ୍ଚାତ୍ କପାଳ ଅଂଶରେ ଗୋଟିଏ ଦୀର୍ଘ ସଫେଦ ଚୂଡ଼ାପରି ପକ୍ଷ ଉଠେ । ଏହା ଫଳରେ ଛୋଟ କାଣ୍ଡିଆ ବଗ ମସିଆ ବାଦାମୀ ରଙ୍ଗ ପରିବର୍ତ୍ତେ ଏକ ମନୋମୁଗ୍ଧକର ପକ୍ଷୀରେ ପରିଣତ

ହୁଏ । କାଦୁଆ ଗଡ଼ିଆ, ଗୋଳିଆ ହ୍ରଦ ଏବଂ ଅନ୍ୟ ଯେଉଁ ସ୍ଥାନରେ ସେମାନଙ୍କର ପ୍ରଧାନ ଖାଦ୍ୟ ପ୍ରାଣୀ ବେଙ୍ଗ, କାଦୁଅ ପଙ୍କ ଭିତରେ ରହୁଥିବା ମାଛ ଏବଂ କଙ୍କଡ଼ା ବାସକରନ୍ତି, ସେଭଳି ସ୍ଥାନରେ ଶ୍ରେଷ୍ଠ କାଣ୍ଡିଆ ବଗ ଏକ, ଦୁଇ ବା ତିନି ସଂଖ୍ୟାରେ ଦେଖାଯାନ୍ତି । ଜନଗହଳି ସହର ଭିତରେ ରହିଥିବା କଚ୍ଚା କୂଅ ଓ ମନ୍ଦିରର ପୋଖରୀରେ ମଧ୍ୟ ଏମାନେ ଦେଖିବାକୁ ମିଳନ୍ତି । ବର୍ଷା ଋତୁରେ ପାଣିରେ ଭରିଯାଇଥିବା ଖାଲୁଆ ଜାଗାସବୁ ପରେ ଯେତେବେଳେ ଶୁଖିଆସେ, ସେତେବେଳେ ସେଠାରେ ଆଶ୍ରୟ ନେଇଥିବା ବେଙ୍ଗମାନଙ୍କୁ ଭୋଜନ କରିବା ପାଇଁ ବହୁ ସଂଖ୍ୟାରେ ଶ୍ରେଷ୍ଠ କାଣ୍ଡିଆ ବଗ ଆସି ଜୁଟନ୍ତି । ଦବିଯାଉଥିବା ପଙ୍କ ଭିତରେ ବା ଅଳ୍ପ ପାଣି ଥିବା ଖାଡକୂଳରେ ଶ୍ରେଷ୍ଠ କାଣ୍ଡିଆ ବଗ କାନ୍ଧ ଭିତରେ ମୁଣ୍ଡକୁ ରଖି କୁଜା ହୋଇ ନିଶ୍ଚଳଭାବେ ଠିଆ-ହୋଇଥାଏ । ପ୍ରକୃତପକ୍ଷେ ସେ ଅତ୍ୟନ୍ତ ସତର୍କ ରହିଥାଏ ଏବଂ ବିପଦ ନାହିଁ ଭାବି ବେଙ୍ଗ କି ମାଛଟିଏ ତା'ର ଲମ୍ବା ପ୍ରକ୍ଷେପଣଶୀଳ ବେକ ଓ ବର୍ଚ୍ଛା ପରି ମୁନିଆ ଥଣ୍ଟ-ପାହାନ୍ତା ଭିତରକୁ ଆସୁଛି କି ନାହିଁ ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥାଏ । ସମୟେ ସମୟେ ସେ ବେକକୁ ଆଗକୁ ଲମ୍ବାଇ, ଥଣ୍ଟକୁ ଶିକାର କରିବା ପାଇଁ ସ୍ଥିର ରଖି, ଚାରିଆଡ଼କୁ ସତର୍କ ଦୃଷ୍ଟି ଦେଇ ପାଣି ଭିତରେ ଛପି ଛପି ଗୋଟିଏ ପାଦ ପରେ ଆଉ ଗୋଟିଏ ପାଦ ଉଠାଇ ପକାଇ ପାଦେ ପାଦେ ଆଗେଇ ଯାଉଥିବାର ଦେଖିବାକୁ ମିଳେ । ଯେଉଁଠି ଉତ୍ପୀଡ଼ିତ ହେବାର ଆଶଙ୍କା ନ ଥାଏ, ସେଠାରେ ଶ୍ରେଷ୍ଠ କାଣ୍ଡିଆ ବଗ ଅତ୍ୟନ୍ତ ପୋଷା ଓ ବିଶ୍ୱାସୀ ହୋଇଯାଏ । ଗାଁ ତୁଠରେ ଧୋବା ଲୁଗା କାଚୁଥିଲା-ବେଳେ ବା ସ୍ତ୍ରୀଲୋକମାନେ କଥା ହେଉ ହେଉ ଗରା, କଳସୀରେ ପାଣି ଭରିଲାବେଳେ ମାତ୍ର କେଇ ମିଟର ଦୂରରେ ଶ୍ରେଷ୍ଠ କାଣ୍ଡିଆ ବଗ ନିର୍ଭୟରେ ପାଣିକୂଳରେ ଠିଆହୋଇଥାଏ; ନ ହେଲେ ଆହାର ମିଳୁ ଗୋଡ଼ାଉଥିବାର ଦେଖାଯାଏ । ଭୟର ସୂଚନା ପାଇଲେ, ସେ କର୍କଶ ସ୍ୱରରେ ରାବ ଦେଇ ପକ୍ଷ ବିସ୍ତାରକରେ । ଏତେବେଳେ ହଠାତ୍ ତା'ର ବରଫ ପରି ଶୁଭ୍ର ପକ୍ଷ ଦେଖିବାକୁ ମିଳେ ଏବଂ ସେ ସାଧାରଣ ବଗ ଠାଣିରେ ଉଡ଼ିଯାଏ । ଗୋଧୂଳି ସମୟରେ ଶ୍ରେଷ୍ଠ କାଣ୍ଡିଆ ବଗ ବହୁସଂଖ୍ୟାରେ ଆସି ଆଦରିଥିବା ଗଛ ଉପରେ ରାତ୍ରି ଯାପନ ପାଇଁ ଜମାହୁଅନ୍ତି । ସେମାନେ କାଉ ପରି କାଠିରେ ନୀଡ଼ ରଚନା କରନ୍ତି । ସେମାନେ ପ୍ରାୟ ସହର ଓ ଗାଁ ମଝିରେ ଥିବା ବଡ଼ ବଡ଼ ଗଛ ଉପରେ ବସା ବାନ୍ଧନ୍ତି । ବସା ଯେ ଜଳ ନିକଟରେ ତିଆର ହେବ, ଏପରି ନୁହେଁ । ଏହି ସମୟରେ ଗଛରେ ସେମାନଙ୍କ ନୀଡ଼ ବ୍ୟତୀତ ଧଳା ବଗ (White egret), ନିଶା ବକ (Night heron) ଇତ୍ୟାଦି ପକ୍ଷୀଙ୍କ ବସା ମଧ୍ୟ ଦେଖାଯାଏ । ବର୍ଷା ପରେ

ବର୍ଷ ସେଇ ଏକାଗଛରେ ଶ୍ରେଷ୍ଠ କାଣ୍ଠିଆ ବଗ ନୀଡ଼ ରଚନା କରିଥାଏ । ଥରକେ ତିନୋଟିରୁ ପାଞ୍ଚଟି ଅଣ୍ଡା ଦିଏ । ଡିମ୍ବର ବର୍ଣ୍ଣ ପାଣ୍ଡୁର ସବୁଜ-ଆସିଆ ନୀଳ ।

**କ୍ରୌଞ୍ଚ** (Storks)—ଏହା ସିକୋନିଡ଼ି (family ciconiidae) ବଂଶ ଅନ୍ତର୍ଭୁକ୍ତ । କ୍ରୌଞ୍ଚ ବା ସାରସ ଜାତୀୟ ପକ୍ଷୀମାନେ ମୋଟାମୋଟି ଭାବେ ବଡ଼ ବଗ (heron) ମାନଙ୍କ ପରି । ସେମାନଙ୍କର ଗୋଡ଼ ଲମ୍ବା, ଅନୁଜଙ୍ଘ (tibia) ଅନାବୃତ, ବେକ ଲମ୍ବା ଏବଂ ଥଣ୍ଟ ଭାରି, କ୍ରମଶଃ ସରୁ ଓ ଗୋଜିଆ । ସାରସ ଉଡ଼ିଲାବେଳେ ବଗ ବୋଲି ଭ୍ରମ ହେବନାହିଁ । କାରଣ, ବଗ ଉଡ଼ିଲାବେଳେ ସେମାନେ ବେକକୁ ଭାଙ୍ଗି ଟୋଳିଆ ଇଂରାଜୀ ଏସ୍ (S) ଅକ୍ଷର ପରି କରିଥାନ୍ତି; ମାତ୍ର ସାରସ ଉଡ଼ିଲାବେଳେ ବେକ ଆଗକୁ ଲମ୍ବି ରହିଥାଏ । ବଗମାନଙ୍କର ସ୍ୱର ପେଶୀ (Voice muscles) ନଥାଏ । ସେଥିପାଇଁ ସେମାନଙ୍କର ସ୍ୱର ଶୁଣିବାକୁ ମିଳେନାହିଁ । କେବଳ ପ୍ରଜନନ ଋତୁରେ ବେଳେବେଳେ ସେମାନଙ୍କ ତଣ୍ଟିରୁ ଏକପ୍ରକାର ଅନୁଚ୍ଚ ଗଁ-ଗଁ ଶବ୍ଦ ବାହାରିଥାଏ । ଆହୁରି ମଧ୍ୟ ଏ ସମୟରେ (ପ୍ରଜନନ ଋତୁରେ) ମାଇ ଅଣ୍ଡିରି ଉଭୟ ଥଣ୍ଟରେ (mandibles—ନିମ୍ନ ହନୁ) ଥଣ୍ଟ ବଜାଇ ଜୋର୍‌ରେ ଝଡ଼ ଖଡ଼ ଶବ୍ଦ କରିଥାନ୍ତି । ଭାରତରେ ଦେଖାଯାଉଥିବା ଏହି ବଂଶର ଏକ ସାଧାରଣ ଓ ଚମତ୍କାର କ୍ରୌଞ୍ଚ ହେଲା ଚର୍ଚ୍ଚିତ **କ୍ରୌଞ୍ଚ** (Painted Stort) (ବର୍ଣ୍ଣ ଚିତ୍ର 9) । ଏହାକୁ ହିନ୍ଦୀରେ 'ଫେଙ୍ଗହିଲ', 'ଦୋଖ' ଓ 'କେଙ୍କାଖ୍ରୀ' କହନ୍ତି । ଏହାର ବୈଜ୍ଞାନିକ ନାମ 'ଇବିସ ଲିଉକୋସେଫାଲସ' (Ibis leucocephalus) । ଚର୍ଚ୍ଚିତ କ୍ରୌଞ୍ଚ ଶାଗୁଣା ପରି ବଡ଼ ପକ୍ଷୀଟିଏ ଓ ତଳୁ ମୁଣ୍ଡ ଉପରଯାଏ ଏକ ମିଟର ପର୍ଯ୍ୟନ୍ତ ଉଚ୍ଚ ହୁଏ । ଏହାର ପିଠି ଉପରର ଧଳା ପରରେ ଚକଚକିଆ ସବୁଜ-କଳା ରଙ୍ଗର ପଟା ଦାଗ ଘନଭାବେ ପଡ଼ିଥାଏ ଏବଂ ଗ୍ରୀବର ଧଳା ପର ଉପରେ ମଧ୍ୟ ସେହିପରି ଦାଗ ଥାଏ । ଲାଞ୍ଜ ପାଖର କୋମଳ ପର (Secondaries—ଗୌଣ ପର) ଚମତ୍କାର ଗୋଲାପୀ-ପୀତ ବର୍ଣ୍ଣର ହୋଇଥିବାରୁ ଏହି ପକ୍ଷୀର ନାମ "ଚର୍ଚ୍ଚିତ କ୍ରୌଞ୍ଚ" ହୋଇଅଛି । ଏହାର ମୁଖ ପର-ଦ୍ୱାରା ଆବୃତ ନୁହେଁ ଓ ହଳଦିଆ ମହମ ବର୍ଣ୍ଣର । ହଳଦିଆ ଓଜନିଆ ଥଣ୍ଟର ଅଗଭାଗ ସାମାନ୍ୟ ବଙ୍କ । ଦହ ଓ ଜଳାଭୂମିରେ ଏମାନଙ୍କୁ କ୍ଷୁଦ୍ର-କ୍ଷୁଦ୍ର ବା ବଡ଼ ବଡ଼ ଦଳରେ ଦେଖିବାକୁ ମିଳେ । ଅନ୍ୟ କ୍ରୌଞ୍ଚ ଜାତୀୟ ପକ୍ଷୀମାନଙ୍କ (Storks) ପରି "ଚର୍ଚ୍ଚିତ କ୍ରୌଞ୍ଚ" ଦିନସାରା ଜଳାଭୂଇଁ ବା ଅଗଭୀର ଜଳ ଭିତରେ ଆହାର ଅନ୍ୱେଷଣରେ ନିଶ୍ଚଳ-ଭାବେ କୁଜା ହୋଇ ଠିଆହୋଇଥାଏ, ନତୁବା ମାଛ ଓ ବେଙ୍ଗ ଧରିବା ପାଇଁ ଧୀରି ସ୍ଥିରି ଭାବେ ଏ ବାଟେ ସେ ବାଟେ ଦୌଡ଼ୁଥାଏ । ମାଛ ଓ ବେଙ୍ଗ ଏହାର ପ୍ରଧାନ ଭୋଜ୍ୟ

ହେଲେ ମଧ୍ୟ ତା' ସାଙ୍ଗକୁ ସେମାନେ ଜଳବାସୀ ପୋକ, କଙ୍କଡ଼ା ଓ ଗେଣ୍ଡା ଆହାର କରିଥାନ୍ତି । ଅଗଭୀର ଜଳରେ ଆଧାର ଧରି ଖାଇବାର ରୀତି କୌତୂହଳ ଉଦ୍ଦୀପକ । ବେକକୁ ପାଣି ଭିତରକୁ ନୁଆଁଇ, ଥଣ୍ଟକୁ ମେଲା କରି ଏମାନେ ଧୀରେ ପାଣି ଭିତରେ ଆଗେଇ ଚାଲନ୍ତି । ଏତେବେଳେ ଥଣ୍ଟ ଆଂଶିକ ପାଣି ଭିତରେ ବୁଡ଼ିରହିଥାଏ, ନିଶ୍ଚଳ ବା ଏପଟ ସେପଟ ହେଉଥାଏ ଓ ଗୋଟିଏ ପାଦ ଆଗକୁ ପଛକୁ ହୋଇ ପାଣିକୁ ଆଲୋଡ଼ିତ କରି ସେ ଆହାର ଜୀବକୁ ମେଲା ଥଣ୍ଟ ଆଡ଼କୁ ଘଉଡ଼ାଉଥାଏ । ଆହାର ପ୍ରାଣୀକୁ ଘଉଡ଼ାଇବା ପାଇଁ ଗୋଟିଏ ପାଦକୁ ଏପଟ ସେପଟ କଲାବେଳେ, ହଠାତ୍ କରି ସେ ସେଇ ପଟର ପକ୍ଷକୁ ମେଲାକରି ଦିଏ; ଫଳରେ ପାଣିରେ ତା'ର ଛାଇ ପଡ଼େ ଏବଂ ସମ୍ଭବତଃ ଆହାର ଜୀବକୁ ଥଣ୍ଟ ଆଡ଼କୁ ଘଉଡ଼ାଇବାରେ ସାହାଯ୍ୟ କରେ । ଜଳରେ ବା ଜଳ ନିକଟରେ ଥିବା ଗଛମାନଙ୍କରେ 'ଚନ୍ଦିତ କ୍ରୌଞ୍ଚ'ମାନେ ଦିନରେ ବସନ୍ତି ଓ ରାତି ଯାପନ କରନ୍ତି । ସେମାନେ ଉଡ଼ିଲାବେଳେ କିଛି ବାଟ ଦ୍ରୁତଭାବେ ପକ୍ଷ ସଞ୍ଚାଳନ କରନ୍ତି ଓ ତା'ପରେ ଅଳ୍ପ ସମୟ ପକ୍ଷ ସଞ୍ଚାଳନ ନ କରି ଧୀରେ ଧୀରେ ପବନରେ ଭାସନ୍ତି । ଅନ୍ୟ କ୍ରୌଞ୍ଚମାନଙ୍କ ପରି ସେମାନେ ଦିନର ଉତ୍ତପ୍ତ ସମୟରେ ଦୀର୍ଘ ସମୟ ଧରି ଉଚ୍ଚ ଆକାଶରେ ଚକ୍କର ଦିଅନ୍ତି । ସେମାନଙ୍କର ନୀଡ଼ କାଠିରେ ତିଆରି ହୋଇଥାଏ ଓ ଏକ ବଡ଼ ମଞ୍ଚା ପରି । ତା' ମଝିରେ ଗୋଟିଏ ଅଗଭୀର ଗାତ ଥାଏ ଓ ଗାତ ଭିତରେ ଦଳଜାତୀୟ ଉଦ୍ଭିଦର କାଣ୍ଡ ଓ ପତ୍ର ଦିଆଯାଇଥାଏ । ଜଳ ଭିତରେ ବା ନିକଟରେ ଗଛରେ ସେମାନେ ବସା କରନ୍ତି । ଗୋଟିଏ ଗଛରେ ଦଶଟିରୁ କୋଡ଼ିଏଟି ଯାଏ ପକ୍ଷୀବସା ଦେଖିବାକୁ ମିଳେ । ଆହୁରି ମଧ୍ୟ, ସେଇ ଗଛରେ କର୍ମୋରାଣ୍ଟ ଓ ଅନ୍ୟାନ୍ୟ ବଗ ଜାତୀୟ ପକ୍ଷୀମାନଙ୍କର ବସା ରହିଥାଏ । ସେମାନେ ଥରକେ ତିନୋଟିରୁ ପାଞ୍ଚଟି ଯାଏ ଅଣ୍ଡା ଦିଅନ୍ତି । ଅଣ୍ଡା ନିପ୍ରଭ ମଳିନ ଧଳା ଓ ବେଳେ-ବେଳେ ସେଥିରେ ବିକ୍ଷିପ୍ତଭାବେ ଦାଗ ବା ଗାର ପଡ଼ିଥାଏ ।

ସମ୍ଭବତଃ ଆମର ସବୁଠାରୁ ସାଧାରଣ ଓ ସବୁଠାରୁ ବେଶି ଅଞ୍ଚଳରେ ଦେଖା-ଯାଉଥିବା କ୍ରୌଞ୍ଚ ହେଲା ଗେଣ୍ଡାଳିଆ ବା କାଆଁସ (ବର୍ଣ୍ଣ ଚିତ୍ର 10) । ଏହା ଅନ୍ୟ କ୍ରୌଞ୍ଚମାନଙ୍କ ତୁଳନାରେ କ୍ଷୁଦ୍ର । ଏହାକୁ ଇଂରାଜୀରେ 'ମେଲାଥଣ୍ଟିଆ କ୍ରୌଞ୍ଚ' (Openbilled stork) ଏବଂ ହିନ୍ଦୀରେ ଗୁଙ୍ଗଲ ବା ଘୁଙ୍ଗଲ କହନ୍ତି । ଏହାର ବୈଜ୍ଞାନିକ ନାମ 'ଆନାସଟୋମାସ ଓସିଟାନ୍ସ' (Anastomus oscitans) । ଗୋଡ଼ରୁ ମୁଣ୍ଡ ଉପରଯାଏ ଉଚ୍ଚତା ପ୍ରାୟ ଏକ ମିଟରରୁ କମ୍ ହେବ । ଏହାର ବର୍ଣ୍ଣ ଧଳା ବା ଧୂସରିଆ ଧଳା ଓ ଡେଣାରେ କଳା ରଙ୍ଗ ଥାଏ । ବେଳେବେଳେ ଦୂରରୁ

ଏହାକୁ ଧୋବକାଙ୍କ (White stork) ବୋଲି ଭ୍ରମ ହୁଏ । ଗେଣ୍ଡାଳିଆର ମୁଖ୍ୟ ଲକ୍ଷଣ ହେଲା, ତା'ର ବୈଶିଷ୍ଟ୍ୟପୂର୍ଣ୍ଣ ଥଣ୍ଟ । ଥଣ୍ଟ ଲାଲ-କଳା ବର୍ଣ୍ଣର ଓ ତା'ର ଦୁଇଫାଳ ଅର୍ଦ୍ଧବୃତ୍ତାକାର ହୋଇ ମଝିରେ ମେଳଥାଏ । ଥଣ୍ଟର ଲକ୍ଷଣ ଯୋଗୁଁ ସ୍ୱାକୁ ଚହ୍ନିବାରେ ଭୁଲ ହୋଇ ନ ପାରେ । ସାଧାରଣତଃ ଗେଣ୍ଡାଳିଆ ପୋଖରୀ ଓ ଜଳାଭୂମିମାନଙ୍କରେ ଦୁଇ, ତିନି ବା ଅଧିକ ସଂଖ୍ୟାରେ ଦଳ ଦଳ ହୋଇ ଦେଖାଯାନ୍ତି । ମୋଟାମୋଟି ଭାବେ ଏମାନଙ୍କର ଅଭ୍ୟାସ ଓ ଆଚରଣ କ୍ରୌଞ୍ଚ (Stork) ଜାତୀୟ ପକ୍ଷୀମାନଙ୍କ ପରି ହେଲେହେଁ, ଏ ମାନଙ୍କର କୌତୂହଳଜନକ ଥଣ୍ଟର ତାତ୍ପର୍ଯ୍ୟ ଓ କାର୍ଯ୍ୟକାରିତା ଠିକ୍ ବୁଝାପଡ଼େନାହିଁ । ଗେଣ୍ଡାଳିଆ ବଡ଼ ବଡ଼ ଗେଣ୍ଡା ଧରି ଖାଏ । ମୁଖ୍ୟତଃ ତା'ର ଥଣ୍ଟ ବିଶେଷ ଖାଦ୍ୟ ସଂଗ୍ରହ ଲାଗି ଉପଯୋଜିତ ହୋଇଅଛି । ଦୁ'ଫାଳ ଥଣ୍ଟ ମଧ୍ୟରେ ଥିବା ଶୂନ୍ୟ ସ୍ଥାନ ସମ୍ଭବତଃ ଗେଣ୍ଡାର ମୁଖ ପଟ ଢାଙ୍କୁଣୀ (operculum)କୁ ଖୋଲିବାରେ ସାହାଯ୍ୟ କରେ । ଗେଣ୍ଡା ଖୋଳପା ଭିତରୁ କୋମଳ ଅଂଶତକ ପରିଚ୍ଛନ୍ନଭାବେ କାଢ଼ି ସେ ଆହାର କରିଥାଏ । ଗେଣ୍ଡାଳିଆ ବେଙ୍ଗ, ମାଛ, କଙ୍କଡ଼ା, ବଡ଼ ବଡ଼ ପୋକ ଓ ଅନ୍ୟାନ୍ୟ ଛୋଟ ଛୋଟ ଜୀଅନ୍ତା ଜୀବ ମଧ୍ୟ ଖାଏ । ଏମାନେ ଦଳ ଦଳ ହୋଇ ନୀଡ଼ ରଚନାକରି ଛୁଆ ଉଠୁଆନ୍ତି । ଏମାନେ କର୍ମୋରାଣ୍ଟ (cormorant), ବଗ (heron), କଳାବାଜେଣି (Black Ibis), ଧଳା ବାଜେଣି (White Ibis) ଓ ଅନ୍ୟାନ୍ୟ ଜଳାଭୂମି ପକ୍ଷୀମାନଙ୍କ ସହିତ ନୀଡ଼ ରଚନା କରିଥାନ୍ତି । ଗେଣ୍ଡାଳିଆର ବସା କାଠିଦ୍ୱାରା ନିର୍ମିତ ମୋଟାମୋଟିଭାବେ ଏକ ଗୋଲାକାର ମଞ୍ଚା ପରି । ମଝି ଅଂଶଟି ଖାଲୁଆ ହୋଇଥାଏ ଓ ସେଠି କଅଁଳ ଅନାବନା ଗଛର ପତ୍ର ଓ କାଣ୍ଡ ଦିଆଯାଇଥାଏ । ପୋଖରୀର ପାଣି ଭିତରେ ବା ପାଣି ନିକଟରେ, ବେଳେବେଳେ ଗ୍ରାମ ନିକଟରେ, ଗୋଟିଏ ଗୋଟିଏ ଗଛରେ ବହୁ ସଂଖ୍ୟକ ଗେଣ୍ଡାଳିଆଙ୍କର ନୀଡ଼ ଦେଖିବାକୁ ମିଳେ । ଥରକେ ଏମାନେ ତିନୋଟିରୁ ଚାରିଟି ଅଣ୍ଡା ଦିଅନ୍ତି । ଅଣ୍ଡା ମଳିନ ଧଳା; ମାତ୍ର ତା' ଉପରେ କୌଣସି ଦାଗ ପଡ଼ି ନଥାଏ ।

ଆମର ସବୁଠାରୁ ବଡ଼ କ୍ରୌଞ୍ଚ ପକ୍ଷୀ ହେଲା ହାଡ଼ଗିଲା (Adjutant stork) (ବର୍ଣ୍ଣ ଚିତ୍ର 11) । ହିନ୍ଦୀରେ ଏହାକୁ ହାଡ଼ଗିଲା, ଗରୁଡ଼ର ଓ ଢେଙ୍କ ବୋଲି କହନ୍ତି । ବୈଜ୍ଞାନିକ ନାମ 'ଲେପ୍ଟୋପ୍ଟିଲସ ଡ଼ୁବିୟାସ' (Leptoptilos dubius) । ଏହାର ଉଚ୍ଚତା ପ୍ରାୟ $1\frac{1}{2}$ ମିଟର । ହାଡ଼ଗିଲା ଏକ ବଡ଼, ମଳିନ-କଳା, ଧୂସର ଓ ମସିଆ ଧଳା ବର୍ଣ୍ଣର କ୍ରୌଞ୍ଚ ଜାତୀୟ ପକ୍ଷୀ । ଏହାର ଥଣ୍ଟ ଘନ ହଳଦିଆ, ତ୍ରିକୋଣିଆ ଓ ଗୋଜକଳା ଆକାର । ପ୍ରାୟ 30 ସେଣ୍ଟିମିଟର ଲମ୍ବର ଏକ ଦୀର୍ଘ,

ଅନାବୃତ ଲୋହିତ ବର୍ଣ୍ଣର ଥଳୀ ଏହାର ଗ୍ରୀବାରୁ ଝୁଲୁଥାଏ । ହାଡ଼ଗିଳାକୁ ଚିହ୍ନିବା ପାଇଁ ଏହା ତା'ର ବିଶେଷ ଲକ୍ଷଣ । ଶୁଖିଆସୁଥିବା ଜଳାଭୂମିମାନଙ୍କରେ ଓ କେତେକ ସ୍ଥାନରେ ମ୍ୟୁନିସିପାଲିଟିର ମଇଳା ଖାତରେ ଏହା ସାଧାରଣତଃ ଗୋଟିଏ ଗୋଟିଏ ବା ଅଳ୍ପ ସଂଖ୍ୟାରେ ଦେଖାଯାଏ । ଇଂରାଜୀରେ ଏଡ୍‌ଜୁଟାଣ୍ଟ (Adjutant) ଅର୍ଥ ସହକାରୀ ସେନାଧ୍ୟକ୍ଷ । ହାଡ଼ଗିଳାର ଇଂରାଜୀ ନାମ ଏଡ୍‌ଜୁଟାଣ୍ଟ ହେଇଁଷ୍ଟ ହେବାର କାରଣ ଏହି ଯେ, ଖାଦ୍ୟ ଅନ୍ୱେଷଣ ସମୟରେ ସେ ଦୃଢ଼ତା ସହକାରେ ମିଲିଟାରୀ କାଇଦାରେ ପାଦକୁ ଉଚ୍ଚକୁ ଟେକି ଓ ପକାଇ ଏପଟ ସେପଟ ବୁଲେ । ଏହାର ଝୁଲୁଥିବା ଥଳୀଟିର ପ୍ରକୃତ ତାତ୍ପର୍ଯ୍ୟ ଜଣାନାହିଁ । ଏହା ସମ୍ଭବତଃ ନାସିକା ଗହ୍ୱର ସହିତ ସଂଯୁକ୍ତ ଏକ ବାୟୁଥଳୀ । ଏହା ଗ୍ରାସନାଳୀ (gullet) ସହିତ ସଂଯୁକ୍ତ ହୋଇ ନଥାଏ; ତେଣୁ ଖାଦ୍ୟ ଆସି ଏଥିରେ ସଞ୍ଚିତ ହୋଇ ରହେନାହିଁ । ସାଧାରଣ ଲୋକଙ୍କର ଭୁଲ ଧାରଣା ହାଡ଼ଗିଳା ଖାଉଥିବା ଖାଦ୍ୟ ଏହି ଥଳୀରେ ଆସି ରହେ । ନାଡ଼ ଭୁଡ଼ି ଆଦି ଅସ୍ୱଚ୍ଛ ଓ ଆବର୍ଜନା ସାଙ୍ଗକୁ ହାଡ଼ଗିଳା ଅନେକ ସମୟରେ ଶାଗୁଣାଙ୍କ ସାଙ୍ଗରେ ମିଶି ସଢ଼ା ମାଂସ ଖାଏ । ଆହୁରି ମଧ୍ୟ ଏହା ମୃତ ବା ଚଢ଼ାରେ ପଡ଼ିଥିବା ମାଛ, ବେଙ୍ଗ, ସରୀସୃପ ଏବଂ କ୍ଷୁଦ୍ର ପ୍ରାଣୀ ଆହାର କରେ । ବଡ଼ ବଡ଼ ଝିଣ୍ଟିକା ଓ ଅନ୍ୟ କୀଟପତଙ୍ଗ ମଧ୍ୟ ଏହାର ଭୋଜ୍ୟ । ଉଡ଼ିବା ସମୟରେ ହାଡ଼ଗିଳା ଜୋର୍‌ରେ ଡେଣା ବାଡ଼େଇ ଶବ୍ଦ କରେ । ଉଡ଼ିବା ପୂର୍ବେ ଏହା ଜୋର୍‌ରେ ଡେଣା ବାଡ଼େଇ କିଛି ବାଟ ଦୌଡ଼ିଗଲା ପରେ ଯାଇ ଆକାଶକୁ ଉଠେ । ଅନ୍ୟାନ୍ୟ ଜାତିମାନଙ୍କ ପରି ହାଡ଼ଗିଳା ପ୍ରଖର ସୂର୍ଯ୍ୟାଲୋକରେ ଉଚ୍ଚାକାଶରେ ଚକ୍କର ଦିଏ । ବିଶ୍ରାମ ନେଲାବେଳେ ହାଡଗିଳା କିପରି ବସିଥାଏ ତାହା ବର୍ଣ୍ଣଚିତ୍ର 11ରେ ପୃଷ୍ଠଭୂମିରେ ଦର୍ଶିତ ହୋଇଅଛି । ଏହା ତା'ର ସ୍ୱତନ୍ତ୍ର ବସିବା ଠାଣି । ଏତେବେଳେ ସେ ଜଙ୍ଘା (ଜାନୁସନ୍ଧିଠାରୁ ଗୁଲଫ ପର୍ଯ୍ୟନ୍ତ ପଦାଂଶ)କୁ ସାମନାକୁ ପ୍ରସାରିତ କରି ତଳେ ଥାପି ଓ ମୁଣ୍ଡକୁ ଦୁଇ ସ୍କନ୍ଧ ମଧ୍ୟରେ ନୁଆଁଇ ବସିଥାଏ । ତା'ର ଏତେବେଳର ଚେହେରା ହାସ୍ୟକର ଓ ଦୟନୀୟ ମନେହୁଏ । ହାଡ଼ଗିଳାର ନୀଡ଼ ପାହାଡ଼ର ସ୍କନ୍ଧାଗ୍ର ଶିଳା ଉପରେ ବା ଉଚ୍ଚ ପାର୍ବତୀୟ ବୃକ୍ଷରେ ଦେଖିବାକୁ ମିଳେ । ସେମାନଙ୍କର ବସା ଏକାଠି ନ ହୋଇ ବେଳେ ବେଳେ ଛଡ଼ା ଛଡ଼ା ହୋଇ ବିକ୍ଷିପ୍ତଭାବେ ରହିଥାଏ । ନୀଡ଼ କାଠିରେ ତିଆରି ହୁଏ । ସେ ତିନୋଟି ବା ଚାରିଟି ଅଣ୍ଡା ଦିଏ । ଡିମ୍ୱ ଧଳା, ସାଧାରଣତଃ ବହୁତ ମଇଳିଆ ।

ହାଡ଼ଗିଳାର ଆଉ ଗୋଟିଏ ଜାତି ଅଛି, ତାକୁ ଇଂରାଜୀରେ 'ଗ୍ରେଟିଆ ଏଡ୍‌ଜୁଟାଣ୍ଟ'

ବା 'କ୍ଷୁଦ୍ର ହାଡ଼ଗିଲା' (Lesser Adjutant) କହନ୍ତି । ଏହାର ବୈଜ୍ଞାନିକ ନାମ 'ଲେପଟପଟିଲସ ଜାଭାନିକାସ' (Leptoptilos javanicus) । ଅପ୍ରଚୁର ସଂଖ୍ୟାରେ କେରଳ ଓ ସିଂହଳ ସମେତ ବିସ୍ତୃତ ଅଞ୍ଚଳରେ ଏହା ଦେଖିବାକୁ ମିଳେ । ଏହାର ବର୍ଣ୍ଣ ମୁଖ୍ୟତଃ, ପିଠି ଉପର ଚକ୍‌କଣିଆ ଧାତୁପରି କଳା, ତଳପାଖ ଧଳା । ହାଡ଼ଗିଲା ପରି ଏହାର ଝୁଲୁଥିବା ଥଳି ନାହିଁ ।

ବଂଶ ଥ୍ରେସକିଓରନିଥିଡ଼(Threskiornithidae)—ଏ ବଂଶର ପକ୍ଷୀ ହେଲେ ଧଳା-ବାଜେଣି ଓ କଳା-ବାଜେଣି (Ibis) ଏବଂ ଗୁମଚ ଦାଢ଼ (Spoon-bill) ।

**ଦା'ବେଣ୍ଟିଆ**—ଏହାକୁ ଧଳା ବାଜେଣି ଓ ଦାଢ଼ ବୋଲି ମଧ୍ୟ କହନ୍ତି । ହିନ୍ଦୀ ନାମ—ମୁଣ୍ଡା, ମୁଣ୍ଡୁଖ୍, ସଫେଦ ବାଜ । ଇଂରାଜୀ ନାମ 'ଧଳା-ବାଜେଣି (White ibis) । ବୈଜ୍ଞାନିକ ନାମ 'ଥ୍ରେସକିଓରନିସ ମେଲନୋସେଫାଲ୍' (Threskiornis melanocephala) । ଏହା ଏକ ଜଳାଭୂମି-ପକ୍ଷୀ । ବର୍ଣ୍ଣ ଧଳା ଓ ଆକାର ଏକ ବଡ଼ ଗୃହପାଳିତ କୁକୁଡ଼ା ପରି । ମୁଣ୍ଡ ଓ ବେକ ଅନାବୃତ ଓ କୃଷ୍ଣବର୍ଣ୍ଣ । ଥଣ୍ଟ ଲମ୍ବା, ମଜଭୁତ୍, କଳା ଏବଂ ତଳ ଆଡ଼କୁ ବଙ୍କା । ଜନନ-ଋତୁରେ କାନ୍ଧର ଧଳାବର୍ଣ୍ଣର ପର ଶିଳଟ ପରି ଧୂସର ବର୍ଣ୍ଣ ଧାରଣକରେ ଓ ପକ୍ଷର ଗୌଣ ପର ମଧ୍ୟ ସେହି ବର୍ଣ୍ଣ ହୁଏ । ଆହୁରି ମଧ୍ୟ ବେକମୂଳରେ ଲମ୍ବା ଆଲଙ୍କାରିକ ପର ଉଠେ । ଜଳାଭୂମିରେ ଓ ଯୋର କଡ଼ରେ ଏମାନେ ଦଳ ଦଳ ହୋଇ ଦେଖାଯାନ୍ତି । ବେଳେ ବେଳେ ଗୋଟିଏ ଗୋଟିଏ ଦଳରେ ବହୁସଂଖ୍ୟକ ପକ୍ଷୀ ଥାନ୍ତି । ଏମାନେ ଗୁମଚ ଦାଢ଼ (Spoon bill), ସାରସ (Stork) ଓ ସେହିପରି ପକ୍ଷୀମାନଙ୍କ ସହିତ ମିଶି ତତ୍ପରତାର ସହିତ ଜଳାଭୂମିର ଘାସ ପଡ଼ିଆ ଓ କଟା ହୋଇଯାଇଥିବା ଧାନଗଛର ଥୁଣ୍ଟା ମୂଳରେ ଖାଦ୍ୟ ଅନ୍ୱେଷଣ କରିବାର ଦେଖାଯାଏ । ଦା'ବେଣ୍ଟିଆ ତା'ର ଚମୁଚା ପରି ଥଣ୍ଟକୁ ଅଧା ମେଲାଇ କାଦୁଅରେ ପୂରାଇ ଖାଦ୍ୟ ଦରାଣ୍ଡୁଥାଏ । ଅଗଭୀର ଜଳରେ ଏହିପରିଭାବେ ଖାଦ୍ୟ ସଂଗ୍ରହ କଲାବେଳେ ଅନେକ ସମୟରେ ତା' ମୁଣ୍ଡ ପୂରା ବୁଡ଼ିରହିଥାଏ । ଗେଣ୍ଡା ଶାମୁକାଦି ପ୍ରାଣୀ (mollusc), ଚିଙ୍ଗୁଡ଼ି, କଙ୍କଡ଼ାଦି ଜୀବ (Crustaceans), ଜିଆ (worms), କୀଟ ଓ ବେଙ୍ଗ ଇତ୍ୟାଦି ସେମାନଙ୍କର ପ୍ରଧାନ ଖାଦ୍ୟ । ବେଳେ ବେଳେ ଦା'ବେଣ୍ଟିଆ ମାଛ ମଧ୍ୟ ଖାଇଥାନ୍ତି । ହୁରୁଡ଼ିଲେ ଓ ରାତି ବିଶ୍ରାମ ପାଇଁ ସେମାନେ ଗଛ ଡାଳରେ ଯାଇ ବସନ୍ତି । ସେମାନେ ଦ୍ରୁତବେଗରେ ସିଧା ଉଡ଼ନ୍ତି । ଏତେବେଳେ ବେକ ଓ ଲମ୍ବା ଥଣ୍ଟ ଆଗକୁ ପ୍ରସାରିତ ହୋଇ ରହେ ଏବଂ ଗୋଡ଼ ଲମ୍ବିତଭାବେ ପଛ ଆଡ଼କୁ ବାହାରି ରହିଥାଏ । କିଛି ସମୟ ଦ୍ରୁତ ଓ କ୍ରମିକ ପକ୍ଷ ସଞ୍ଚାଳନ କରି ତା'ପରେ

ଦା'ବେଣ୍ଡିଆ ଅଳ୍ପ ଅଳ୍ପ ପବନରେ ଭାସି ଭାସି ଗତିକରେ; ପୁଣି ତା'ପରେ ଦ୍ରୁତ ପକ୍ଷ ସଞ୍ଚାଳନ କରେ—ଏହିପରି ଭାବେ ଉଡ଼େ । ଚରିଭୂମିକୁ ଗଲାବେଳେ ଓ ସେଠାରୁ ଫେରିଲାବେଳେ ଏମାନେ ପାତିହଂସ ପରି ଇଂରାଜୀ 'ଭି' (V) ଆକାରରେ ଉଡ଼ିଯାଆନ୍ତି ବା ତରଙ୍ଗାୟିତ ଡାଇଗୋନାଲ୍ ଶ୍ରେଣୀ ଆକାରରେ ଉଡ଼ିଯାଆନ୍ତି । କୌଞ୍ଚ (Stork) ଓ ଚାମଚଦାଢ଼ (Spoon bill) ପକ୍ଷୀମାନଙ୍କ ପରି ସେମାନଙ୍କର ପ୍ରକୃତ ସ୍ୱରଯନ୍ତ୍ର ନାହିଁ । ପ୍ରଜନନ ସମୟରେ ଅବଶ୍ୟ ସେମାନେ ଏକ ବିଶେଷ ପ୍ରକାର ପେଟରୁ ବାହାରିଲା ସ୍ୱର ପରି ଶବ୍ଦ କରନ୍ତି । ଏହା କେତେକ ପରିମାଣରେ ଘୁଷୁରିର ଶବ୍ଦ ପରି । ଏହି ଶବ୍ଦ ଜୋର ନୁହେଁ; ମାତ୍ର କମ୍ପନଶୀଳ । ଗୁଡ଼ିଏ ଲୋକ ଏକାଠି ୫୦ ଗଜ ଦୂରରେ କଥାଭାଷା ହେଲେ ଯେପରି ଶୁଣାଯାଏ, ଦୂରରୁ ଏହି ଶବ୍ଦ ଶୁଣିବାକୁ ସେହିପରି ।

ଜଳରେ, ଜଳ ନିକଟରେ ଓ ସମୟ ସମୟରେ ଗାଁ ଉପକଣ୍ଠରେ ଗଛ ଉପରେ ଏମାନେ ନୀଡ଼ ରଚନା କରନ୍ତି । ସେହି ଗଛରେ ସେମାନଙ୍କର ଖାଦ୍ୟ ଅନ୍ୱେଷଣ ବେଳର ସାଥୀ; ଯଥା—ଚାମଚଦାଢ଼, ସାରସ ଏବଂ କର୍ମୋରାଣ୍ଟ ଓ ପାଣିକୁଆମାନଙ୍କର ନୀଡ଼ ମଧ୍ୟ ଦେଖିବାକୁ ମିଳିଥାଏ । ବସା କାଠିରେ ତିଆରି ହୋଇଥାଏ ଓ ସମତଳ । ସେଥିରେ ସାଧାରଣତଃ ପତ୍ର ବା ଅନ୍ୟ କିଛିର ଆସ୍ତରଣ ନଥାଏ । ଦା'ବେଣ୍ଡିଆ ଥରକେ ଦୁଇରୁ ଚାରିଟି ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ନୀଳଆସିଆ ବା ସବୁଜ-ଆସିଆ ଧଳା । ସେଥିରେ କୌଣସି ଚିହ୍ନ ନଥାଏ ବା ହାଲୁକା ବାଦାମୀ ରଙ୍ଗର କ୍ଷୀଣ ଚିହ୍ନ ଥାଏ ।

**କଳା-ବାଜେଣି**—ଏହାକୁ ଓଡ଼ିଶାର କେତେକ ସ୍ଥାନରେ ଚଣାଖାଇ ବୋଲି କହିଥାନ୍ତି । ହିନ୍ଦୀ ନାମ କାଲା ବାଜା, କରାନକୁଲ । ଇଂରାଜୀ ନାମ 'କଳା-ବାଜେଣି' (Black Ibis) । ବୈଜ୍ଞାନିକ ନାମ 'ସିଉଡ଼ିବିସ ପାପିଲ୍ଲୋସା' (Pseudibis papillosa) (ବର୍ଣ୍ଣ ଚିତ୍ର 12) । ଏହା ଗୋଟିଏ ବଡ଼ ପକ୍ଷୀ । ଆକାରରେ ଓ ମୋଟାମୋଟି ଦେଖିବାକୁ ପ୍ରାୟ ଦା'ବେଣ୍ଡିଆ ପରି । କଳା-ବାଜେଣିର କାନ୍ଧ ପାଖରେ ଗୋଟିଏ ସ୍ପଷ୍ଟ ଧଳା ଚିହ୍ନ ଥାଏ ଓ ଗୋଡ଼ର ବର୍ଣ୍ଣ ଇଟା ପରି ଲାଲ । ତାକୁ ଚିହ୍ନି-ପାରିବା ପାଇଁ ଆଉ ଲକ୍ଷଣ ହେଲା, ତା'ର ମୁଣ୍ଡ କଳା ଓ ଅନାବୃତ । ମୁଣ୍ଡ ଉପରେ ଏକ ତ୍ରିକୋଣାକୃତି ସ୍ଥାନରେ ଗାଢ଼ ଲାଲ ରଙ୍ଗର ଛୋଟ ଛୋଟ ଖାଉଡ଼ି ରହିଥାଏ । ଖୋଲା ସମତଳ ଭୂମିରେ ହ୍ରଦଭୂଇଁ ପାଖରୁ ଦଳ ଦଳ ହୋଇ କଳା-ବାଜେଣି ଦେଖାଯାଆନ୍ତି । ପ୍ରତି ଦଳରେ ତିନି ଚାରୋଟି କରି ପକ୍ଷୀ ଥାଆନ୍ତି । ବିକ୍ଷିପ୍ତ ହୋଇ ରହିଥିବା ଦଳମାନଙ୍କରେ ତିନୋଟିରୁ ଦଶଟି ଯାଏ ପକ୍ଷୀ ମଧ୍ୟ ଥାଇପାରନ୍ତି । ଦା'ବେଣ୍ଡିଆ ପରି କଳା-ବାଜେଣି ଯୋଡ଼ି ବା ନଦୀ କୂଳରେ ସେତେ ଦେଖାଯାଏ ନାହିଁ ଓ ଅନେକ ସମୟରେ ପାଣିଠାରୁ

ବେଶ୍ କିଛି ଦୂରରେ ଦେଖାଯାଇଥାଏ । ଏହାର ପ୍ରଧାନ ଖାଦ୍ୟ କୀଟପତଙ୍ଗ ଓ ଶସ୍ୟ। ଝିଟିପିଟି, ଛୋଟ ଛୋଟ ସାପ ଓ ତେନ୍ତୁଳିଆ ବିଛା ମିଳିଲେ ଖାଏ । ଏହି ପକ୍ଷୀମାନଙ୍କର ନିର୍ଦ୍ଦିଷ୍ଟ ବିଶ୍ରାମସ୍ଥଳୀ ଥାଏ । ସେମାନେ କେବଳ ସେଇ ସ୍ଥାନରେ ରହନ୍ତି । ଉଡ଼ିଯାଇ ସେମାନେ ନିର୍ଦ୍ଦିଷ୍ଟ ଗଛ ଉପରେ ବସନ୍ତି ଓ ରାତ୍ରିଯାପନ କରନ୍ତି । ଉଡ଼ିଲାବେଳେ ଇଂରାଜୀ 'ଭି' (V) ଅକ୍ଷର ଗଠନକରି ଉଡ଼ନ୍ତି । କିଛି ବାଟ ଜୋର୍‌ରେ ପକ୍ଷ ସଞ୍ଚାଳନ କରି ଉଡ଼ିଲା ପରେ ଅଳ୍ପ ସମୟ ପାଇଁ ଅଉ ପକ୍ଷ ନ ଦୋହଲାଇ ପବନରେ ଭାସନ୍ତି; ପୁଣି ଜୋର୍‌ରେ ପକ୍ଷ ସଞ୍ଚାଳନ କରି ଉଡ଼ିଲା ପରେ ପବନରେ ଭାସନ୍ତି—ଏହିପରି ଉଡ଼ନ୍ତି । ମୋଟାମୋଟିଭାବେ କହିବାକୁଗଲେ କଳା-ବାଜେଣି ଗୋଟିଏ ନୀରବ ପକ୍ଷୀ । ବେଳେ ବେଳେ ଏହା ଜୋର୍‌ରେ ଦୁଇ ତିନୋଟି ଅନୁନାସିକ (nasal) ଚିଣଚିଣିଆ ଶବ୍ଦ କରେ । ଉଡ଼ୁଥିଲାବେଳେ ମୁଖ୍ୟତଃ ଏହି ଶବ୍ଦ ଜାତ ହୁଏ । ଏହି ଶବ୍ଦ ଶୁଣିଲେ ଚକୁଆ-ଚକୋଇର ଶବ୍ଦ ଶୁଣୁଛେ ବୋଲି ମନେହୁଏ । କଳା-ବାଜେଣି ପକ୍ଷୀ ଅନ୍ୟ ଚଢ଼େଇଙ୍କ ସାଙ୍ଗରେ ବସା କରି ଅଣ୍ଡା ଉତ୍ପାଦନ କରନ୍ତି ନାହିଁ । ଅବଶ୍ୟ ଗୋଟିଏ ଗଛରେ ଦୁଇ ତିନୋଟି ଯାଏ ସେଇ କଳାବାଜେଣି ପକ୍ଷୀବସା ବେଳେ ବେଳେ ଦେଖିବାକୁ ମିଳିପାରେ । ନୀଡ଼ ବଡ଼ ଓ କପ୍ ପରି ଆକାରର ହୋଇଥାଏ । ଡାଳରେ ବସା ତିଆରି ହୋଇଥାଏ ଏବଂ କପ୍‌ର ଭିତରେ କୁଟା ଓ ପର ପରସ୍ତ ଥାଏ । ବଡ଼ ଗଛର ଉପରିଆଡ଼କୁ ନଚେତ୍ ତାଳ ଗଛ ଉପରେ ନୀଡ଼ ରଚିତ ହୋଇଥାଏ । ଏହି ଗଛ ସାଧାରଣତଃ ପାଣିଠାରୁ ଦୂରରେ ରହିଥାଏ । ବେଳେ ବେଳେ କଳାବାଜେଣି ଇଗଲ୍ ଓ ଶାଗୁଣାମାନଙ୍କର ପୁରୁଣାବସାକୁ ଅଣ୍ଡା ଦେବା ଲାଗି ବ୍ୟବହାର କରିଥାଏ । ଥରକେ ଦୁଇରୁ ଚାରୋଟି ଯାଏ ଅଣ୍ଡା ଦିଏ । ଅଣ୍ଡା ଦେଖିବାକୁ ଉଜ୍ଜ୍ୱଳ ଫିକା ସବୁଜ । ସେଥିରେ ଆଦୌ ଚିହ୍ନ ନଥାଏ ବା ବାଦାମୀ ବର୍ଣ୍ଣର ଚିହ୍ନ ଓ ଡୋରିଆ ଦାଗ ଥାଏ ।

**ଚାମଚଦାଢ଼** (ବର୍ଣ୍ଣଚିତ୍ର 13)—ଓଡ଼ିଶାର କେତେକ ସ୍ଥାନରେ ଏ ପକ୍ଷୀକୁ ଚାମଚ-ଗୋଡ଼ୀ ବୋଲି ମଧ୍ୟ କହନ୍ତି । ଇଂରାଜୀ ନାମ 'ଚାମଚ ଥଣ୍ଟି' (spoon bill); ହିନ୍ଦୀ ନାମ ଚମଚା ବାଜା, ଡାବିଲ । ବୈଜ୍ଞାନିକ ନାମ 'ପ୍ଲାଟାଲିଆ ଲିଉକୋରୋଡ଼ିଆ' (Platalea leucorodia) । ବାଜେଣି ପକ୍ଷୀଙ୍କର ଏକ ନିକଟ ଜ୍ଞାତି ହେଲେ ମଧ୍ୟ ଏହାର ଥଣ୍ଟ ଏକାବେଳକେ ଭିନ୍ନ ଓ ସ୍ୱତନ୍ତ୍ର । ଚାମଚଦାଢ଼ର ଥଣ୍ଟ କଳା-ହଳଦିଆ, ଓସାରିଆ ଓ ଚଟାଳିଆ ଏବଂ ଅଗଭାଗ ପ୍ରଶସ୍ତ । ପକ୍ଷୀଟି ଗୃହପାଳିତ ପାତିହଂସଠାରୁ ବଡ଼ ଓ ଠିଆହେଲେ ପ୍ରାୟ 45 ସେଣ୍ଟିମିଟର ଉଚ୍ଚ ହୁଏ । ଏହାର ଗୋଡ଼ ଲମ୍ବା, ବେକ ଲମ୍ବା ଓ ଦେହର ବର୍ଣ୍ଣ ବରଫ ପରି ଧଳା । ପ୍ରଜନନ ଋତୁରେ ଏହାର

ମୁଣ୍ଡରେ ଲମ୍ବା ପୁଷ୍ପ ବର୍ଦ୍ଧିତ ଫିକା ହଳଦିଆ ବର୍ଣ୍ଣର ଚୂଳ ଉଠେ ଓ ବେକ ତଳର ଉପର ଅଂଶରେ ଗୋଟିଏ ହଳଦିଆ ପଟି ଦେଖାଯାଏ । ଏହି ପକ୍ଷୀଗୁଡ଼ିକ ଏକାକୀ ଅଥବା ଦଳ ଦଳ ହୋଇ ବାସକରନ୍ତି । ଗୋଟିଏ ଦଳରେ 10ରୁ 20ଟି ବା ଅଧିକ ପକ୍ଷୀ ଥାନ୍ତି । ଏମାନେ ସାରସ (stork) ବା ଅନ୍ୟ ଜଳାଭୂମିର ପକ୍ଷୀମାନଙ୍କ ସହିତ ମଧ୍ୟ ମିଶି ବାସକରିବାର ଦେଖାଯାଏ । ଗୁମଚଦାଢ଼ ଭାରତର ଏକ ବାସିନ୍ଦା ପକ୍ଷୀ ହେଲେ ମଧ୍ୟ ଶୀତ ଋତୁରେ ଭାରତ ବାହାରୁ ଆମ ଦେଶକୁ ସେହି ପକ୍ଷୀ ଉଡ଼ିଆସିବା ଫଳରେ ସେତେବେଳେ ସେମାନଙ୍କ ସଂଖ୍ୟା ବହୁତ ବଢ଼ିଯାଏ । ଏମାନେ ଜଳାଭୂମି, ଯୋର, ନଦୀ ଓ ସମୁଦ୍ରଖାଡ଼ିର କାଦୁଆ ଅଞ୍ଚଳରେ ଦେଖିବାକୁ ମିଳନ୍ତି । ଗୁମଚଦାଢ଼ ପକ୍ଷୀ ଅଗଭୀର ଜଳରେ କୂଳଆଡ଼କୁ ଚରନ୍ତି । ସକାଳେ ଓ ସଞ୍ଜରେ ସେମାନେ ଆହାର ସଂଗ୍ରହ କରନ୍ତି; ଦିନର ବାକି ସମୟରେ କୌଣସି ବାଲି ଚଡ଼ାରେ ବିଶ୍ରାମ ନିଅନ୍ତି । ଚରିଭୂଇଁକୁ ଆସିଲାବେଳେ ବା ଫେରିଲାବେଳେ ସେମାନେ ବେଶ୍ ଉଚ୍ଚରେ ବିକର୍ଣ୍ଣ ରେଖାରେ (diagonally) ଗୋଟିକ ପଛରେ ଗୋଟିଏ ବା ଇଂରାଜୀ 'ଭି' (V) ଆକାରରେ ସୁସଜ୍ଜିତଭାବେ ଉଡ଼ିଯାଇଥାନ୍ତି । ଏତେବେଳେ ସେମାନଙ୍କର ବେକ ଓ ଗୋଡ଼ ପ୍ରସାରିତ ରହିଥାଏ ଓ ଡେଣା ଧୀର ଅଥଚ ଏକଭାବରେ ଆନ୍ଦୋଳିତ ହେଉଥାଏ । ବେଙ୍ଗଫୁଲ, ବେଙ୍ଗ, କମ୍ବୋଜ (mollusc) ଓ ଜଳବାସୀ କୀଟ ଏମାନଙ୍କର ଖାଦ୍ୟ । ସେଥି ସହିତ କିଛି ଉଦ୍ଭିଜ ପଦାର୍ଥ ମଧ୍ୟ ସେମାନେ ଆହାର କରିଥାନ୍ତି । ଯୋରମାନଙ୍କରେ କୂଳ କଡ଼କୁ ଅଗଭୀର ଜଳରେ ଗୁମଚଦାଢ଼ ପକ୍ଷୀ-ପଲ ଗୁଳି ଗୁଳି ବେକକୁ ପ୍ରସାରିତ କରି ଗାର୍ଯ୍ୟିକ୍ ଭାବେ ଏପଟ ସେପଟ ଅଣ୍ଟ ଗେଣ୍ଡି ଖାଦ୍ୟ ଅନ୍ୱେଷଣ କରନ୍ତି । ଏତେବେଳେ ଅଣ୍ଟ ଆଂଶିକ ମେଲ ଥାଏ ଓ ଅଣ୍ଟର ତଳ ଫାଳ ଦାଆପରି କାର୍ଯ୍ୟ କରି କାଦୁଆ ମାଟିକୁ ତାଡ଼ିପକାଏ । ଘନ ସନ୍ନିବିଷ୍ଟ, ଆହାର ଜୀବ ଧରିବାକୁ ଅଧୀର, ପରସ୍ପର ସଂଲଗ୍ନ ଗୁମଚଦାଢ଼ ପକ୍ଷୀଦଳ ଶୃଙ୍ଖଳିତ ଭାବେ ଉପର୍ଯ୍ୟୁକ୍ତମତେ ଖାଦ୍ୟ ସଂଗ୍ରହରେ ଆଗେଇ ଚାଲନ୍ତି ବା ପ୍ରାୟ ଦୌଡ଼ି ଅଗ୍ରସର ହୁଅନ୍ତି । ଯେଉଁ ଅଂଶରେ ବେଶି ଖାଦ୍ୟ ମିଳେ, ସେଠି କାଦୁଅକୁ ଉପର ତଳ ଖୋଳିପକାନ୍ତି । ଏହି ପକ୍ଷୀ ବେଳେବେଳେ କେବଳ ଏକପ୍ରକାର ଘୋଁ ଭ୍ ଘୋଁ ଭ୍ (grunt) ଶବ୍ଦ କରିଥାଏ । କୌଣସି କୌଣସି ଗଛରେ କେବଳ ଗୁମଚଦାଢ଼ମାନଙ୍କର ନୀଡ଼ ଦେଖିବାକୁ ମିଳେ; ନଚେତ୍ ସେମାନଙ୍କ ନୀଡ଼ ସହିତ ବଗ, ଦାଢ଼, ଚଣାଖାଇ (Ibis), କର୍ମୋରାଣ୍ଟ ଓ କ୍ରୌଞ୍ଚ ଜାତୀୟ ପକ୍ଷୀମାନଙ୍କର ବସା ରହିଥାଏ । ଯୋର ନିକଟରେ ପାଣିରେ ବା ପାଣିପାଖରେ ଥିବା ଗଛରେ, ସାଧାରଣତଃ ଗାଁ ବାହାରେ, ସେମାନଙ୍କର କାଠିରେ ତିଆରି

ମଝାଭଳି ବଡ଼ ମାଡ଼ ଦେଖିବାକୁ ମିଳେ । ଥରକେ ସେମାନେ ଗୋଟିଏ ଅଣ୍ଡା ଦିଅନ୍ତି । ଅଣ୍ଡା ମଳିନ ଧଳା ଏବଂ ତା' ଉପରେ ବିକ୍ଷିପ୍ତଭାବେ ଘନ ଲାଲ-ବାଦାମୀ ବିନ୍ଦୁ ଓ ଦାଗ ଥାଏ ।

ଭାରତରେ ଫୋଏନିକପ୍‌ଟେରିଡ଼ି (Phoenicopteridae) ବଂଶର ଗୋଟିଏ ମାତ୍ର ପକ୍ଷୀ ଦେଖିବାକୁ ମିଳେ । ତାହା ହେଲା ଏଣ୍ଡା ପକ୍ଷୀ (Flamingo) (ବର୍ଣ୍ଣଚିତ୍ର 14) । ଏହାକୁ ଓଡ଼ିଆରେ ମରାଳ ବୋଲି ମଧ୍ୟ କହନ୍ତି । ବୈଜ୍ଞାନିକ ନାମ 'ଫୋଏନିକପ୍‌ଟେରସ ରୋଜିଆସ' (Phoenicopterus roseus) । ହିନ୍ଦୀ ନାମ ବୋଗ୍ ହଂସ, ଗୁରକ୍ ବାଗ୍‌ଗୋ । ଏହା ଗୋଟିଏ ଫିକା ଗୋଲାପୀ-ଧଳା ରଙ୍ଗର ପକ୍ଷୀ । ଏହାର ଦେହ ଗୃହପାଳିତ ହଂସ ପରି ବଡ଼; ଗୋଡ଼ ଲମ୍ବା, ଅନାବୃତ ଓ ପାଟଳ ବର୍ଣ୍ଣ; ବେକ ତରଙ୍ଗ ପରି ବଙ୍କା । ଠିଆହୋଇଥିଲା ବେଳେ ଏହାର ଉଚ୍ଚତା ହୁଏ ପ୍ରାୟ ଦେଢ଼ ମିଟର । ଏହାର ପାଟଳ ବର୍ଣ୍ଣର ଦୀର୍ଘ ଥଣ୍ଟ ମଝି ଅଂଶରୁ ତଳକୁ ବାଙ୍କି ଯାଇଥାଏ । ଏ ପ୍ରକାର ଥଣ୍ଟ ଏହାର ଏକ ବିଶିଷ୍ଟ ଲକ୍ଷଣ । ପାଦର ଅଙ୍ଗୁଳି ମଧ୍ୟରେ ପାତିହଂସ ପରି ଯୋଜକ ଚର୍ମ ରହିଥାଏ । ଗୋଟିଏ ଦଳ ଏଣ୍ଡା ପକ୍ଷୀ ଉଡ଼ିଯାଉଥିବା ସମୟରେ ସେମାନଙ୍କର ଉଜ୍ଜ୍ୱଳ ରକ୍ତବର୍ଣ୍ଣର ଡେଣା ଓ ଡେଣାକଡ଼ରେ ଥିବା କୃଷ୍ଣବର୍ଣ୍ଣ ପରିସ୍ଫୁଟ ହୁଏ ଏବଂ ଏ ମନୋରମ ଦୃଶ୍ୟ ଯେ ଥରେ ଦେଖିଛି ସେ କେବେ ତାହା ଭୁଲି ପାରିବ ନାହିଁ । ଏ ପକ୍ଷୀମାନେ ଦଳ ଦଳ ହୋଇ ଯୋର, ସମୁଦ୍ରତୀର ନିକଟରେ ଥିବା ଅଗଭୀର ହ୍ରଦ ଓ କିଆରିଆ କାଦୁଆ ସ୍ଥାନରେ ବାସକରନ୍ତି । ଏଣ୍ଡା ପକ୍ଷୀ ଭାରତ, ପାକିସ୍ଥାନ, ବାଙ୍ଗଲାଦେଶ ଓ ସିଂହଳରେ ଉଣା ଅଧିକେ ସ୍ଥାୟୀ ଅଧିବାସୀ; ମାତ୍ର ଏମାନଙ୍କର ବାସ ବିକ୍ଷିପ୍ତ ଓ ଏମାନେ ସ୍ଥାନୀୟ ଭାବେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପରିବ୍ରଜନ କରି ଦେଶାନ୍ତର ବାସ ମଧ୍ୟ କରିଥାନ୍ତି (locally migratory) । ସେମାନେ କ୍ଷୁଦ୍ର କ୍ଷୁଦ୍ର ଦଳ ବା ବଡ଼ ପଲରେ ଦେଖାଯାନ୍ତି । ଗୋଟିଏ ଗୋଟିଏ ପଲରେ ହଜାର ହଜାର ସଂଖ୍ୟାରେ ପକ୍ଷୀ ଥାନ୍ତି । ଅଗଭୀର ଜଳ ଭିତରକୁ ଚାଲି ଚାଲି ଯାଇ ସେମାନେ ଖାଦ୍ୟ ଆହରଣ କରନ୍ତି । ଏତେବେଳେ ବେକ ତଳକୁ ବାଙ୍କି ରହିଥାଏ ଓ ମୁଣ୍ଡ ସମ୍ପୂର୍ଣ୍ଣରୂପେ ପାଣି ଭିତରେ ବୁଡ଼ିରହେ । ତା'ର ସ୍ୱତନ୍ତ୍ର ପ୍ରକାର ଥଣ୍ଟ ଓଲଟିରହିବା ଫଳରେ ଉପର ଫାଳର ମଧ୍ୟରେଖାରେ ଲମ୍ବ ଭାବରେ ଥିବା ଚୂଡ଼ା ଭୂମିତଳେ ପ୍ରାୟ ଘୋଷାରି ହୁଏ ଏବଂ ତଦ୍ଦ୍ୱାରା ତଳର କାଦୁଅ ଆଲୋଡ଼ିତ ହୁଏ । ଏ ଅବସ୍ଥାରେ ଥଣ୍ଟ ଉପର ଫାଳ ଏକ କରତ୍ରୁଲି ପରି କାର୍ଯ୍ୟ କରେ ଓ ସେଥିରେ ପଙ୍କ ସଞ୍ଚିତ ହୁଏ । ମାଂସଳ ଜିଭ ଚୂଷକ (plunger) ପରି କାର୍ଯ୍ୟ କରିବା ଫଳରେ ଥଣ୍ଟଧାରରେ ପାନିଆ ପରି ରହିଥିବା

ଝାଲର ବା ଦଳକ (lamella) ବାଟେ ପାଣି ବାହାରିଯାଏ ଏବଂ କ୍ଷୁଦ୍ର କ୍ଷୁଦ୍ର ଖାଦ୍ୟ-ପଦାର୍ଥ 'କରଚଲ୍' ଭିତରେ ରହିଯାଏ । ଆବଶ୍ୟକ ହେଲେ ଏଗ୍ରି ପକ୍ଷୀ ଅନାୟାସରେ ପହଁରିପାରେ । ଗଭୀର ଜଳରେ ଖାଦ୍ୟ ସଂଗ୍ରହ କରୁଥିବାବେଳେ ପାତିହଂସ ପରି ସେମାନଙ୍କର କେବଳ ଲାଞ୍ଜ ପାଣି ଉପରକୁ ବାହାରି ରହିଥାଏ । କ୍ଷୁଦ୍ର କ୍ଷୁଦ୍ର କ୍ରାଷ୍ଟେସିଆ (Crustacea) ଜାତୀୟ ପ୍ରାଣୀ; ଯଥା—କଙ୍କଡ଼ା, ଚିଙ୍ଗୁଡ଼ି ଇତ୍ୟାଦି, କୀଟର ଲାର୍ଭା ଜିଆ ଓ କୃମି, ଜଳାଭୂମି ଗଛର ମଞ୍ଜି ଓ ପଙ୍କରସରେ ଥିବା ଅନ୍ୟ ଜୈବିକ ପଦାର୍ଥ ଏଗ୍ରି ପକ୍ଷୀର ଆହାର । ଏଗ୍ରି ପକ୍ଷୀ ବେଶ ଦ୍ରୁତ ପକ୍ଷ ସଞ୍ଚାଳନ କରି ଉଡ଼ନ୍ତି । ଏତେବେଳେ ହଂସମାନଙ୍କ ପରି ସେମାନେ ଇଂରାଜୀ 'ଭି' (V) ଅକ୍ଷର ବା ଦୀର୍ଘ ତରଙ୍ଗାୟିତ ବିକର୍ଣ୍ଣ ରେଖା (wavy diagonal ribbons) ଗଠନ କରନ୍ତି । କ୍ଷୀଣ ବେକ ଆଗକୁ ପ୍ରସାରିତ ହୋଇ ରହେ ଓ ଦୀର୍ଘ ଲାଲ ଗୋଡ଼ ପଛକୁ ବଢ଼ି ରହିଥାଏ । ଏଗ୍ରି ମୋଟଉପରେ ଗୋଟିଏ ଅତି ନୀରବ ପକ୍ଷୀ । ସେମାନେ ବେଳେ ବେଳେ ହଂସ ପରି ଶବ୍ଦ କରନ୍ତି । ଏହି ଶବ୍ଦ କେତେକ ପରିମାଣରେ ମଟରର ହର୍ଣ୍ଣ ପରି । ଦଳେ ଏଗ୍ରି ଖାଇଲାବେଳେ ଏକପ୍ରକାର ଭଡ଼ ଭଡ଼ ଶବ୍ଦ ହୁଏ । ଭାରତରେ ଏଗ୍ରିମାନଙ୍କର ଏକମାତ୍ର ପ୍ରଜନନ ସ୍ଥାନ ହେଲା କଚ୍ଛର ରାନ୍ ଅଞ୍ଚଳ (Great Rann of Kutch) । ଏଠାରେ ଅକ୍ଟୋବରଠାରୁ ମାର୍ଚ୍ଚ ମାସ ମଧ୍ୟରେ ପ୍ରଜନନ ପାଇଁ ଜଳର ଅବସ୍ଥା ଉପଯୋଗୀ ହୋଇଥିଲା ବେଳେ ବହୁ ସଂଖ୍ୟାରେ ଏଗ୍ରି ଆସି ଜମାହୁଅନ୍ତି । ଏତେବେଳେ ସେମାନଙ୍କର ସଂଖ୍ୟା ପାଞ୍ଚ ଲକ୍ଷରୁ ଦଶ ଲକ୍ଷ ଯାଏ ହୋଇଯାଏ । କଚ୍ଛର ଏହି ଏଗ୍ରି ପ୍ରଜନନ କ୍ଷେତ୍ର 'ଏଗ୍ରି ନଗର' (Flamingo city) ନାମରେ ଆଖ୍ୟାତ । ପୃଥିବୀରେ ସମ୍ଭବତଃ ଏହା ହିଁ ସବୁଠାରୁ ବଡ଼ 'ପକ୍ଷୀ ନଗର' । କାଦୁଆ ମାଟିକୁ ଗୁଣ୍ଡି ତା' ଉପରେ ଅଧା-ତରଳ ପଙ୍କ ଲେପି ଏମାନେ ଭୂମିରେ ଗଦା (ଖ୍ରୋଟ କୁନ୍ଦ) ଆକାରର ବସା ତିଆରି କରନ୍ତି । ସୂର୍ଯ୍ୟତାପରେ ଏହା ଶୁଖି ଟାଣ ହୋଇଯାଏ । ଭୂମିଠାରୁ ବସାର ଉଚ୍ଚତା 30 ସେଣ୍ଟିମିଟର ଯାଏ ହୋଇଥାଏ । ମାଈ ପକ୍ଷୀ ଗଦା ଉପରେ ଚଟାଳିଆ ଖାଲୁଆ ସ୍ଥାନରେ ଦୁଇଟି ବା ଗୋଟିଏ ଅଣ୍ଡା ଦିଏ । ତା'ପରେ ସେ ଗୋଡ଼ ଭାଙ୍ଗି ଅଣ୍ଡା ଉପରେ ବସି ଉଷୁମାଏ । ପୁରୁଣା ବହିମାନଙ୍କରେ ଲେଖାଅଛି, ମାଈ ଏଗ୍ରି ଠିଆ ହୋଇ ଗଦା ଉପରେ ଥିବା ଅଣ୍ଡାକୁ ଉଷୁମାଏ । ଏହି ବର୍ଣ୍ଣନା କାଳ୍ପନିକ ।

ବର୍ଗ **ଆନ୍‌ସେରିଫରମିସ** (Anseriformes)—ପକ୍ଷୀ ଶିକାର ଓ ପକ୍ଷୀମାଂସ ଦୃଷ୍ଟିରୁ କେତୋଟି ଲୋକପ୍ରିୟ ପକ୍ଷୀ ଆନସେରିଫରମିସି ବର୍ଗ ଅନ୍ତର୍ଭୁକ୍ତ । ରାଜହଂସ

(swan), ହଂସ (geese) ଓ ପାତହଂସ (ducks) ତନ୍ମଧ୍ୟ ଅନ୍ତର୍ଗତ । ପଣ୍ଡା ହଂସ, ଜଳଗୃତକ (Teals) ଆଦି ପକ୍ଷୀ କ୍ଷୁଦ୍ର ପାତହଂସ (small ducks) ମାତ୍ର; ଠିକ୍ ଯେପରି କପୋତ (doves), ସାନ ପାରା (pigeons) ଅଟନ୍ତି; କେବଳ ନାମରେ ଯାହା ଫରକ ।

ଯେଉଁ ବର୍ଷ ଶୀତ ପ୍ରବଳ ହୁଏ, ସେ ବର୍ଷମାନଙ୍କରେ ସୁମେରୁ ଅଞ୍ଚଳୀୟ ୟୁରୋପ ଓ ଏସିଆରୁ ଅନିର୍ଦ୍ଦିଷ୍ଟ ଭାବେ କେବେ କେବେ ଆମ ଦେଶକୁ ରାଜହଂସ ଉଡ଼ିଆସନ୍ତି । ଏଣୁ ସେମାନଙ୍କ ବିଷୟ ଏଠାରେ ବିଚାର କରାଯାଉ ନାହିଁ । ଯେଉଁ ସାମାନ୍ୟ କେତୋଟି ଜାତିର ହଂସ (geese) ଆମ ଦେଶକୁ ଶୀତକାଳରେ ଆସନ୍ତି, ତନ୍ମଧ୍ୟରେ ସବୁଠାରୁ ସାଧାରଣ ଓ ନିୟମିତ ହେଲା ଖର ହଂସ (ବର୍ଣ୍ଣଚିତ୍ର 15) । ଏହାକୁ ଇଂରାଜୀରେ 'ଗାରମୁଣ୍ଡିଆ ହଂସ' (Barheaded goose) କହନ୍ତି । ବୈଜ୍ଞାନିକ ନାମ 'ଆନ୍‌ସେର ଇଣ୍ଡିକାସ' (Anser indicus) । ହିନ୍ଦୀ ନାମ ହନ୍‌ସ୍, ସଓ୍ୟାନ, ବିରଓ୍ୱା । ଓଡ଼ିଶାର କେତେକ ଅଞ୍ଚଳରେ ଏହାକୁ 'କାଜ' ବୋଲି ମଧ୍ୟ କହନ୍ତି । ଏହାର ଆକାର ଗୃହପାଳିତ ହଂସର ଆକାର ପରି । ବର୍ଣ୍ଣ ମୁଖ୍ୟତଃ ଧୂସର, ବାଦାମୀ ଏବଂ ଧଳା । ଏହାକୁ ଚିହ୍ନିବାର ଲକ୍ଷଣଗୁଡ଼ିକ ହେଲା, ଧଳା ମୁଣ୍ଡ, ହଳଦିଆ ଥଣ୍ଟ ଓ ଗ୍ରୀବାର ପଶ୍ଚାତ୍ ଭାଗରେ ଦୁଇଟି ଓସାରିଆ କଳାକା ଚିହ୍ନ । ଶେଷୋକ୍ତ ଚିହ୍ନ ଏହାର ବିଶେଷ ଲକ୍ଷଣ । ନଦୀ, ଯୋର ଏବଂ କଅଁଳ ଗହମ ଓ ବୁଟ କ୍ଷେତ ନିକଟରେ ଏମାନେ ଦଳ ଦଳ ହୋଇ ଦେଖାଯାନ୍ତି । ଗୋଟିଏ ଗୋଟିଏ ଦଳରେ 15ରୁ 20ଟି ଯାଏ କାଜ ଥାନ୍ତି । କଅଁଳ ଗହମ ଓ ବୁଟ ଖାଇବାକୁ ବେଳେ ବେଳେ ଏମାନେ ବହୁସଂଖ୍ୟାରେ ଆସି କ୍ଷେତରେ ପଡ଼ନ୍ତି । ଚାଷୀଆମାନେ କ୍ରମାଗତ ଏମାନଙ୍କ ପିଚ୍ଛା ଧରୁଥିବାରୁ ଖର ହଂସମାନେ ମୁଖ୍ୟତଃ ଗୋଧୂଳି ବା ରାତରେ ଚରିବାକୁ ଆସନ୍ତି । ସୂର୍ଯ୍ୟାସ୍ତ ବେଳକୁ ଦଳ ଦଳ ହୋଇ କାଜ ଇଂରାଜୀ ଭି (V) ଅକ୍ଷର ପରି ବା ତିର୍ଯ୍ୟକ ରେଖାରେ ଶ୍ରେଣୀ ଗଠନ କରି ଅଭ୍ୟସ୍ତ ଚରଣଭୂମି ଆଡ଼କୁ ଉଡ଼ିଯାଉଥିବାର ଦେଖାଯାନ୍ତି । ଅନ୍ୟ ସମସ୍ତ ଜାତି ହଂସ ପରି ଏମାନେ କ୍ଷେତରେ ବୁଲି ବୁଲି ଚରନ୍ତି ବା ଅଗଭୀର ପାଣିରେ ମୁଣ୍ଡ ତଳକୁ ବୁଡ଼ାଇ ଲାଞ୍ଜ ପାଖ ଉପରକୁ ଟେକି ଖାଦ୍ୟ ସଂଗ୍ରହ କରନ୍ତି । ଏମାନଙ୍କର ଖାଦ୍ୟ ମୁଖ୍ୟତଃ ଶୀତଦିନିଆ ଫସଲର ସବୁଜ କାଣ୍ଡ, ଶସ୍ୟ, ଜଳଜ ଉଦ୍ଭିଦର କନ୍ଦ, ଇତ୍ୟାଦି ।

ଖରହଂସ ବିଭିନ୍ନ ତାଳରେ ସଙ୍ଗୀତମୟ 'ଅଙ୍ଗ ଅଙ୍ଗ' ଶବ୍ଦ କରନ୍ତି । ଛପି ରହିଥିବା ଶିକାରୀର ମୁଣ୍ଡ ଉପରେ ଦେଇ ଯାଉଥିବା ଏହି ଶବ୍ଦ ତା'ର ମନରେ ସ୍ଫୂର୍ତ୍ତି

ଆଣିଦିଏ ଓ ତା'ର ସ୍ନାୟୁକୁ ଉତ୍ତେଜିତ କରେ । ଖରହଂସ ସଦାସର୍ବଦା ଅତ୍ୟନ୍ତ ସତର୍କ ରହିଥାଏ । ଏଣୁ ତାକୁ ଛକି ମାରିବା ପାଇଁ ଅତ୍ୟନ୍ତ ପଟୁତା ଓ କଠିନ ପରିଶ୍ରମ ଆବଶ୍ୟକ ହୁଏ । କୌତୂହଳଜନକ କଥା ଏହି ଯେ, ବୌଦ୍ଧଧର୍ମାବଲମ୍ବୀ ଅଧିକ ପର ସ୍ଥାନରେ ଯେଉଁଠି ସେମାନଙ୍କର କେହି କିଛି କ୍ଷତି କରିବେ ନାହିଁ ବୋଲି ସେମାନେ ଜାଣିଛନ୍ତି, ସେଠାରେ ସେମାନେ ଆଶ୍ଚର୍ଯ୍ୟଜନକ ଭାବେ ଶାନ୍ତ ଓ ବିଶ୍ୱାସୀ ଏବଂ ତମସ୍ଥ ଗାଈଆଳମାନଙ୍କ କୁଡ଼ିଆ ଣି ନିକଟକୁ ନିର୍ଭୟରେ ଚାଲିଆସନ୍ତି ।

ଆମ ଦେଶରେ ଦେଖାଯାଉଥିବା ଖରହଂସମାନଙ୍କର ନିକଟତମ ପ୍ରଜନନ ଭୂମି ହେଲା ଲଦାଖ୍ । ଉଚ୍ଚଭୂମିରେ ଅବସ୍ଥିତ ହ୍ରଦ କୂଳର ଉତ୍ତମ ବାର୍ଦ୍ଧିତ ତୃଣମୟ ସ୍ଥାନରେ ସାମାନ୍ୟ ଖାଲ ତାଙ୍କର ନୀଡ଼ର କାର୍ଯ୍ୟ କରେ । ସେହି ଗ୍ରେଷ୍ଟ ଗାତର ଭିତର ପାଖରେ ବହଳିଆ କରି କୋମଳ ପର ଓ ପକ୍ଷର ଆସ୍ତରଣ ଥାଏ । ଥରକେ ସେମାନେ ତନୋଟିରୁ ଗ୍ୱରଟି ଯାଏ ଅଣ୍ଡା ଦିଅନ୍ତି । ଅଣ୍ଡା ହସ୍ତୀଦନ୍ତ ପରି ଧଳା ।

ଆଉ ଗୋଟିଏ ସାଧାରଣ ପରିବ୍ରାଜୀ ହଂସ ହେଲା କାଜ । ଏହାକୁ ଇଂରାଜୀରେ ଗ୍ରେଲଗ (Greylag) ଓ ହିନ୍ଦୀରେ କାଜ୍ ବୋଲି କହନ୍ତି । ଏହାର ବୈଜ୍ଞାନିକ ନାମ 'ଆନସେର ଆନସେର' (Anser anser) । ଆମର ସମସ୍ତ ପ୍ରକାର ଗୃହପାଳିତ ହଂସମାନଙ୍କର ଏହା ପୂର୍ବଜ (ancestor) ବୋଲି ବିଶ୍ୱାସ କରାଯାଏ । ଏହାର ଆକାର ଓ ବର୍ଣ୍ଣ ଗୃହପାଳିତ ହଂସର ବାଦାମୀ ଅବସ୍ଥା ପରି । ଏହାର ପଶ୍ଚାଦ୍‌ଭାଗ ଧୂସର ଓ ଅଣ୍ଟ ମାଂସର ବର୍ଣ୍ଣ ପରି ପାଟଳ । ଖର ହଂସ ଯୋର ଅପେକ୍ଷା ବେଶୀ ନଦୀ ପାଖରେ ଦେଖାଯାନ୍ତି । କାଜ ଠାରେ ତା'ର ବିପରୀତ ଦେଖାଯାଏ । ଏହା ନଦୀ ତୁଳନାରେ ବେଶୀ ଯୋରମାନଙ୍କରେ ଦେଖିବାକୁ ମିଳେ ।

ଭାରତରେ ଶୀତ ଋତୁରେ କୋଡ଼ିଏରୁ କିଛି ଅଧିକ ଜାତିର ବନ୍ୟ ପାତିହଂସ ସାଧାରଣତଃ ଦେଖିବାକୁ ମିଳନ୍ତି । ତନ୍ମଧ୍ୟରୁ ମାତ୍ର ପାଞ୍ଚ ବା ଛଅ ଜାତି ପକ୍ଷୀ ଏ ଦେଶର ସ୍ଥାୟୀ ବାସିନ୍ଦା ଓ ଭାରତବର୍ଷ ମଧ୍ୟରେ ପ୍ରଜନନ କରନ୍ତି । ବାକୀ ସମସ୍ତେ ପରିବ୍ରାଜୀ ଓ ମୁଖ୍ୟତଃ ସାଇବେରିଆରୁ ଆସନ୍ତି ।

ଏ ଦେଶର ସ୍ଥାୟୀ ଅଧିବାସୀ ପାତିହଂସମାନଙ୍କ ମଧ୍ୟରେ ଅତି ଉତ୍ତମ ବିସ୍ତୃତ ପକ୍ଷୀ ହେଲା ଲଦିମ ପାତିହଂସ (ବର୍ଣ୍ଣଚିତ୍ର 16 ) । ଏହାକୁ ଇଂରାଜୀରେ 'ଦାଗିଆ ଥଣ୍ଟ' (Spotbill) ଓ 'ଧୂସର ପାତିହଂସ' (Grey duck) କହନ୍ତି । ବୈଜ୍ଞାନିକ ନାମ 'ଆନାସ ପୋଏସିଲୋରିଙ୍କା' (Anas poecilorhyncha) । ଏହାର ହିନ୍ଦୀ ନାମ ଗାରମ ପାଇ ଗୁଗାଲ ଓ ଲଦିମ । ଆକାରରେ ଲଦିମ ଗୃହପାଳିତ

ପାତହଂସ ପରି ଏବଂ ପକ୍ଷର ବର୍ଣ୍ଣ, ଫିକା ଓ ଘନ ବାଦାମୀ ଚିହ୍ନକୁ କାତ ପରି ସଜାଇଲେ ଯେପରି ହେବ, ସେହିପରି । ପକ୍ଷରେ ଥିବା ଧଳା, କଳା ଓ ଧାତୁ ପରି ଚକ୍‌ଚକ୍ କରୁଥିବା ସବୁଜବର୍ଣ୍ଣ—ଏପରି ତ୍ରିରଙ୍ଗ ଶଳାକା-ଚିହ୍ନଦ୍ୱାରା ଲାଲ୍‌ଦମ ପାତହଂସକୁ ଚିହ୍ନଟ କରିହେବ । ତା' ସାଙ୍ଗକୁ ତା'ର ଗୋଡ଼ ଉଜ୍ଜ୍ୱଳ କମଳାଲେମ୍ବୁ ପରି ଲାଲ ଏବଂ ଥଣ୍ଟର ଅଗ୍ରଭାଗ ହଳଦିଆ ଓ ପଶ୍ଚାତ୍‌ଭାଗ କଳା । ଥଣ୍ଟମୂଳରେ ଅର୍ଥାତ୍ ମସ୍ତକର ଅଗ୍ରଭାଗରେ ଦୁଇପଟେ ଦୁଇଟି କମଳାଲେମ୍ବୁ ପରି ଲାଲ ଚିହ୍ନ ଥାଏ । ଲାଲ୍‌ଦମ ପାତହଂସ ଯୋଡ଼ି ଯୋଡ଼ି ହୋଇ ଓ ଅଳ୍ପ ସଂଖ୍ୟାରେ ପଂକ୍ତି ପଂକ୍ତି ହୋଇ ନଳବଣଯୁକ୍ତ ଅଗଭୀର ଯୋରମାନଙ୍କରେ ଦେଖାଯାନ୍ତି; ମାତ୍ର କୌଣସିଠାରେ ହେଲେ ଆମ ଦେଶକୁ ଶୀତକାଳରେ ଆସୁଥିବା ଅନେକ ପରିବ୍ରାଜୀ ପକ୍ଷୀମାନଙ୍କ ପରି ପ୍ରଚୁର ସଂଖ୍ୟାରେ ମିଳନ୍ତି ନାହିଁ । ଯେଉଁ ପାତହଂସସବୁ ଉପରେ ଉପରେ ଚରନ୍ତି, ଲାଲ୍‌ଦମ ସେହି ଦଳୀୟ । ବେଶି ଭାଗ ଖାଦ୍ୟ ଏମାନେ ଜଳାଭୂମି ଉପରେ ବା ଧାନକ୍ଷେତରେ ଚରିବୁଲି କରି ଥଣ୍ଟ ଗେଞ୍ଜି ସଂଗ୍ରହ କରନ୍ତି । ଅଗଭୀର ଜଳରେ ପଙ୍କରେ ଥଣ୍ଟ ମାରିବା ବେଳେ ପାଣି ଉପରକୁ ପୁଚ୍ଛ ମଜାରେ ବାହାରି ରହିଥାଏ ଓ ସିଧାଭାବରେ ଭାରସାମ୍ୟ ରକ୍ଷାକରିବା ପାଇଁ ଗୋଡ଼ ଦୁଇଟି ଚୁଞ୍ଚାଡ଼ିଲି ପରି ଦୋହଲୁଥାଏ । ଲାଲ୍‌ଦମ ପାତହଂସ ମୁଖ୍ୟତଃ ଉଦ୍ଭିଜ୍ଜ ଖାଦ୍ୟ ଖାଏ; ଯଥା—ଜଳଜ ଉଦ୍ଭିଦର କାଣ୍ଡ, ଜଳା ବା ବିଲ ଆଦିରେ ଜାତ ହେଉଥିବା ଘାସବତ୍ ଉଦ୍ଭିଦର ମଞ୍ଜି, ଧାନ୍ୟ ବୀଜ । ତା' ସାଙ୍ଗକୁ ସେମାନେ କମ୍ବୋଜ (mollusc), ଜଳବାସୀ କୀଟ ଏବଂ କୃମି, ଜିଆ ଆଦି ଖାଇଥାନ୍ତି । ଲାଲ୍‌ଦମ ଏକ ଟାଣୁଆ ଉଡ଼ାଳି । ପକ୍ଷୀ-ଶିକାରୀମାନଙ୍କ ମଧ୍ୟରେ ଏହା ଦୁଇଟି କାରଣରୁ ପ୍ରିୟ—ଏକରେ ଟାଣୁଆ ଉଡ଼ାଳି ହୋଇଥିବାରୁ ତାକୁ ଲାଛିବା ସହଜ ନୁହେଁ । ଦ୍ୱିତୀୟରେ ଏହାର ମାଂସ ସୁସ୍ୱାଦୁ । ସାଧାରଣତଃ ଲାଲ୍‌ଦମ ପାତହଂସ ଏକ ଅତ୍ୟନ୍ତ ନୀରବ ପକ୍ଷୀ । ଅଣ୍ଡିରି ଲାଲ୍‌ଦମ ପାତହଂସ (drake)ର ସ୍ୱର କର୍କଶ ଓ କଷ୍ଟରେ ଖର ନିଃଶ୍ୱାସ ଛାଡ଼ିବାପରି ସାଁ-ସାଁ ଶୁଣାଯାଏ । ମାଈ ଲାଲ୍‌ଦମ ପାତହଂସର ସ୍ୱର ଜୋର ହଂସରବ ପରି । ହଠାତ୍ ଭୟଭୀତ ହେଲେ ସେମାନେ ଏଭଳି ଶବ୍ଦ କରିଥାନ୍ତି । ଜଳର ଅନୁକୂଳ ସୁବିଧା ଥିଲେ, ଲାଲ୍‌ଦମ ପାତହଂସ ଋଣୀ ଅଧିକ ବର୍ଷସାରା ପ୍ରଜନନ କରନ୍ତି । ସେମାନଙ୍କର ନୀଡ଼ ପୋଖରୀ ବା ଜଳାଭୂମି ନିକଟରେ ତୃଣଗୁଚ୍ଛ ଭିତରେ ଲୁକ୍‌କାୟିତ ରହିଥାଏ । ନୀଡ଼କୁ ଘାସ ଓ ଦଳର ଏକ ଗଦି କୁହାଯାଇପାରେ । ବେଳେ-ବେଳେ ତା'ର ଭିତର ପାଖରେ କୋମଳ ପର ଓ ପକ୍ଷ ଦିଆଯାଇଥାଏ । ଥରକେ ମାଈ

ଲଦମ ପାତିହଂସ ସାତଟିରୁ ନଅଟି ଓ ବେଳେବେଳେ ବାରଟି ଯାଏ ଅଣ୍ଡା ଦିଏ । ଅଣ୍ଡା ଧୂସରିଆ ଈଷତ୍ ପୀତାଭ ବା ସବୁଜିଆ ଧଳା । ତା' ଉପରେ କୌଣସି ଚିହ୍ନ ନ ଥାଏ ।

**ହଂସରାଳ** (ବର୍ଣ୍ଣଚିତ୍ର 17)—ଏହାକୁ ଓଡ଼ିଶାର କେତେକ ସ୍ଥାନରେ ସଳଖ ବୋଲି ମଧ୍ୟ କହନ୍ତି । ଇଂରାଜୀ ନାମ 'କ୍ଷୁଦ୍ର ସୁସୁରିଆ ବାଲି ହଂସ' (Lesser Whistling Teal) । ବୈଜ୍ଞାନିକ ନାମ 'ଡେନ୍ଡ୍ରୋସିଗ୍ନା ଜାଭାନିକା' (Dendrocygna Javanica) । ହିନ୍ଦୀ ନାମ—ସିଲ୍ହି, ସିଲକାହି । ଏହା ଲଦମ ପାତିହଂସଠାରୁ କ୍ଷୁଦ୍ର । ବର୍ଣ୍ଣ ତୁଳନା ଅଧିକ ଏକାଭାବେ ବାଦାମୀ । ଆକାର ଓ ବର୍ଣ୍ଣ ଯୋଗୁଁ ହଂସରାଳକୁ ଅନ୍ୟ କୌଣସି ପାତିହଂସ ବୋଲି ଚିହ୍ନଟ କରିବାରେ ଭ୍ରମ ହେବାର ସମ୍ଭାବନା ନାହିଁ । ଆକାଶରେ ଏମାନଙ୍କର ଗତି ରେଳଗାଡ଼ିର ଗତି ପରି ଓ ସେ ସମୟରେ ଏମାନେ ଏକପ୍ରକାର କର୍କଶ ସୁସୁର ଶବ୍ଦ କରନ୍ତି । ଏ ପ୍ରକାର ଉଡ଼ିବା ଓ ଶବ୍ଦ କରିବା ସ୍ୱତନ୍ତ୍ର ହୋଇଥିବାରୁ ତଦ୍ଦ୍ୱାରା ମଧ୍ୟ ସେମାନଙ୍କୁ ଚିହ୍ନଟ କରିହେବ । ହଂସରାଳ ଦଳ ଦଳ ହୋଇ ଦେଖାଯାନ୍ତି । ପ୍ରତି ଦଳରେ 10ରୁ 15 ଯାଏ ପକ୍ଷୀ ଥାନ୍ତି । ନଳବଣ ଥିବା ଯୋର ଓ ଭାସୁଥିବା ଉଦ୍ଭିଦରେ ଯେଉଁ ପୋଖରୀ ଗୁଡ଼ିହୋଇ-ଯାଇଥାଏ, ସେପରି ସ୍ଥାନରେ ହଂସରାଳ ଦେଖାଯାନ୍ତି । ଅନେକ ସମୟରେ ଜଳମଗ୍ନ ଧାନବିଲରେ ଆସି ମଧ୍ୟ ପଡ଼ନ୍ତି । ଯେଉଁଠି ଆଖପାଖରେ ଗଛ ଅଛି, ସେପରି ସ୍ଥାନକୁ ଏହା ବେଶି ପସନ୍ଦ କରେ । ଏହାଦ୍ୱାରା ଇଚ୍ଛାନୁସାରେ ବୃକ୍ଷଡ଼ାଳରେ ବସିବା ପାଇଁ ତାକୁ ସୁବିଧା ହୁଏ । ଏହି କାରଣରୁ ଇଂରାଜୀରେ ଏହାର ଅନ୍ୟ ନାମ 'ହଳଦିଆ-ବାଦାମୀ ବୃକ୍ଷ ପାତିହଂସ' (Fulvous Tree Duck) । କୌଣସି ଅଞ୍ଚଳରେ ଅନାବୃଷ୍ଟି ହେଲେ ଏମାନେ ପାଣି ପାଇଁ ଏଠୁ ସେଠିକି ସେଠୁ ଏଠିକି ବେଶ୍ ଯିବା ଆସିବା କରନ୍ତି । ଏମାନଙ୍କର ଉଡ଼ିବା ନିସ୍ତେଜ ଓ ଉଡ଼ିଲାବେଳେ ବଡ଼ ବେଶି ପକ୍ଷ ଦୋହଲନ୍ତି । ହଂସରାଳର ଉଡ଼ିବା ଦେଖିଲେ ଦଳଫିଙ୍ଗି (Jacana)ର ଉଡ଼ିବା ସ୍ମରଣ ହୁଏ । ଉଡ଼ିଲାବେଳେ ଏମାନେ ଅବିରାମ ଏକପ୍ରକାର କର୍କଶ ଖରନିଃଶ୍ୱାସୀ ସୁସୁର ମାରନ୍ତି । ତାହା 'ସି-ସିକ୍, ସି-ସିକ୍' ପରି ଶୁଣାଯାଏ । ଏହି ଶବ୍ଦ ଅନେକ ପରିମାଣରେ ବଡ଼ ଖଞ୍ଜନ (Large Pied Wagtail) ପକ୍ଷୀର ଶବ୍ଦ ପରି । ହଂସରାଳ ଭୂମି ଉପରେ ଉତ୍ତମରୂପେ ଚାଲିପାରେ ଓ ଭଲ ବୁଡ଼ାଳି । ସେମାନଙ୍କର ପ୍ରଧାନ ଖାଦ୍ୟ ହେଲା ଗେଣ୍ଡା, କୃମି, କଙ୍କଡ଼ା, ବେଙ୍ଗ ଓ ମାଛ । ତା' ସାଙ୍ଗକୁ ସେମାନେ ଜଳଜ ଉଦ୍ଭିଦର ସବୁଜ କାଣ୍ଡ ଓ ଧାନଶସ୍ୟ ମଧ୍ୟ ଖାନ୍ତି । ହଂସରାଳ ଭୂମିରେ ଓ ବୃକ୍ଷଡ଼ାଳରେ ଉଭୟତ୍ର ନୀଡ଼ ରଚନା

କରିଥାଏ । ଭୂମି ଉପରେ ଜଳ କଡ଼କୁ କଣ୍ଟାମୟ ବୁଦାଝାଟି ଭିତରେ ପତ୍ର, ନଳ ଓ ଘାସରେ ଗଦା ପରି ଏକ ନୀଡ଼ ତିଆରି କରିଥାଏ । ଗଛ ଉପରେ ହେଲେ ବଡ଼ ବଡ଼ ଦ୍ୱିଶାଖାର ମଝି ସ୍ଥାନରେ କାଠିରେ ନୀଡ଼ ରଚିତ ହୁଏ । ବଡ଼ ବଡ଼ ବୃକ୍ଷର କୋରଡ଼ରେ ମଧ୍ୟ ସେ ଅଣ୍ଡା ଦେଇଥାଏ । ଗଛ ସବୁ ପାଣିଠାରୁ ବେଶ୍ କିଛି ଦୂରରେ ମଧ୍ୟ ରହିଥାଏ । ବେଳେବେଳେ ସେମାନେ ପୁରୁଣା ଚିଲ୍ ଓ କାଉ ବସାରେ ମଧ୍ୟ ଅଣ୍ଡା ଦିଅନ୍ତି । ଥରକେ ସାତଟିରୁ ବାରଟି ଯାଏ ଅଣ୍ଡା ଦିଅନ୍ତି । ସାଧାରଣତଃ ଦଶଟି ଅଣ୍ଡା ଦେଇଥାନ୍ତି । ସଦ୍ୟ ଦିଆଯାଇଥିବା ଅଣ୍ଡା ଦୁଗ୍ଧପରି ଶୁଭ୍ର । ଉଷୁମ ହେଉଥିଲାବେଳେ ଅଣ୍ଡାର ବର୍ଣ୍ଣ ବାଦାମୀ ହୋଇଯାଏ ।

**ବଡ଼ ହଂସରାଳ** (Large Whistling Teal)—ଅଳ୍ପ କାଉଏ ବଡ଼ ହଂସରାଳ ଅଳ୍ପ ପରିମାଣରେ ଆମ ଦେଶରେ ସ୍ଥାୟୀ ବାସିନ୍ଦାଭାବେ ଦେଖାଯାନ୍ତି । ଏମାନଙ୍କର ବୈଜ୍ଞାନିକ ନାମ 'ଡେନ୍‌ଡ୍ରୋସିଗ୍‌ନା ବାଇକଲର' (Denderocygna bicolor) । ଏମାନେ ସାଧାରଣ ହଂସରାଳଠାରୁ ଆକାରରେ ଟିକିଏ ବଡ଼ । ହଂସରାଳର ପୁଚ୍ଛ ଅଂଶ ବାଦାମୀ ହୋଇଥିଲାବେଳେ ବଡ଼ ହଂସରାଳର ପୁଚ୍ଛ ଧଳା ।

**ଅର୍କି** (Cotton Teal) (ବର୍ଣ୍ଣଚିତ୍ର 18) – ଆମ ଦେଶର ବାସିନ୍ଦା ପାତିହଂସ-ମାନଙ୍କ ମଧ୍ୟରେ ଅର୍କି କ୍ଷୁଦ୍ରତମ । ସ୍ଥଳବିଶେଷରେ ଆମ ଓଡ଼ିଶାରେ ଏହାକୁ ଜଳ-ଗୃଡକ ଓ କାଜ ବୋଲି ମଧ୍ୟ କହନ୍ତି । ଏହାର ବୈଜ୍ଞାନିକ ନାମ 'ନେଟ୍ଟାପାସ କୋରୋମନ୍‌ଡେଲିଆନାସ' (Nettapus coromandelianus) । ହିନ୍ଦୀ ନାମ—ଗିରିଆ, ଗୁରଗୁରା ଓ ସୋନଆ । ଏହାର ଆକାର ଗ୍ରାମ୍ୟ ମାଈ କୁକୁଡ଼ା ପରି । ପକ୍ଷର ବେଶୀ ଭାଗ ଧଳା । ଅଣ୍ଡିରା ଅର୍କିର ପୃଷ୍ଠଭାଗ ଚକ୍‌କଣ କଳା; ମୁଣ୍ଡ, ବେକ ଓ ପେଟ ପାଖ ଧଳା । ବେକରେ ଅଣଓସାରିଆ କଳା ରଙ୍ଗର ବଳା ପରି ଚିହ୍ନ ଥାଏ ଓ ପକ୍ଷରେ ଧଳା ରଙ୍ଗର ଶଳାକା ଚିହ୍ନ ଥାଏ । ଉଡ଼ିଲାବେଳେ ପକ୍ଷର ଶଳାକା ଚିହ୍ନ ସ୍ପଷ୍ଟ ଦେଖାଯାଏ । ମାଈ ଅର୍କି ନିଷ୍ପ୍ରଭ ବାଦାମୀ ଓ ତା' ବେକରେ କଳା ବଳା-ଚିହ୍ନ ନଥାଏ କି ପକ୍ଷରେ ଧଳା ଶଳାକା ଚିହ୍ନ ନଥାଏ । ପ୍ରଜନନ ଋତୁ ଭିନ୍ନ ଅନ୍ୟ ଋତୁରେ ଅଣ୍ଡିରା ଅର୍କି ଦେଖିବାକୁ ମାଈ ଅର୍କି ପରି; କେବଳ ତଫାତ୍ ଭିତରେ ଅଣ୍ଡିରା ପକ୍ଷୀର ଧଳା ପକ୍ଷଶଳାକା ରହିଥାଏ । ଆମର ସ୍ଥାୟୀ ଅଧିବାସୀ ପାତିହଂସମାନଙ୍କ ମଧ୍ୟରେ ଅର୍କି କେବଳ ଯେ କ୍ଷୁଦ୍ରତମ ତାହା ନୁହେଁ, ପାତିହଂସମାନଙ୍କ ମଧ୍ୟରେ ଏହାର ବିସ୍ତୃତି ସବୁଠାରୁ ବେଶୀ । ଲଦମ ପାତହଂସ ପରି ଅର୍କି ବହୁସ୍ଥାନରେ ଦେଖିବାକୁ ମିଳେ । ଏମାନେ ଦଳ ଦଳ ହୋଇ ରହନ୍ତି । ଗୋଟିଏ ଦଳରେ 5ରୁ 15 ଯାଏ ବା ଅଧିକ

ଅଂକ୍ ଥାନ୍ତି । 50 ବା ତତୋଽଧିକ ପକ୍ଷୀ ଥିବା ଅଂକଦଳ ମଧ୍ୟ ବେଳେବେଳେ ଦେଖିବାକୁ ମିଳନ୍ତି । ଗାଁ ପୋଖରୀ, ଗୁଣ୍ଡାକଢ଼ ଖାଲ, ବର୍ଷାଜଳଭରା ଖାତ ଅବା ଜଳ-ପ୍ଲାବିତ ଧାନବିଲ ହେଉ, ସମସ୍ତ ପ୍ରକାର ଆବଦ୍ଧ ଜଳାଶୟରେ ଏମାନେ ମିଳନ୍ତି । କେବଳ ସେଥିରେ ନଳବଣ ବା ଭାସମାନ ଉଦ୍ଭିଦ ଭରା ଥିଲେ ହେଲା । ଉତ୍ପୀଡ଼ନର ଭୟ ନ ଥିଲେ ଏମାନେ ନିଶ୍ଚିନ୍ତ ଓ ବିଶ୍ୱାସୀ । ଗାଁ ପୋଖରୀମାନଙ୍କରେ ଲୋକେ ଦୈନନ୍ଦିନ ଘଷାମଜାରେ ବ୍ୟସ୍ତ ଥିଲାବେଳେ ଅଂକ ମାତ୍ର କେତେ ସେଣ୍ଟିମିଟର ଦୂରରେ ନିର୍ଭୟରେ ପହଁରୁଥାଏ; ନଚେତ୍ ଖାଦ୍ୟ ସଂଗ୍ରହରେ ବ୍ୟସ୍ତ ଥାଏ । ସେମାନଙ୍କର ଖାଦ୍ୟ ହେଲା—ନବପଲ୍ଲବ, ଶସ୍ୟ, ପୋକ, ଗେଣ୍ଡା ଇତ୍ୟାଦି । ଉଡ଼ିଲାବେଳେ ଏମାନେ ବେଶ୍ ବେଗବାନ ଓ ଚଞ୍ଚଳ । ପର ଗୁଡ଼ିଲାବେଳେ ଏମାନେ ଉଡ଼ି ପାରନ୍ତି ନାହିଁ । ସେତେବେଳେ ଧରିବାକୁ ଚେଷ୍ଟା କଲେ ଅଂକମାନେ ପାଣିରେ ବୁଡ଼ନ ଦେଇ ଖସିଯାନ୍ତି । ଉଡ଼ିଲାବେଳେ ଏକପ୍ରକାର କକ୍‌କକ୍ ଶବ୍ଦ କରନ୍ତି । ମାଈକୁକୁଡ଼ା ତା' ଛୁଆଙ୍କୁ ଡାକିବା ପାଇଁ ଯେଉଁ ଶବ୍ଦ କରେ ଏ ଶବ୍ଦ, କେତେକ ପରିମାଣରେ ସେହିପରି । ଏହି ଶବ୍ଦ ଭିନ୍ନ ଅଂକମାନେ ଆଉ କୌଣସି ପ୍ରକାର ଶବ୍ଦ କରନ୍ତି ନାହିଁ । ପାଣିଭିତରେ ବା ପାଣିପାଖରେ ଥିବା ଗଛ କୋରଡ଼ରେ ଏମାନେ ଅଣ୍ଡା ଦିଅନ୍ତି । ତଳୁ 2ଠାରୁ 10 ମିଟର ଉଚ୍ଚତାରେ ବସା ରହିଥାଏ । ଥରକେ ଛଅଟିରୁ ବାରଟିଯାଏ ହାତୀଦାନ୍ତ ପରି ଶୁଭ୍ର ଅଣ୍ଡା ଦିଅନ୍ତି । ଅଣ୍ଡା ଉପରେ କୌଣସି ଚିହ୍ନ ନ ଥାଏ । କାହାରି କାହାରି ଧାରଣା ଯେ ଅଂକ ପିତାମାତା ତାଙ୍କର କୋମଳ ପକ୍ଷାବୃତ ଶାବକମାନଙ୍କୁ ପାଣିକୁ ବୋହିନଅନ୍ତି । ଏହା ଠିକ୍ ନୁହେଁ । ପକ୍ଷୀଶାବକ ପକ୍ଷ ସଞ୍ଚାଳନ କରିବା ଅବସ୍ଥାକୁ ଆସିଲେ ଆପେ ଆପେ ତଳକୁ ବା ପାଣିକି ଉଡ଼ିଯାନ୍ତି ।

ବର୍ଗ **ଫେଲକନିଫରମିସ** (Falconiformis)—ଏହି ବର୍ଗଭୁକ୍ତ ପକ୍ଷୀମାନଙ୍କୁ ଶିକାରୀ ପକ୍ଷୀ (birds of prey) ବୋଲିଯାଏ । କାରଣ ଏକ୍‌ସିପିଟ୍ରିଡ଼ି (Accipitridae) ଓ ଫେଲ୍‌କନିଡ଼ି (Falconidae) ବଂଶ ଦୁଇଟି ଏହି ବର୍ଗର । ବାଜ (Hawks) (1), ଇଗଲ (Eagle), ଶାଗୁଣା (Vultures) ଓ ବହିରୀ (Osprey) ଏକସିପିଟ୍ରିଡ଼ିବଂଶ ଏବଂ ଶ୍ୟେନ (Falcons) (1) ଫେଲ୍-କନିଡ଼ିବଂଶ ଅନ୍ତର୍ଗତ । ଏ ଦୁଇ ବଂଶର ପକ୍ଷୀମାନଙ୍କ ମଧ୍ୟରେ ବିଶେଷ ଫରକ ନାହିଁ ।

(1) ଇଂରାଜୀରେ ହକ୍ (hawk) ଓ ଫେଲକନ୍ (falcon) ଭିନ୍ନ ଭିନ୍ନ ପ୍ରକାର ପକ୍ଷୀଙ୍କୁ ବୁଝାଇଲେ ମଧ୍ୟ ଓଡ଼ିଆରେ ଉଭୟ ପକ୍ଷୀଙ୍କୁ ବାଜ ବୋଲିଯାଏ ।

—ଅନୁବାଦକ

ଉଭୟ ବଂଶର ପକ୍ଷୀମାନଙ୍କର ବିଶେଷ ଲକ୍ଷଣ ହେଲା, ମାଂସକୁ ଚିରିପକାଇବା ପାଇଁ ଅଙ୍କୁଶ ଚଞ୍ଚୁ, ମଜବୁତ୍ ଓ ବକ୍ର ଏବଂ ଶକ୍ତିଶାଳୀ ବକ୍ର ନଖଥାଏ । ଏକସିପିଟ୍ରିଡ଼ି ବଂଶଭୁକ୍ତ ପକ୍ଷୀମାନଙ୍କର ପକ୍ଷ ଓସାରିଆ ଓ ଗୋଲାକାର; ମାତ୍ର ଫେଲ୍‌କନିଡ଼ି ବଂଶର ପକ୍ଷୀମାନଙ୍କର ପକ୍ଷ ଅଣଓସାରିଆ ଓ ସୂକ୍ଷ୍ମାଗ୍ର; ଦେହ ଅଧିକ କଣ୍ଡାକାର (spindle-shaped), ଏବଂ ଶିକାରର ପଶ୍ଚାଦ୍ଧାବନ ପାଇଁ ବିଶେଷ ବେଗ ନିମିତ୍ତ ପ୍ରବାହ-ରୋଧୀ (streamlined) । ଏହି ପକ୍ଷୀମାନଙ୍କ ମଧ୍ୟରୁ କେତେକ; ଯଥା—ଚିଲ (Kite) ଓ ଶାଗୁଣା (Vulture) ଆବର୍ଜନା, ପଶୁ ମାଂସ ଓ ମଡ଼ା ଖାନ୍ତି ଏବଂ ଅନ୍ୟ ପକ୍ଷୀ; ଯଥା—ବାଜ (Shikra) ଓ ଶ୍ୟେନ (Sparrow-hawk) ମୁଖ୍ୟତଃ ଜୀବନ୍ତ ପ୍ରାଣୀ ଶିକାର କରନ୍ତି । ଏମାନେ ଗୁପ୍ତରେ ଥାଇ ହଠାତ୍ ଆସି ଝାମ୍ପ ମାରନ୍ତି ଓ ବେଳେବେଳେ ଅଳ୍ପ ବାଟ କ୍ଷିପ୍ରବେଗରେ ଗୋଡ଼ାଇଲାପରେ ଝାମ୍ପ ମାରନ୍ତି । ଅପର ପକ୍ଷରେ ବାଜ (Falcons) ମାନେ ମୁଖ୍ୟତଃ ଶିକାରୀ ପକ୍ଷୀ । ସେମାନେ କ୍ଷିପ୍ରବେଗରେ ଶିକାର ପକ୍ଷୀର ପିଛା ଧରନ୍ତି ଓ ବିଦ୍ୟୁତ୍‌ବେଗରେ ଆକାଶରେ ଉପରୁ ଝାମ୍ପ ମାରନ୍ତି । ତଦନୁସାରେ ବାଜପକ୍ଷୀ (Hawks) ଗୁପ୍ତରେ ରହି ଶିକାର କରିପାରିବା ପାଇଁ ମୁଖ୍ୟତଃ ଜଙ୍ଗଲ ଅଞ୍ଚଳରେ ବାସକରେ ଏବଂ ଶ୍ୟେନ (Falcons) ଖୋଲା ଜାଗାରେ ରହେ ।

ଶିକାର ପକ୍ଷୀ ଓ ଭୂମିବାସୀ ଶିକାର ଜନ୍ତୁମାନଙ୍କୁ ମାରିପକାନ୍ତି ବୋଲି ଅନ୍ୟାୟରେ ବାଜ (Hawk), ଇଗଲ୍ (Eagle) ଓ ଶ୍ୟେନ (Falcon)ମାନଙ୍କୁ ଦୋଷୀ କରାଯାଏ । ସରକାରୀ ଶିକାର ପ୍ରାଣିତାଲିକାରେ ଏମାନଙ୍କୁ 'ପୀଡ଼କ ପ୍ରାଣୀ' (vermin) ଶ୍ରେଣୀ ଅନ୍ତର୍ଭୁକ୍ତ କରାଯାଏ ଓ କୌଣସି ପ୍ରକାର ଆଇନ୍‌ଗତ ଆଶ୍ରୟ (legal protection) ଦିଆଯାଏ ନାହିଁ । ସେମାନଙ୍କର ଖାଦ୍ୟ ଓ ଖାଦ୍ୟଗ୍ରହଣ ରୀତିକୁ ଉତ୍ତମରୂପେ ଅନୁଧ୍ୟାନ କଲେ ଜଣାପଡ଼େ ଯେ ମୁଖ୍ୟତଃ ମୂଷା ଓ ଅନ୍ୟାନ୍ୟ ଅନିଷ୍ଟକାରୀ ପ୍ରାଣୀମାନଙ୍କୁ ନିପାତ କରୁଥିବାରୁ ଅଧିକାଂଶ ଶିକାରୀ ପକ୍ଷୀ ଅନିଷ୍ଟକାରୀ ପ୍ରାଣୀମାନଙ୍କର ସଂଖ୍ୟା ବଢ଼ିବାକୁ ଦିଅନ୍ତି ନାହିଁ । ଏଣୁ ଶିକାରୀ ପକ୍ଷୀ ଆମର ଯେତେ କ୍ଷତି କରନ୍ତି, ତା' ଅପେକ୍ଷା ବେଶି ଉପକାରୀ ଏବଂ ସେମାନେ ବୈଧାନିକ ଆଶ୍ରୟ ପାଇବା ପାଇଁ ହକ୍‌ଦାର ।

**ମାଟିଆ ଚିଲ** (Pariah kite) ଓ **ଶଙ୍ଖଚିଲ** (Brahminy kite) (ବର୍ଣ୍ଣଚିତ୍ର 19 ଓ 20)—ଏମାନେ ଆମର ଦୁଇଟି ପରିଚିତ 'ବାଜ' (hawk) ପକ୍ଷୀ । ଏମାନେ ମନୁଷ୍ୟ-ବସତି ନିକଟରେ ବାସକରନ୍ତି ଏବଂ ଖାଦ୍ୟ ପାଇଁ ମୁଖ୍ୟତଃ ମନୁଷ୍ୟ-

ଦ୍ୱାରା ସୃଷ୍ଟି ଅପ୍ରାକୃତିକ ପରିବେଶ ଉପରେ ନିର୍ଭର କରନ୍ତି । ମାଟିଆ ଚିଲ ଗୋଟିଏ ବଡ଼ ପକ୍ଷୀ । ଏହାର ବର୍ଣ୍ଣ ବାଦାମୀ । ଏହାର ଲାଞ୍ଜ ଦ'ଫାଳିଆ ହୋଇଥିବାରୁ ତାକୁ ଅନ୍ୟ ପରିଚିତ ପକ୍ଷୀମାନଙ୍କଠାରୁ ସହଜରେ ଚିହ୍ନିହୁଏ । ଉଡ଼ୁଥିଲାବେଳେ ଏହି ଦ୍ୱିଫାଳିଆ ଲାଞ୍ଜ ସହଜରେ ବାରିହୋଇଯାଏ । କଂସେଇଖାନା, ମାଛ ଓ ମାଂସ ବଜାର, ମ୍ୟୁନିସିପାଲିଟି ମଇଳାଖାତ ଏବଂ ପୋତାଶ୍ରୟ ଓ ବନ୍ଦରମାନଙ୍କରେ ମାଟିଆ ଚିଲ ବହୁସଂଖ୍ୟାରେ ଦେଖାଯାନ୍ତି ଏବଂ ଖାଦ୍ୟ ଟୁକୁରାଏ ପାଇଁ ଶିକାରରତ ଥାନ୍ତି । ମାଟିଆ ଚିଲ ଯେପରି ସୁନ୍ଦର ଓ ସ୍ୱାଚ୍ଛନ୍ଦ୍ୟରେ ବିଦ୍ୟୁତ୍ ବେଗରେ ଝାମ୍ପ ମାରି ସହରର ଜନାକୀର୍ଣ୍ଣ ବଜାର ଭିତରେ ପଡ଼ିଥିବା ମଲା ମୂଷାଟିଏ ବା ଉଚ୍ଛିଷ୍ଟ ମାଂସ ଟୁକୁରାଏ ଉଠାଇ ନେଇ ଘୂରି ବାଙ୍କି ଗଳୁଥିବା ଲୋକବାକ, ଗାଡ଼ି ମୋଟର କଟାଇ ଉପରେ ଝୁଲୁଥିବା ଟେଲିଗ୍ରାଫ୍ ତାରରେ ନ ବାଜି ବାହାରିଯାଏ, ତାହା ବ୍ୟୋମଚାଳନକୁଶଳ-ବିଦ୍ୟାକୁ ବି ହାର ମନାଇଦେବ । ଏମାନେ ଛୁଆ କରିଥିଲାବେଳେ ସେମାନଙ୍କୁ ଆହାର ଦେବା ପାଇଁ କୁକୁଡ଼ା ଛୁଆଁ ନେଇ ପଳାନ୍ତି । ସେତେବେଳେ କୁକୁଡ଼ା ପାଳନକାରୀମାନେ ମାଟିଆ ଚିଲଙ୍କ ଉତ୍ପାତରେ ବ୍ୟସ୍ତ ହୋଇପଡ଼ନ୍ତି । ଏହାର କର୍କଶ ସଙ୍ଗୀତମୟ ସୁସୁର ଇଓ୍ୱି-ଉଇର-ଉଇର-ଉଇର-ଉଇର-ଉଇର ଶବ୍ଦ ସହିତ ଅଧିକାଂଶ ସହରବାସୀ ପରିଚିତ ।

**ଶଙ୍ଖ ଚିଲ** (Brahminy Kite)—ବୈଜ୍ଞାନିକ ନାମ 'ହାଲିଆସଟୁର ଇଣ୍ଡାସ' (Haliastur indus); ହିନ୍ଦୀ—ବ୍ରାହ୍ମନି ଚିଲ, ଧୋବିୟା ଚିଲ ଓ ଖେମକରନ । ଏହା ଦେଖିବାକୁ ଆକାରରେ ମାଟିଆ ଚିଲ ପରି; ମାତ୍ର ତା'ଠାରୁ ନିଶ୍ଚିତଭାବେ ସୁନ୍ଦର । ଏହାର ପିଠିପାଖ ମଳିନ ଲାଲ ଓ ମୁଣ୍ଡରୁ ଛାତିଦେଇ ପେଟ ପର୍ଯ୍ୟନ୍ତ ଧଳା । ଅପ୍ରାପ୍ତ-ବୟସ୍କ ଶଙ୍ଖ ଚିଲର ବର୍ଣ୍ଣ ଚକୋଲେଟ ପରି ବାଦାମୀ ଏବଂ ମାଟିଆ ଚିଲ ଓ ଛୁଆ ଗୋଠ କୁକୁଡ଼ା (Scavanger vulture) ପରି ଦେଖାଯାଏ । ଅବଶ୍ୟ ଲାଞ୍ଜ ଦେଖି ଅପ୍ରାପ୍ତବୟସ୍କ ଶଙ୍ଖ ଚିଲକୁ ମଧ୍ୟ ସହଜରେ ଚିହ୍ନି ହେବ । କାରଣ ଏହାର ଲାଞ୍ଜ ଦ'ଫାଳିଆ ବା କଳାକାର ନ ହୋଇ ଗୋଲକାର । ଶଙ୍ଖ ଚିଲ ନଦୀ ଓ ପୋଖରୀ ନିକଟରେ ବାସକରେ । ଏହା ସମୁଦ୍ରକୂଳରେ ଏକ ଅତି ସାଧାରଣ ପକ୍ଷୀ ଏବଂ ମାଛ ଧରାଳି ଗାଁ ଓ ବନ୍ଦରମାନଙ୍କରେ ବେଶି ଦେଖାଯାନ୍ତି । ମୌସୁମୀ ବର୍ଷାଋତୁରେ ଯେତେବେଳେ ବିସ୍ତୀର୍ଣ୍ଣ ଅଞ୍ଚଳ ଜଳପ୍ଲାବିତ ହୋଇଉଠେ, ସେତେବେଳେ ସେମାନେ ଆହୁରି ଭିତରକୁ ମାଡ଼ିଯାନ୍ତି ଓ ଧାନବିଲ ଗୁଡ଼ିପାଖରେ ସାଧାରଣତଃ ଦେଖାଯାନ୍ତି । ଏହାର ଖାଦ୍ୟ ନିକ୍ଷିପ୍ତ ହୋଇଥିବା ନିହତ ପ୍ରାଣୀର ଅବ୍ୟବହାର୍ଯ୍ୟ ଅଙ୍ଗ ଟୁକୁରା ଏବଂ

ଜାନ୍ତବ ଆବର୍ଜନା । ଶଙ୍ଖ ଚିଲ ଅନେକ ସମୟରେ ମନୁଷ୍ୟବସତି ମଧ୍ୟରେ ପ୍ରବେଶ କରି ମାଟିଆ ଚିଲ ଓ କାଉଙ୍କ ସାଙ୍ଗରେ ମିଶି ଖାଦ୍ୟ ସଂଗ୍ରହ କରିଥାଏ; ମାତ୍ର ଭୂମି ପରିବର୍ତ୍ତେ ଜଳ ଉପରୁ ଝାମ୍ପମାରି ଖାଦ୍ୟ ସଂଗ୍ରହ କରିବାକୁ ଭଲପାଏ । ଏଣୁ ବନ୍ଦର ଓ ମାଛମରା ପୋତାଶ୍ରୟ ଅଞ୍ଚଳ ତା' ପାଇଁ ଅଧିକ ସୁବିଧା ସ୍ଥାନ । ଗ୍ରାମ୍ୟାଞ୍ଚଳରେ ଶଙ୍ଖ ଚିଲର ପ୍ରଧାନ ଖାଦ୍ୟ—ଏଣ୍ଡୁଅ, ମାଛ, ବେଙ୍ଗ, ଭୂମିବାସୀ କଙ୍କଡ଼ା, ସାନ ସାନ ସାପ ଓ କୀଟପତଙ୍ଗ । ମାଟିଆ ଚିଲ ପରି ଶଙ୍ଖ ଚିଲର ମଧ୍ୟ ଝିଣ୍ଟିପୋକ ଏକ ପ୍ରିୟଖାଦ୍ୟ । ବର୍ଷା ପରେ ଉଇ ହୁଙ୍କାରୁ ବାହାରୁଥିଲାବେଳେ ଶଙ୍ଖଚିଲ ତାଙ୍କ ପିଛା ଆବୁରୁ-ଜାବୁରୁଭାବେ ଉଡ଼ି ତାଙ୍କୁ ଧରି ଖାଏ । ଏହା ଏକପ୍ରକାର ସଁ-ସଁଇଆ କର୍କଶ ଶବ୍ଦ କରେ, ଯେତେ ଯେପରି ଚିଲ ତର୍ଣ୍ଣିରେ ଘା' ହୋଇଛି । ଉଭୟ ମାଟିଆ ଚିଲ ଓ ଶଙ୍ଖ ଚିଲ ଗଛରେ କାଠିରେ ବଡ଼ ବଡ଼ ମଞ୍ଚା ପରି ନୀଡ଼ ରଚନା କରନ୍ତି । ସେମାନେ ପାଣି ପାଖରେ ଥିବା ଗଛରେ ବସାକରିବାକୁ ଅଧିକ ସୁବିଧା ମନେକରନ୍ତି । ସେମାନଙ୍କର ଅଣ୍ଡାର ବର୍ଣ୍ଣ ଧୂସରିଆ ଧଳା ବା ପାଟଳବର୍ଣ୍ଣମିଶା ଧଳା । ତା' ଉପରେ ଲାଲ ବାଦାମୀ ରଙ୍ଗର ଚିହ୍ନ ଓ ଛିଟା ଦାଗ ଥାଏ ।

**ବାଜ** (Shikra) (ବର୍ଣ୍ଣଚିତ୍ର 21)—ବୈଜ୍ଞାନିକ ନାମ 'ଏକ୍ସିପିଟାର ବଡ଼ିଆସ' (Accipiter badius) । ବାଜ ଗୋଟିଏ ଶ୍ରେଷ୍ଠ ବାଜ (hawk); ଆକାର ପାରା ପରି । ବର୍ଣ୍ଣ ଉପର ପାଖ ପାଉଁଶିଆ ନୀଳ ଧୂସର; ତଳ ପାଖ ଧଳା, ସେଥିରେ ଆଡ଼ବାଗରେ ମଳିନ ବାଦାମୀ ଚିହ୍ନ ଥାଏ; ଲାଞ୍ଜରେ ଓସାରିଆ କଳାପଟି ଚିହ୍ନ ପଡ଼ିଥାଏ । ମାଈ ବାଜର ଉପର ପାଖ ଅଣ୍ଡିରା ତୁଳନାରେ ଅଧିକ ବାଦାମୀ । ଆକାରରେ ମାଈ ଅଣ୍ଡିରାଠାରୁ ବେଶି ବଡ଼ ହୁଏ । ଅପ୍ରାପ୍ତବୟସ୍କ ବାଜପକ୍ଷୀର ଉପର ପାଖ ଲାଲ ବାଦାମୀଆସିଆ ଓ ତଳ ପାଖରେ ଆଡ଼ବାଗରେ ନ ହୋଇ ଲମ୍ବାଭାବରେ ଡୋରିଆ ବାଦାମୀ ଦାଗ ପଡ଼ିଥାଏ । ବାଜ ପକ୍ଷୀ ଯୋଡ଼ି ଯୋଡ଼ି ହୋଇ ଜଙ୍ଗଲ ଏବଂ ଗ୍ରାମ ଓ ଗୃହଭୂମି ନିକଟସ୍ଥ ନିକୁଞ୍ଜମାନଙ୍କରେ ଦେଖାଯାନ୍ତି । ଏମାନଙ୍କର ଖାଦ୍ୟ ବଡ଼ ବଡ଼ ଝିଣ୍ଟିକା, ଏଣ୍ଡୁଅ, ବେଙ୍ଗ, ମୂଷା ଓ ସେହିପରି ପ୍ରାଣୀ । ଏମାନଙ୍କର ଶିକାର ରୀତି ହେଲା, ଖାଦ୍ୟ-ପ୍ରାଣୀକୁ ଅତର୍କିତରେ ଆକ୍ରମଣ କରିବା । ପତ୍ରଭରା ଗଛଡାଳରେ ବାଜ ଆତ୍ମଗୋପନ କରି ଏକଲୟରେ ବସିଥାଏ । ଖାଦ୍ୟପ୍ରାଣୀ ବିପଦର ଆଶଙ୍କା କରିବା ପୂର୍ବରୁ ବାଜ ଆସି ଅକସ୍ମାତ୍ ଝାମ୍ପମାରେ ଓ ତା'ର ଶକ୍ତ ନଖରେ ଧରି ଉଡ଼ିଯାଏ । ତା'ପରେ ତାକୁ ଛିଣ୍ଡାଇ ବିଦାରି ଖଣ୍ଡ ଖଣ୍ଡ କରି ଖାଏ । ବାଜ ସାନ ସାନ ପକ୍ଷୀ; ଯଥା—ସାତଭାୟା (Babblers), ଗୁଣ୍ଡୁରି (Bush quail) ଏବଂ କପୋତ

(dove) ମାନଙ୍କୁ ମଧ୍ୟ ମାରିପକାଏ । ନିଃଶବ୍ଦରେ ତା'ର ଲୁକ୍କାୟିତ ସ୍ଥାନରୁ ହଠାତ୍ ତୀବ୍ର ବେଗରେ ତଳକୁ ଖସି ଆସି ବାଜ ଏହି ପକ୍ଷୀମାନଙ୍କୁ କ୍ଷିପ୍ରଗତିରେ ଦୃଢ଼ତାର ସହିତ ଗୋଡ଼ାଇ ଯାଇ ଧରି ଖାଇଥାଏ । ଗୃହପାଳିତ କୁକୁଡ଼ା ଛୁଆଁ ମାନଙ୍କର ବାଜ ଏକ ନିଶ୍ଚିତ ଦସ୍ୟୁ । ବିଶେଷକରି ଛୁଆ କରିଥିଲାବେଳେ ବାଜ ଉତ୍ପାତକରି କୁକୁଡ଼ା-ପୋଷକମାନଙ୍କୁ ବଡ଼ ହଇରାଣ କରନ୍ତି । ଏହାର ବିଭିନ୍ନ ପ୍ରକାର କର୍କଶ ଡାକ ଅବିକଳ କଜଳପାତି (Black drongo)ର ଡାକ ପରି, ମାତ୍ର ଅଧିକ ଉଚ୍ଚସ୍ୱରର । ପ୍ରଜନନ ଋତୁରେ ବାଜପକ୍ଷୀମାନଙ୍କର ସ୍ୱର ବେଶି ଶୁଣିବାକୁ ମିଳେ । ସେତେବେଳେ ଏକ ଅପର ପଛରେ ଗୋଡ଼ାଇ ଆକାଶରେ ଚମତ୍କାର ଖେଳ ଦେଖାନ୍ତି ଓ ମୁହୁର୍ମୁହୁ ତୀକ୍ଷ୍ଣ 'ଟି-ଟୁଇ' ଶବ୍ଦ କରନ୍ତି । ପତ୍ରଭରା ଗଛର ଉପର ଅଂଶରେ ବାଜ କାଉପରି କାଠିରେ ନୀଡ଼ ରଚନାକରେ । ବିଶେଷକରି ଗ୍ରାମନିକଟସ୍ଥ କୁଞ୍ଜର ଗଛରେ ଏହି ନୀଡ଼ ରଚିତ ହୋଇଥାଏ । ଥରକେ ତିନୋଟିରୁ ଚାରିଟି ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଫିକା ନୀଳାଭିଆ-ଧଳା । ବେଳେବେଳେ ତା' ଉପରେ ଧୂସରବର୍ଣ୍ଣର ଫିକା ଚିହ୍ନ ଓ ଛିଟା ଥାଏ ।

ଆମଦେଶର ସବୁଠାରୁ ସାଧାରଣ ଶାଗୁଣା ହେଲା ରାବଣ ଚଢ଼େଇ (ବର୍ଣ୍ଣଚିତ୍ର 22) । ଓଡ଼ିଶାର ବିଭିନ୍ନ ସ୍ଥାନରେ ଏମାନଙ୍କୁ ଡୋଓ୍, ଗିଧ, ରାବଣ, ଶାଗୁଣା ଓ ଗିରିଧ କହିଥାନ୍ତି । ଇଂରାଜୀ ନାମ 'ଧଳାପିଠିଆ ଶାଗୁଣା' (White backed vulture) ଓ 'ବଙ୍ଗଦେଶୀ ଶାଗୁଣା' (Bengal vulture) । ବୈଜ୍ଞାନିକ ନାମ 'ଜିପ୍ସ ବେଙ୍ଗାଲେନ୍‌ସିସ' (Gyps bengabnsis) । ହିନ୍ଦି ନାମ ଗିଧ୍ । ଏହା ଗୋଟିଏ ଓଜନ୍‌ଦାର, ମସିଆ କଳା-ବାଦାମୀ, କଦାକାର ପକ୍ଷୀ । ଏହାର ମୁଣ୍ଡ ଓ ବେକରେ ପର ନ ଥାଏ । ବିଶ୍ରାମ କରିଥିବା ସମୟରେ ଓ ଆକାଶରେ ଘୂରିଫେରି ହେଉଥିବା ବେଳେ ଏହାର ପିଠିର ଧଳା ବର୍ଣ୍ଣ ସୁସ୍ପଷ୍ଟ ଦେଖାଯାଏ ଏବଂ ତଦ୍ୱାରା ତାକୁ ଚିହ୍ନି ହେବ । ମୁଣ୍ଡ ଉପରେ ଉଡ଼ୁଥିଲା ବେଳେ ମଧ୍ୟ ରାବଣ ଚଢ଼େଇକୁ ଚିହ୍ନଟ କରିବାରେ ଅସୁବିଧା ହୁଏ ନାହିଁ । କାରଣ ସେତେବେଳେ ଏକ ଓସାରିଆ ଧଳା ପଟି ଚିହ୍ନ ପକ୍ଷତଳେ ଦେଖିବାକୁ ମିଳେ । ପକ୍ଷରେ କଳା ଦେହର ଦୁଇପାଖରେ ଏହି ବିସ୍ତୃତ ଧଳା ପଟି ଦେଖାଯାଏ । ଅପ୍ରାପ୍ତବୟସ୍କ ରାବଣ ବାଦାମୀ ବର୍ଣ୍ଣର ଓ ତା' ପକ୍ଷରେ ଏହି ଧଳା ଚିହ୍ନ ଦେଖାଯାଏ ନାହିଁ । ଏଣୁ ଏତେବେଳେ ଏହାକୁ ଦୀର୍ଘ ଚଞ୍ଚୁ ଶାଗୁଣା (Longbilled vulture) ବୋଲି ଭ୍ରମଜାତ ହେବା ସ୍ୱାଭାବିକ । ଏହି ଶାଗୁଣାର ବୈଜ୍ଞାନିକ ନାମ, 'ଜିପସ ଇଣ୍ଡିକାସ୍' (Gyps indicas) । ଆଶ୍ଚର୍ଯ୍ୟର କଥା ଏହି

ଯେ ରାବଣ ଓ ଦୀର୍ଘ ଚଞ୍ଚୁ ଶାଗୁଣା ଦୁଇଟିଯାକ ପକ୍ଷୀ ଶ୍ରୀଲଙ୍କା (ସିଂହଳ)ରେ ଦେଖାଯାନ୍ତି ନାହିଁ । ଏହି ଅଞ୍ଚଳର ଅବସ୍ଥା ଯାହା ହୋଇଥାଉ ନା କାହିଁକି ଭାରତୀୟ ଉପଦ୍ୱୀପର ସବୁଠି ରାବଣ ପକ୍ଷୀ ଦେଖିବାକୁ ମିଳେ । କେବଳ, ସନ୍ତସନ୍ତିଆ ଚିର ସବୁଜ ଜଙ୍ଗଲାଞ୍ଚଳରେ ରାବଣ ବାସକରେ ନାହିଁ । ଉନ୍ମୁକ୍ତ ଦୀର୍ଘ ବିସ୍ତାର କରି, ପକ୍ଷ ସଞ୍ଚାଳନ ନ କରି, ଉଚ୍ଚ ଆକାଶରେ ଘଣ୍ଟା ଘଣ୍ଟା ଧରି ଆଡ଼ମ୍ବର ସହକାରେ ରାବଣ ପକ୍ଷୀ ବିଚରଣ କରୁଥାଏ ଓ ତଳେ କେଉଁଠି ଖାଦ୍ୟ ମିଳିବ ତାହା ନିରେଖୁ ଥାଏ । ମଇଳା ସଫାକାରୀ ଭାବେ ଶାଗୁଣାମାନେ ମନୁଷ୍ୟର ସବୁଠାରୁ ବେଶି ହିତକାରୀ । ସେମାନଙ୍କର ଦୃଷ୍ଟିଶକ୍ତି ଅତ୍ୟନ୍ତ ପ୍ରଖର । ଘ୍ରାଣଶକ୍ତି କ୍ଷୀଣ ଓ ଆଦୌ ନାହିଁ । ଆକାଶ ପ୍ରାୟ ଶୂନ୍ୟ ଥିଲାବେଳେ, ନିହାତି ଅଳ୍ପ ସମୟ ମଧ୍ୟରେ ମୃତପଶୁ ଶରୀରପାଖେ ଶାଗୁଣା ଯେପରି ଭାବେ ଆସି ବେଢ଼ିଯାନ୍ତି, ତାହା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ପୁଣି ସେମାନେ ଯେତେ ଶୀଘ୍ର ଓ ନିଖୁଣଭାବେ ଗୋଟାଏ ବଳଦ ବା ସେହିପରି ବଡ଼ ପଶୁର ଶବ ଖାଇ ଶେଷ କରି ଦିଅନ୍ତି, ତାହା ଆହୁରି ବିସ୍ମୟର କଥା । ଶବ ଶରୀରପାଖରେ ଶାଗୁଣା ବେଢ଼ି ଅବିରାମ ଭାବରେ ଏକ ଆରେକକୁ ଧକ୍କା ମାରୁଥିବେ, ପରସ୍ପର ସହିତ ଭୀଷଣ ଝଗଡ଼ା କରୁଥିବେ, ଏକ ଆରେକକୁ ସୁବିଧା ଜାଗାରୁ ହଟାଇବାକୁ ଦୀର୍ଘ ଆର୍ତ୍ତନାଦ ଓ ଚୀତ୍କାର କରୁଥିବେ ବା ଦୁଇଟି ଶାଗୁଣା ଦୁଇପଟେ ପକ୍ଷ ବିସ୍ତାର କରି ହାସ୍ୟକର ଭାବେ ଲମ୍ଫ ଦେଇ ଫୁଲାଏ ମାଂସକୁ ଦୁଇପଟୁ ଭିଡ଼ୁଥିବେ—ମନେହୁଏ ଶବର ଅନ୍ତ୍ୟେଷ୍ଟି କ୍ରିୟା ସେମାନେ ଏଇପରି ବୀଭତ୍ସ ଭାବେ କରନ୍ତି । ରାବଣ ପକ୍ଷୀ ଗାଁ ନିକଟରେ ବା ରାସ୍ତା କଡ଼ରେ ଥିବା ବଡ଼ ବଡ଼ ଗଛରେ ମଞ୍ଚା ପରି ନୀଡ଼ ରଚନା କରେ । ତାହା ପତ୍ରଥିବା ଡାଳ ଓ କାଠିରେ ତିଆରି ହୋଇଥାଏ । ସେ ଥରକେ ଗୋଟିଏ ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଧଳା, ବେଳେ ବେଳେ ଲାଲବାଦାମୀ ଛିଟା ଓ ଦାଗ ପଡ଼ିଥାଏ ।

ଭାରତୀୟ ଉପଦ୍ୱୀପର ଅପେକ୍ଷାକୃତ ଶୁଷ୍କ ଅଞ୍ଚଳରେ ଗୋଟିଏ ପ୍ରକାର ସାନ ଶାଗୁଣା ଦେଖାଯାଏ । ତାକୁ ଗୋଠ କୁକୁଡ଼ା (ବର୍ଣ୍ଣ ଚିତ୍ର-23) କହନ୍ତି । ଇଂରାଜୀ ନାମ 'ଧଳା ଶାଗୁଣା' (White vulture), 'ମଇଳା ସଫାକାରୀ ଶାଗୁଣା' (Scavenrer vulture) । ଏହାର ଆଉ ଗୋଟିଏ ଇଂରାଜୀ ନାମ ଅଛି । ତା' ହେଉଛି 'ଫାରାଓଙ୍କ କୁକୁଡ଼ା ଚଢ଼େଇ' (Phuraoh's chicken) । ଏହାର ବୈଜ୍ଞାନିକ ନାମ 'ନିଓଫ୍ରନ୍ ପାରକ୍ନପଟେରସ' (Neophron Percnop-terus) । ହିନ୍ଦୀ ନାମ 'ସଫେଦ୍ ଗିଧ୍', 'ଗୋବର ଗିଧ' । ଏହା ଗୋଟିଏ ଚିଲ ପରି ପକ୍ଷୀ । ବର୍ଣ୍ଣ ମଳିଆ ଧଳା, ପକ୍ଷ ପିଚ୍ଛ କଳା, ମସ୍ତକ ଓ ଥଣ୍ଟ ହଳଦିଆ, ପର ଦ୍ୱାରା

ଅମ୍ଳାକୃତ ଏବଂ ଧୋଗଣୀ । ଅପ୍ରାପ୍ତବୟସ୍କ ଗୋଠ କୁକୁଡ଼ାର ବର୍ଣ୍ଣ ବାଦାମୀ । ଏମାନଙ୍କୁ ଚିଲଙ୍କ ଠାରୁ ପୃଥକ୍ କରି ଚିହ୍ନି ହେବ । ଚିଲଙ୍କ ଲଞ୍ଜ ଦୁ'ଫାଳିଆ, ଗୋଠକୁକୁଡ଼ାର ଲଞ୍ଜ ଖଣ୍ଡାକାର । ସହର, ଗାଁ ବା ଯାଯାବର ଲୋକଙ୍କ ବସତି ନିକଟରେ ଖୋଲା ଅଞ୍ଚଳରେ ସେମାନେ ସାଧାରଣତଃ ଦୁଇ ବା ତିନି ସଂଖ୍ୟାରେ ଦେଖାଯାନ୍ତି । ସେମାନେ ସାବଲୀଳ ଛନ୍ଦରେ ଉଚ୍ଚ ଆକାଶରେ ଉଡ଼ି ବୁଲୁଥାନ୍ତି ଓ ପୁଣି ତଳ ଆଡ଼କୁ ଓହ୍ଲାଇ କେଉଁଠି ଖାଦ୍ୟ ମିଳିବ ତା'ର ଅନୁସନ୍ଧାନ କରୁଥାନ୍ତି । ତଳେ ଖାଦ୍ୟ ଅନ୍ୱେଷଣରେ ସେ ହାସ୍ୟକର ଭାବେ ପାଦକୁ ଉଚ୍ଚକୁ ଉଠାଇ ପକାଇ ଦୋହଲି ଦୋହଲି ମରାଳ ଗତିରେ ଗ୍ଭଲେ । ଗୋଠ କୁକୁଡ଼ା ଗୋଟିଏ ଦରକାରୀ ମଇଳା ସଫାକାରୀ ପକ୍ଷୀ । ଗାଁମାନଙ୍କରେ ଉପଯୁକ୍ତ ସ୍ୱାସ୍ଥ୍ୟରକ୍ଷା ବ୍ୟବସ୍ଥା ଅଭାବରୁ ସମସ୍ତେ ଗୋଟିଏ ଗୋଟିଏ ଲୋଟା ଧରି, ସେମାନଙ୍କର ବାସ ଘରର ଅଦୂରରେ ବୁଦା ଆଡ଼ୁଆଳରେ ବସି ନିତ୍ୟକର୍ମ ସମାପନ କରନ୍ତି । ଗୋଠ କୁକୁଡ଼ା ସେପରି ସ୍ଥାନରେ ଗ୍ରାମ ସାମନାକୁ ସଫା ରଖି ମୂଲ୍ୟବାନ ସେବା କରେ । କାରଣ କଟା ହେଉଥିବା ପ୍ରାଣୀର ଫୋପଡ଼ା ହେବା ଅଂଶ ଓ ସମସ୍ତ ପ୍ରକାର ଆବର୍ଜନା ସାଙ୍ଗକୁ ମନୁଷ୍ୟର ମଳ ତା'ର ଏକ ପ୍ରଧାନ ଆନନ୍ଦଦାୟକ ଖାଦ୍ୟ । ମାନ୍ଦ୍ରାଜ ନିକଟରେ ଥିରୁକାଲୀ କୁଣ୍ଡ୍ରମଠାରେ ଅବସ୍ଥିତ ହିନ୍ଦୁ ମନ୍ଦିରରେ ଯୋଡ଼ାଏ ପୌରାଣିକ ଅମର ପକ୍ଷୀ ପ୍ରତିଦିନ ଏକ ନିର୍ଦ୍ଦିଷ୍ଟ ସମୟରେ (ସରଳ ବିଶ୍ୱାସୀ ଲୋକେ ସେମାନେ ବାରାଣାସୀରୁ ଆସନ୍ତି ବୋଲି ବିଶ୍ୱାସ କରନ୍ତି) ପୂଜକମାନଙ୍କଠାରୁ ଭୋଗ ଖାଇବାକୁ ଆସନ୍ତି ବୋଲି ସେହି ମନ୍ଦିର ଖ୍ୟାତି ଲଭ କରିଅଛି । ସେଠାକୁ ଆସୁଥିବା ପକ୍ଷୀ ଏଇ ଗୋଠ କୁକୁଡ଼ା । ଏମାନଙ୍କର ନିଡ଼ ମଇଳା କାଠିରେ ତିଆରି ହୋଇଥାଏ । ଭିତର ପାଖରେ ଛିଣ୍ଡା କନା, ସ୍ତନ୍ୟପାୟୀ ପ୍ରାଣୀର ଚମଡ଼ା ଟୁକୁରା କେଶ ଓ ଅନ୍ୟାନ୍ୟ ଆବର୍ଜନା ଦିଆଯାଇଥାଏ । ଭଙ୍ଗା କୋଠା ଘରର ଉପର ଅଂଶର ଥାକ ଜାଗା ବା ପାହାଡ଼ର ଶିଳାସ୍ତମ୍ଭ ପରି ଢାଲୁ ଅଂଶରେ ନିଡ଼ ରଚିତ ହୋଇଥାଏ । ବେଳେବେଳେ ଗଛର ଦୁଇ ଶାଖା ସନ୍ଧିରେ ମଧ୍ୟ ଗୋଠ କୁକୁଡ଼ାର ବସା ଦେଖିବାକୁ ମିଳେ । ସେ ଥରକେ ସାଧାରଣତଃ ଦୁଇଟି ଅଣ୍ଡା ଦିଏ । ଅଣ୍ଡା ଦେଖିବାକୁ ବେଶ୍ ସୁନ୍ଦର । ବର୍ଣ୍ଣ ଧଳାରୁ ଫିକା, ଇଟା ପରି ଲାଲ୍ ଓ ସେଥିରେ ଲାଲବାଦାମୀ ବା କଳା ରଙ୍ଗର ଦାଗ ଥାଏ ।

ସୂଚୀମୁଖ ପକ୍ଷଯୁକ୍ତ ବାଜ (hawk) ମାନଙ୍କ ମଧ୍ୟରେ ସାହିନ (ବର୍ଣ୍ଣଚିତ୍ର 24) ଏକ ସୁନ୍ଦର ଉଦାହରଣ । ଏହାର ଇଂରାଜୀ ନାମ 'ସାହିନ୍ ବ୍ୟାଜ' (Shaheen

falcon) । ହିନ୍ଦୀ ନାମ 'ସାହିନ୍' ଓ ବୈଜ୍ଞାନିକ ନାମ 'ଫେଲକୋ ପେରେଗ୍ରି-ନେଟର' (Falco peregrinator) । ଏହା ଗୋଟିଏ ଶକ୍ତିଶାଳୀ, ଚଉଡ଼ା, ଓସାରିଆ କାନ୍ଧଯୁକ୍ତ ଡାମରା କାଉ ଆକାରର ପକ୍ଷୀ । ବୟଃପ୍ରାପ୍ତ ସାହିନ୍ର ଉପର ପାଖ ଶିଲେଟପରି କଳା, ମୁଣ୍ଡ କଳା, ଗାଲ ଅଂଶରେ ସୁସ୍ପଷ୍ଟ ରେଖା ଚିହ୍ନ ଥାଏ ଏବଂ ଦେହର ତଳ ପାଖ ଲୋହିତ ଶ୍ୱେତରୁ ମସିଆ ଲାଲ । କେତେକ ସାହିନଙ୍କର ଉଦର ତଳ-ଭାଗରୁ ଶେଷଯାଏ କଳା ରେଖା ଚିହ୍ନ ପଡ଼ିଥାଏ । ମାଈ ଅଣ୍ଡିରି ଦେଖିବାକୁ ଏକାପରି; ମାତ୍ର ମାଈ ଅଣ୍ଡିରିଠାରୁ ବଡ଼ ହୁଏ । ଉଚ୍ଚ ଗଛ ଓ ବନ୍ଧୁର ପାହାଡ଼ିଆ ଅଞ୍ଚଳରେ ସାହିନ ଗୋଟିକିଆ ବା ଯୋଡ଼ି ଯୋଡ଼ି ହୋଇ ଦେଖାଯାନ୍ତି । ଏଭଳି ସ୍ଥାନରୁ ଶିକାର ପ୍ରାଣୀର ସନ୍ଧାନ ନେବା ଓ ତା' ପିଛା ଧରିବା ସାହିନ ବାଜ ପାଇଁ ସୁବିଧାଜନକ ହୁଏ । ଶୀତଦିନେ ଉତ୍ତରାଞ୍ଚଳରୁ ଆମ ଦେଶକୁ ଗୋଟିଏ ଜାତି ବାଜ ଆସେ । ତାକୁ 'ପେରେଗ୍ରିନ୍ ବାଜ' (Peregrine Falcon) ବା 'ଭାଇରି' କହନ୍ତି । ସାହିନ୍ ଭାଇରିର ସ୍ଥାନୀୟ ପ୍ରତିନିଧି । ସାହିନ୍ ମୁଖ୍ୟତଃ ପାରା, ଶୁଆ ଓ ସେହିପରି ଆକାରର ପକ୍ଷୀଙ୍କୁ ଶିକାର କରେ । ସାହିନ ଅତି କ୍ଷିପ୍ର ଗତିରେ ଉଡ଼ିପାରେ । ଉଡ଼ିଲାବେଳେ ସେ ପ୍ରଥମେ ତା'ର ସୂକ୍ଷ୍ମାଗ୍ର ପକ୍ଷ ସଞ୍ଚାଳନ କରି କିଛିଦୂର ଉଡ଼ିଯାଇ ଆଉ ପକ୍ଷ ସଞ୍ଚାଳନ ନ କରି ପ୍ରଚଣ୍ଡ ବେଗରେ ସଞ୍ଚରଣ (glide) କରେ । ସେ ତା'ର ଶିକାର ପକ୍ଷୀକୁ ମଧ୍ୟାକାଶରେ ମାରେ ଓ ଥାବାରେ ଧରି ଏକ ଆଦୃତ ଗିରିଚୂଡ଼ାକୁ ନେଇଯାଏ । ସେଠାରେ ପରି ଉତାରି ଅଙ୍ଗପ୍ରତ୍ୟଙ୍ଗ ଭିଣି ଖାଏ । ପ୍ରଜନନ ଋତୁରେ ସାହିନ୍ ଯୋଡ଼ି ନୀଡ଼ ଥିବା ଗିରି ଚୂଡ଼ା ଘୃରିପଟେ ଆକାଶରେ ଏକ ଅପର ପିଛା ଅତି କ୍ଷିପ୍ର ବେଗରେ ତଳୁ ଉପରୁ, ଉପରୁ ତଳକୁ ଝପଟି ଯାଉଥିବା ଓ ଫାଶ ପରେ ଫାଶ ଆଙ୍କୁଥିବାର ଦୃଶ୍ୟ ବାସ୍ତବିକ ଦେଖିବାର କଥା । ସେମାନେ ଅଗମ୍ୟ ବନ୍ଧୁର ପର୍ବତ ଉପରେ ନୀଡ଼ ରଚନା କରନ୍ତି । ଥରକେ ତିନୋଟିରୁ ଚାରିଟି ଅଣ୍ଡା ଦିଅନ୍ତି । ଅଣ୍ଡାର ବର୍ଣ୍ଣ ମଳିନ ଇଟାପରି ଲାଲ । ତା' ଉପରେ ଲାଲବାଦାମୀ ରଙ୍ଗର ଛିଟା ଓ ଚିହ୍ନଥାଏ । ସେମାନେ ସେଇ ଏକ ସ୍ଥାନରେ ବର୍ଷ ପରେ ବର୍ଷ ନୀଡ଼ ରଚନା କରନ୍ତି । ଉପଦ୍ରବ ନ ଥିଲେ ପାରମ୍ପରିକ ଭାବରେ ସେଇ ଏକ ସ୍ଥାନରେ ନୀଡ଼ ରଚନା ଚାଲିଥାଏ ।

ତୁରୁମ୍ତି (ବର୍ଣ୍ଣଚିତ୍ର 25)—ଏହା ଗୋଟିଏ ଜାତିର ଶ୍ୟେନ (falcon) । ଓଡ଼ିଶାରେ ଏହାକୁ 'ବାଜ' କହିଥାନ୍ତି । ଇଂରାଜୀରେ 'ଲାଲ ମୁଣ୍ଡି ମେରଲିନ' (Red headed Merlin) ନାମରେ ପରିଚିତ । ବୈଜ୍ଞାନିକ ନାମ 'ଫାଲ୍କୋ ଚିକ୍‌କ୍ୱେରା' (Falco chicquera) । ହିନ୍ଦୀ 'ତୁରୁମ୍ତି' । ଏହା ଗୋଟିଏ କ୍ଷୁଦ୍ର

ଚିତ୍ର ନଂ 17

ହଂସରାଳ

( Lesser Whistling Teal )

ପୃଷ୍ଠା ନଂ 55 ଦେଖ



ଚିତ୍ର ନଂ 19

ମାଟିଆ ଚିଲ

( Pariah Kite )

ପୃଷ୍ଠା ନଂ 58 ଦେଖ





ଚିତ୍ର ନଂ ୨୦

ଶଙ୍ଖଚିଲ୍

( Brahminy Kite )

ପୃଷ୍ଠା ନଂ 59 ଦେଖ



ଚିତ୍ର ନଂ 21

ବାଜ

(Shikra)

ପୃଷ୍ଠା ନଂ 60 ଦେଖ




ଚିତ୍ର ନଂ 22

ଗିବଣ୍ଡି [illegible]ଢ଼ଇ ବା ଶାଗୁଣା

( Whitebacked or Bengal Vulture )

ପୃଷ୍ଠା ନଂ 61 ଦେଖ



ଚିତ୍ର ନଂ 23

ଗୋଠ କୁକୁଡ଼ା ବା ଧଳା ଶାଗୁଣା

(White or Scavenger Vulture)

ପୃଷ୍ଠା ନଂ. 62 ଦେଖ




ଯେ ନଂ 24

ଶାହୀନ

( Shabeen Falcon )

ପୃଷ୍ଠା ନଂ 63-ଦେଖ




25

ରକ୍ତମୁଣ୍ଡି

(Redheaded Merlin)

ପୃଷ୍ଠା ନଂ 64 ଦେଖ



ଚିତ୍ର ନଂ 26
କଳା ତିତିର
( Black Partridge )
ପୃଷ୍ଠା ନଂ 66 ଦେଖ

ଚିତ୍ର ନଂ 27

ଢତ୍ତିର

( Grey Partridge )

ପୃଷ୍ଠା ନଂ 67 ଦେଖ





ଚିତ୍ର ନଂ 28
ଚନକ୍-ଚନା ଘୁଣ୍ଡୁକି
( Blackbreasted or Rain Quail )
ପୃଷ୍ଠା ନଂ 68 ଦେଖ

ଚିତ୍ର ନଂ 29

ଗୁଣ୍ଡୁରି

( Jungle Bush Quail )

ପୃଷ୍ଠା ନଂ 70 ଦେଖ





ଚିତ୍ର ନଂ 30
ଜଙ୍ଗଲ କୁକୁଡ଼ା
( Grey Junglefowl )
ପୃଷ୍ଠା ନଂ 71 ଦେଖ



ଚିତ୍ର ନଂ 31

ମୟୂର

( Common Peafowl )

ପୃଷ୍ଠା ନଂ 72 ଦେଖ



ଚିତ୍ର ନଂ 32
ସାରସ ପକ୍ଷୀ
( Saras Crane )
ପୃଷ୍ଠା ନଂ 74 ଦେଖ

[illegible] ଶ୍ୟେନ (falcon) । ଦେହ [illegible]ର ବର୍ଣ୍ଣ ନୀଳଧୂସର, [illegible] । ତଳପାଖର ଧଳା, ଉପରେ ନର୍କଡ଼ଭାବେ ଆଡ଼ ବାଗରେ ପଟା ପରି କଳା ଚିହ୍ନ ଥାଏ । ମୁଣ୍ଡ [illegible]ବେକର ପଛ ବା ଉପର ଅଂଶ ବାଦାମୀ ଓ ସ୍ପଷ୍ଟ ଦୃଶ୍ୟମାନ । ଲମ୍ବଭାବେ ଗଳାକୁ 'ନଶ' ପରି ଗୋଟିଏକରି ବାଦାମୀ ରେଖା ପଡ଼ିଥାଏ । ଏ ଦୁଇଟି ଲକ୍ଷଣଦ୍ୱାରା ଭୁଟୁମୁଣ୍ଡକୁ ଚିହ୍ନି ହେବ । ତା' ସାଙ୍ଗକୁ ଉଡ଼ୁଥିଲାବେଳେ ଲାଞ୍ଜ ପ୍ରାନ୍ତରେ ଅଣଓସାରିଆ ଧଳା ପଟିଚିହ୍ନ ଓ ଲାଞ୍ଜର ଉପର ପାଖରେ ଓସାରିଆ କଳା ପଟିକୁ ଲକ୍ଷ୍ୟ କଲେ ଭୁଟୁମୁଣ୍ଡ ବୋଲି ଜଣାଯାଇପାରେ । ସାଧାରଣତଃ କୃଷି ଜମି ନିକଟରେ ଖୋଲା ଅଞ୍ଚଳରେ ଏମାନେ ଯୋଡ଼ା ଯୋଡ଼ା ହୋଇ ଦେଖାଯାନ୍ତି । ସେମାନେ ମୁଣ୍ଡିଆ ବା ଟେଲିଗ୍ରାଫ ଉଚ୍ଚ ସ୍ଥାନରେ ବସିଥାନ୍ତି ବା ବୁଦା ଉପର ଉଚ୍ଚତାରେ କ୍ଷିପ୍ରବେଗରେ ଶିକାର ଅନ୍ୱେଷଣରେ ଉଡ଼ୁଥାନ୍ତି । କ୍ଷୁଦ୍ର କ୍ଷୁଦ୍ର ପକ୍ଷୀ, ମୂଷା, ଏଣ୍ଡୁଅ ଓ ବଡ଼ ବଡ଼ ପୋକ ଏମାନଙ୍କର ଆହାର । ଗୋଧୂଳି ସମୟରେ ଯେତେବେଳେ ବାଦୁଡ଼ି ସେମାନଙ୍କର ଦିନବେଳର ଲୁଚିବା ସ୍ଥାନରୁ ବାହାରନ୍ତି, ସେତେବେଳେ କେବେ କେବେ ଭୁଟୁମୁଣ୍ଡ ସେମାନଙ୍କ ଉପରେ ଅବିଶ୍ୱାସ କ୍ଷିପ୍ର ଗତିରେ ହଠାତ୍ ଆକ୍ରମଣ କରି ଧରିନେଇଯାଏ । ଅନେକ ସମୟରେ ଅଣ୍ଡିରା ଓ ମାଈ ପକ୍ଷୀ ଉଭୟ ମିଶି ଶିକାର କରନ୍ତି । ଜଣେ ଶିକାରକୁ ତଡ଼ି ଘଉଡ଼ାଇ ଆଣେ ଓ ଅନ୍ୟ ଜଣେ ଗୋଡ଼ାଇ ମାରେ । ତା' ପରେ ଉଭୟ ମିଶି ତା'କୁ ଖାଆନ୍ତି । ମାଈ ଅଣ୍ଡିରାଠାରୁ ବଡ଼ ହୁଏ । ସମୟ ସମୟରେ ଲୋକେ ମାଈ ଭୁଟୁମୁଣ୍ଡକୁ ପୋଷ ମନାଇ ଶିକ୍ଷା ଦେଇ ଭରଦ୍ୱାଜ (roller), ଖାଗୁଣା (hoopoe), ବଣି (myna) ଓ ତିତିର (partridge) ଆଦି ପକ୍ଷୀ ଧରନ୍ତି । ଶିକାର ପିଛା ଧରିଥିଲାବେଳେ ଏହାର ଉଡ଼ା କ୍ଷିପ୍ର ଓ ଶର ପରି । ଏତେବେଳେ ସେ ଶ୍ୟେନ (sparrow hawk) ପରି ଦ୍ରୁତ ଓ ଦୀର୍ଘ ସମୟ ଧରି ପକ୍ଷ ସଞ୍ଚାଳନ କରିଥାଏ । ଏହା ଏକ ପ୍ରକାର ଉଚ୍ଚ, କର୍କଶ ଚିତ୍କାର ଧ୍ୱନି କରେ । ପ୍ରଜନନ ଋତୁରେ ଏହି କ୍ଷୁଦ୍ର ଶ୍ୟେନ (falcon)ମାନେ ଅତ୍ୟନ୍ତ ଦାମ୍ଭିକ ଓ ଦୁର୍ଦ୍ଦାନ୍ତ ହୋଇଉଠନ୍ତି । ସେତେବେଳେ ସେମାନଙ୍କ ନୀଡ଼ ଥିବା ଗଛର ପାଖ ମାଡ଼ିଲେ ବଡ଼ ବଡ଼ ପକ୍ଷୀ ଯଥା—କାଉ ଓ ଚିଲଙ୍କୁ ଆକ୍ରମଣ କରି ଘଉଡ଼ାଇ ଦିଅନ୍ତି । ଖୋଲା ଜମିରେ ଥିବା ଗଛରେ କାଠିରେ ମଞ୍ଚାପରି ନୀଡ଼ ରଚନା କରନ୍ତି । ଥରକେ ତିନୋଟିରୁ ଚାରୋଟି ଅଣ୍ଡା ଦିଅନ୍ତି । ବର୍ଣ୍ଣ ଫିକା ଲାଲଆସିଆ ଧଳା । ତା' ଉପରେ ଘନଭାବେ ଲାଲବାଦାମୀ ରଙ୍ଗର ଛିଟା ପଡ଼ିଥାଏ ।

ବର୍ଗ, ଗାଲିଫରମିସ (Galliformes)—ଆମ ଦେଶରେ ଏହି ପକ୍ଷୀବର୍ଗର

ବଂଶ ହେଲା ଫାଜିଆନିଡ଼ି (Phasianidae)। ଶିକାରଯୋଗ୍ୟ ପକ୍ଷୀ (Game birds) ଫାଜିଆନିଡ଼ି ବଂଶ ଅନ୍ତର୍ଗତ । ସେମାନେ ହେଲେ, ଫେଜାଣ୍ଟ ମୁର୍ଗି (Pheasant), ବଣକୁକୁଡ଼ା (Jungle fowl), ତିତିର (Partridge) ଓ ଘୁଣ୍ଡୁକ (quail) ଚଢ଼େଇ । ଏମାନେ ମୁଖ୍ୟତଃ ବୀଜଭକ୍ଷୀ । ଏମାନଙ୍କର ଅଣ୍ଡା ବଦା ଓ ମଧ୍ୟମ ଆକାର । ପକ୍ଷ ମଣ୍ଡଳାକାର । ପାଦ ବଳିଷ୍ଠ ଓ କ୍ଷୁଦ୍ରରୁ ମଧ୍ୟମ ଆକାରର । ଅନେକ ଅଣ୍ଡିରା ପକ୍ଷୀର ଗୋଡ଼ରେ ପଦକଣ୍ଟ (spur) ଥାଏ । ପାଦର ନଖ ମଜଭୁତ୍ ଓ ମୁଣ୍ଡା ଏବଂ ଖାଦ୍ୟ ସଂଗ୍ରହ ପାଇଁ ଭୂମିକୁ ଆମ୍ପୁଡ଼ିବା ଉପଯୋଗୀ ।

**କଳା ତିତିର** (ବର୍ଣ୍ଣଚିତ୍ର 26)—ଇଂରାଜୀ ନାମ 'କଳା ତିତିର' (Black Partridge) । ଓଡ଼ିଶାର କୌଣସି କୌଣସି ଅଞ୍ଚଳରେ କଳା ତିତିର ବୋଲି ମଧ୍ୟ କହୁଥାନ୍ତି । ବୈଜ୍ଞାନିକ ନାମ 'ଫ୍ରାଙ୍କୋଲିନସ ଫ୍ରାଙ୍କୋଲିନସ' (Francolinus francolinus); ହିନ୍ଦୀ ନାମ—କାଲ୍ ତିତିର । କଳା ତିତିର ଅପେକ୍ଷା ସାଧାରଣତିତିର (Grey Partridge) ଅଧିକ ପରିଚିତ । ଉଭୟ ତିତିର ଆକାରରେ ପ୍ରାୟ ଏକାପରି । କଳା ତିତିର ଗୋଟିଏ ସ୍ଥୂଳ, ଥୁଣ୍ଟା ଲାଞ୍ଜିଆ ଶିକାର ପକ୍ଷୀ । ମୁଖ୍ୟତଃ ଏହା ଚିପଣ୍ଡ କଳା ଓ ତା' ଉପରେ ଧଳା ଓ ହଳଦିଆ ବାଦାମୀ ବର୍ଣ୍ଣର ଚିହ୍ନ ପଡ଼ିଥାଏ । ଅଣ୍ଡିରା କଳା ତିତିରକୁ ତା'ର ଗଣ୍ଡଦେଶରେ ଥିବା ଉଜ୍ଜ୍ୱଳ ଧଳାଚିହ୍ନ ଓ ଗଳା ଚାରିପଟେ ଥିବା ବାଦାମୀ ରଙ୍ଗର ପଟିଦ୍ୱାରା ଚିହ୍ନା-ଯାଇପାରେ । ମାଈ ପକ୍ଷୀ ଅନେକ ପରିମାଣରେ ଫିକା, ପିଠି ପାଖରେ କଳା ଓ ଧଳାବର୍ଣ୍ଣର ଛିଟା ଓ ଦାଗ ଚିହ୍ନ ଥାଏ ଏବଂ ବେକର ଉପର ପାଖରେ ବାଦାମୀ ରଙ୍ଗର ଚିହ୍ନ ଥାଏ । ଏହି ସୁନ୍ଦର ତିତିର ପକ୍ଷୀ ଏକାକୀ ବା ଯୋଡ଼ି ଯୋଡ଼ି ହୋଇ ଉତ୍ତର ଭାରତ ଓ ଆସାମର ଉତ୍ତମରୂପେ ଜଳ ପାଉଥିବା ବୁଦା ଝାଟି ଓ ଝାଉଁ ଜାତୀୟ ଜଙ୍ଗଲ, ଉଚ୍ଚ ଘାସ ଜଙ୍ଗଲ ଏବଂ ନଦୀପାଖ ଅଞ୍ଚଳରେ ଦେଖାଯାନ୍ତି । ଆଖୁକ୍ଷେତ, ଜହ୍ନା ଫସଲ ହୋଇଥିବା କ୍ଷେତ ଏବଂ ଚା' ବଗିଚା ଏମାନଙ୍କର ପ୍ରିୟ ବାସସ୍ଥାନ । ଭୋର ଓ ସଞ୍ଜ ହୋଇଆସିବା ସମୟରେ ଏମାନେ ଶସ୍ୟ ଚୁଙ୍କିବା ପାଇଁ କ୍ଷେତରେ ପଶନ୍ତି । ଏ ସମୟରେ କ୍ଷେତର ସୀମାନାରେ ଏପଟ ସେପଟ ହୋଇ ଶସ୍ୟ ଚୁଙ୍କି ବୁଲୁଥିବା ସମୟରେ ସେମାନେ କା' ଆମ (moorhen) ପରି ଥୁଣ୍ଟା ଲାଞ୍ଜକୁ ଉପରକୁ ଟେକି କରି ଉଠାଇ ରଖିଥାନ୍ତି । ଏହି ବିଶେଷ ଲକ୍ଷଣ ସାଧାରଣତଃ ସାଧାରଣ ତିତିର (Grey Partridge) ମାନଙ୍କଠାରେ ଦେଖାଯାଏ ନାହିଁ । କଳା ତିତିର ଖୁବ୍

ଭୂମିରେ ବେଗରେ ଦୌଡ଼ିପାରେ ଏବଂ ସାଧାରଣତଃ ପଳାଇ ଯିବାକୁ ବେଶୀ ଉପରେ ନିର୍ଭର ନ କରି ଗୋଡ଼ ଉପରେ ନିର୍ଭରକରେ । ଅବଶ୍ୟ ଅକସ୍ମାତ୍ ହାବୁଡ଼ିଗଲେ ବା ଶିକାର ଘଉଡ଼େଇବାବାଲାଙ୍କ (Beaters) ଠାରୁ ଆତ୍ମରକ୍ଷା ପାଇଁ ଖଣ୍ଡେ ଦୂର ଉଡ଼ିଯାନ୍ତି । ସାଧାରଣତଃ ଥରକେ କେତେ ଶହ ମିଟର ମାତ୍ର ଉଡ଼ନ୍ତି । ଏହି ଉଡ଼ା ସବଳ ଏବଂ ସେତେବେଳେ ପକ୍ଷ ଦ୍ରୁତ ଘୂର୍ଣ୍ଣିତ ହୋଇଥାଏ । ଥରକେ ପ୍ରାୟ ତିନିମିନିଟରୁ ପାଞ୍ଚ ମିନିଟ ପର୍ଯ୍ୟନ୍ତ ସେମାନେ ଉଡ଼ିପାରନ୍ତି । ଏମାନଙ୍କର ଖାଦ୍ୟ କ୍ଷେତ୍ର ଶସ୍ୟ, ଘାସ ଓ ଅନାବନା ଗଛର ବୀଜ, କଅଁଳ ଅଙ୍କୁର, ପିମ୍ପୁଡ଼ି ଓ ଅନ୍ୟାନ୍ୟ କୀଟପତଙ୍ଗ । ଅଣ୍ଡିରି କଳା ତିତ୍ତିରର ସ୍ୱନ ଏକପ୍ରକାର ଆନନ୍ଦଦାୟକ, ସ୍ପଷ୍ଟ, ଧାତବ ଧ୍ୱନି । ଏହା 'ଚକ୍-ଚକ୍-ଚକ୍-କେରେକେକ୍' ପରି ଶୁଣାଯାଏ । ଏହି ସ୍ୱର ଦୂରରୁ ଆସୁଥିବା କର୍କଶ ଓ ସଙ୍ଗୀତମୁଖର ଧ୍ୱନିର ଏକ ଅଭିନବ ମିଶ୍ରଣ । ଶୁଣିବା ଲୋକର ମନର ଅବସ୍ଥା ଓ ଭାବନା ଅନୁସାରେ ଏହି ସ୍ୱନ 'ଶୁବାନ-ତେରୀ-କୁଦ୍ରାତ୍', 'ଲସନ-ପିଆଜ-ଅଦ୍ରକ' ଏବଂ ଅନ୍ୟ ପ୍ରକାରର ଶୁଣାଯାଇପାରେ । କଳା ତିତ୍ତିର ଝାଉଁ ଜାତୀୟ ବା ଘାସଜମିରେ, ଘାସବୁଦା ମୂଳରେ ଏକ ଅଗଭୀର ନୀଡ଼ ରଚନା କରିଥାଏ । ଏହା ଘାସରେ ତିଆରି ହୋଇଥାଏ । ସେଥିରେ ଥରକେ ଛଅଟିରୁ ଆଠଟି ଯାଏ ଅଣ୍ଡାଦିଏ । ଅଣ୍ଡାର ବର୍ଣ୍ଣ ଫିକା ସବୁଜ-ବାଦାମୀରୁ ପ୍ରାୟ ଘନବାଦାମୀ ହୋଇଥାଏ ।

**ତିତ୍ତିର** (ବର୍ଣ୍ଣଚିତ୍ର27)— ଇଂରାଜୀ ନାମ 'ଧୂସର ତିତ୍ତିର'(Grey Partridge) । ବୈଜ୍ଞାନିକ ନାମ—'ଫ୍ରାଙ୍କୋଲିନାସ ପଣ୍ଡିସେରିଆନାସ' (Francolinus Pondicerianus) । ହିନ୍ଦୀ ନାମ—ତିତ୍ତିର, ସଫେଦ ତିତ୍ତିର । ଏହାର ଆକାର ଅଧା ବଢ଼ିଥିବା ଗ୍ରାମ୍ୟ କୁକୁଡ଼ାର ଆକାର ସଙ୍ଗେ ସମାନ ହେବ । କଳାତିତ୍ତିର ପରି ଏହା ସ୍ଥୂଳ ଓ ଥୁଣ୍ଟା ଲାଞ୍ଜିଆ । ଏହାର ମୋଟାମୋଟି ବର୍ଣ୍ଣ ଧୂସର-ବାଦାମୀ; ଆଉ ତା' ଉପରେ କଳା-ବାଦାମୀ ରଙ୍ଗର କୃମି ପରି ଚିହ୍ନ ପଡ଼ିଥାଏ । ଲାଞ୍ଜ କଞ୍ଚିତ ବାଦାମୀ । ବେକ ବାଦାମୀଆସିଆ ଓ ବେକରେ ଏକ ଭଗ୍ନ କଳା ବୃତ୍ତାକାର ଚିହ୍ନ ଥାଏ । ଅଣ୍ଡିରି ମାଈଠାରୁ ଅଧିକ ହୃଷ୍ଟପୁଷ୍ଟ ଏବଂ ତା' ପାଦରେ ପଦକଣ୍ଟ ଥାଏ । ତିତ୍ତିର ଶୁଷ୍କ ଖୋଲା ଘାସ ଓ କଣ୍ଟାର ବୁଦାବୁଦିଆ ଅଞ୍ଚଳରେ ବାସକରେ । ଏହା ସାଧାରଣତଃ ଗାଁ ଓ ଗୃହଜମି ନିକଟରେ ଦେଖିବାକୁ ମିଳେ । ପଲ୍ଲୀ ଗ୍ରାମାଞ୍ଚଳରେ ଯେଉଁସବୁ ପକ୍ଷୀସ୍ୱନ ଶୁଣିବାକୁ ମିଳେ, ତନ୍ମଧ୍ୟରେ ତିତ୍ତିରର ସୁମଧୁର ଧାତବ ଧ୍ୱନି ଗୋଟିଏ । ପ୍ରଜନନ କାଳ ଭିନ୍ନ ଅନ୍ୟ ସମୟରେ ସେମାନେ ଗୃହ-ଛଅଟି କରି ଗୋଟିଏ ଗୋଟିଏ ଦଳରେ ଆଡ଼ମ୍ବର ସହକାରେ ସିଧାଭାବରେ ଦୌଡ଼ି ବୁଲୁଥାନ୍ତି ଏବଂ ଭୂମି ଓ ଗୋବର ଖେଳାଇ ଖାଦ୍ୟ

ସଂଗ୍ରହ କରୁଥାନ୍ତି । ସେମାନଙ୍କର ଖାଦ୍ୟ ହେଲ ଘାସ, ଭଳିଚ ଜାତୀୟ କୋମଳ [illegible] କୀଟ । ଉଇ ଏବଂ ମନୁଷ୍ୟ ଓ ପଶୁର ମଳରେ ହେଉଥିବା ମକ୍ଷିଙ୍କ (maggot) ସେମାନଙ୍କର ପ୍ରିୟଖାଦ୍ୟ । ଭୟର ସୂଚନା ପାଇଲେ ଖାଦ୍ୟ ସଂଗ୍ରାହକ ଦଳ ବ୍ୟସ୍ତବସ୍ତ ହୋଇ ଦ୍ରୁତବେଗରେ ଏ ବୁଦାରୁ ସେ ବୁଦାକୁ ଦୌଡ଼ନ୍ତି ଓ ଗୋଟିଏ ବା ଦୁଇଟି କରି ବୁଦା ଭିତରେ ଆଶ୍ରୟ ନିଅନ୍ତି । ସେମାନେ ସାଧାରଣତଃ ଉଡ଼ିବାକୁ ବିତୃଷ୍ଣ । ନିହାତି ଆବଶ୍ୟକ ହେଲେ ସଶବ୍ଦରେ ଦ୍ରୁତବେଗରେ ପକ୍ଷ ଘୂର୍ଣ୍ଣନକରି ଭିନ୍ନ ଭିନ୍ନ ଦିଗରେ ଇତସ୍ତତଃ ଶହେ ମିଟର ରୁ ଅଧିକ ଦୂର ଖଣ୍ଡେ ଉଡ଼ା ଦେଇ ପୁଣି ଭୂମିରେ ଓହ୍ଲାଇ ଦୌଡ଼ନ୍ତି । ସେମାନେ ରାତିରେ କଣ୍ଟାଳିଆ ଗଛଉପରେ ବିଶ୍ରାମ ନିଅନ୍ତି । ଅଣ୍ଡିରା ତିତିରର ଡାକ ଏକପ୍ରକାର ଉଚ୍ଚତ ସମୁଚ୍ଚ 'କାତତର, କାତିତର' ଇତ୍ୟାଦି ବା 'ପାତଲ-ପାତଲ' । ଏହା ଦ୍ରୁତ ପ୍ରନଃସ୍ଫୁର୍ତ୍ତି ହୁଏ ଏବଂ ସ୍ୱରଗ୍ରାମ କ୍ରମଶଃ ବର୍ଦ୍ଧିତ ହୋଇଥାଏ । ପିଲାଦିନୁ ପାଳିଲେ ତିତିର ଭଲ ପୋଷ ମାନେ । କୁକୁର ପରି ମାଲିକ ପଛରେ ଗୋଡ଼ାଏ ଏବଂ ଡାକ ଶୁଣିଲେ ଦୂରରୁ ଦୌଡ଼ି ଦୌଡ଼ି ଆସି ପହଞ୍ଚେ । ଗଞ୍ଜାପରି ଅଣ୍ଡିରା ତିତିରକୁ ଲଢ଼େଇରେ ବ୍ୟବହାର କରାଯାଉଥିବାରୁ ସେମାନଙ୍କର ଆଦର ବେଶି । ଆମ ଦେଶର କେତେକ ଅଞ୍ଚଳରେ ଗାଁମାନଙ୍କର ଖୁସିବାସିଆ ଓ ଛୁଟି ଦିନରେ ଅଣ୍ଡିରା ତିତିର ଲଢ଼େଇ ଏକ ଲୋକପ୍ରିୟ ଆମୋଦ । କେଉଁ ଅଣ୍ଡିରା ଜିତିବ, ସେ ନେଇ ବାଜି ମରାମରିରେ ବହୁତ ଟଙ୍କା ହାରଜିତ୍ ହୁଏ । ଯେଉଁ ଅଣ୍ଡିରା ତିତିର ବେଶି ତିତିରଙ୍କୁ ହରାଇ ଚ୍ୟାମ୍ପିଅନ୍ ହୁଏ, ତା'ର ଦାମ ବହୁତ ଉଠେ । ପଡ଼ିଆ ବା ଘାସ ଜମିରେ କଣ୍ଟାବୁଦାମୂଳେ ଭୂମିକୁ ଆଞ୍ଚୁଡ଼ି ଟିକିଏ ଖାଲୁଆକରି ତିତିର ତା' ଉପରେ ଘାସ ଆଣି ଜମାଏ । ତାହା ତା'ର ନୀଡ଼ । ସେଥିରେ ଛଅରୁ ଆଠଟି ଯାଏ ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ବାଦାମୀ ହଳଦିଆ । ସେଥିରେ କୌଣସି ଚିହ୍ନ ନ ଥାଏ ।

**ଚନକ-ଚନା ପୁଣ୍ଡ୍ରୁକ** (ବର୍ଣ୍ଣଚିତ୍ର 28)—ଇଂରାଜୀ ନାମ 'କଳାଛାତିଆ ପୁଣ୍ଡ୍ରୁକ' (Black breasted quail), 'ବର୍ଷା ପୁଣ୍ଡ୍ରୁକ' (Rain quail) । ବୈଜ୍ଞାନିକ ନାମ 'କୋଟୁରନିକ୍ସ କରୋମଣ୍ଡେଲିକା' (Coturnix coromandelica) । ହିନ୍ଦୀ ନାମ—ଚନକ-ଚନା ବାଟେର । ଏହାର ଆକାର ସାଧାରଣ ତିତିରର ପ୍ରାୟ ଅଧା ଓ ଏହା ଅବିକଳ ସାନ ଗୁଞ୍ଚର ଏକ ତିତିର । ଏହାର ଉପର ପାଖର ବର୍ଣ୍ଣ ପୀତାଭ ବାଦାମୀ ଆଉ ତା' ଉପରେ ଫିକା ଗାର ଗାର ଓ ଅନିୟମିତଭାବେ କଳା ଚିହ୍ନ ପଡ଼ିଥାଏ । ଅଣ୍ଡିରାର ଛାତି ଅଂଶର ଉପର ଆଡ଼ ଏବଂ ଅନେକ ସମୟରେ ଉଦରାଂଶର ମଧ୍ୟଭାଗ କଳା । ମାଈ ପକ୍ଷୀର ଛାତି କଳା ନୁହେଁ ଏବଂ ବେକରେ କଳା-ଧଳା ବର୍ଣ୍ଣର

ଚିହ୍ନ ନ ଥାଏ ।

**ଘାଗୁସ ପୁଣ୍ଡୁକ**—ଏହାର ଇଂରାଜୀ ନାମ 'ସାଧାରଣ ପୁଣ୍ଡୁକ ଚଢ଼େଇ' (Common quail) ଓ 'ଧୂସର ପୁଣ୍ଡୁକ' (Grey quail) । ବୈଜ୍ଞାନିକ ନାମ— 'କୋଟୁରନିକ୍ସ କୋଟୁରନିକ୍ସ' (Coturnix coturnix) । ଏହି ପୁଣ୍ଡୁକ ଚଢ଼େଇ ଅପେକ୍ଷାକୃତ ବଡ଼ ଏବଂ ମୁଖ୍ୟତଃ ଶୀତ ଋତୁରେ ଉତ୍ତରାଞ୍ଚଳରୁ ବହୁ ସଂଖ୍ୟାରେ ଆମ ଦେଶକୁ ଆସନ୍ତି । ଅଣ୍ଡିରା ପକ୍ଷୀର ତଣ୍ଟିରେ ଜାହାଜ ଲଙ୍ଗର ପରି ଏକ କଳାଚିହ୍ନ ଥାଏ ଏବଂ ଗଳା ଓ ପେଟରେ କୌଣସି କଳାଚିହ୍ନ ନଥାଏ । ମାଈ ପକ୍ଷୀ ଅନେକାଂଶ ପରିମାଣରେ ଚନକ୍-ଚନା ପୁଣ୍ଡୁକ ପରି; ମାତ୍ର ବଡ଼ । ହାତ ପାଖରେ ମାଈ ପକ୍ଷୀକୁ ତା'ର ମୁଖ୍ୟ ବା ପ୍ରଧାନ ପରର ପ୍ରାନ୍ତରେ ଥିବା ଈଷତ୍ ହଳଦିଆ ଓ ବାଦାମୀ ପଟାଚିହ୍ନଦ୍ୱାରା ଚିହ୍ନି ହେବ । ଚନକ୍-ଚନା ପୁଣ୍ଡୁକ ଓ ଘାଗୁସ ପୁଣ୍ଡୁକ ଉଭୟଙ୍କର ସ୍ୱଭାବ ଏକାପରି । ପୁଣ୍ଡୁକମାନେ ଭୂମିବାସୀ ପକ୍ଷୀ । ଅଧିକାଂଶ ସମୟ ସେମାନେ ଘାସ ଓ ଛୋଟ ଛୋଟ ଗଛ ଆଡ଼ୁଆଳରେ ରହିଥାନ୍ତି । ସେମାନେ ଭଲ ଦୌଡ଼ିପାରନ୍ତି ଓ ନିହାତି ଦରକାର ନ ହେଲେ ଉଡ଼ିବାକୁ ବିତୃଷ୍ଣ । ସହସା ଉତ୍ତେଜିତ ହେଲେ ସେମାନେ ଏକପ୍ରକାର ପକ୍ଷ ଘୂର୍ଣ୍ଣନଦ୍ୱାରା ଉପରକୁ ଉଠନ୍ତି ଓ ପ୍ରାୟ ଶହେ ମିଟର ପର୍ଯ୍ୟନ୍ତ ଉଡ଼ିଯାନ୍ତି । ଉଡ଼ିଗଲାବେଳେ ପକ୍ଷଘୂର୍ଣ୍ଣନ ସାଙ୍ଗକୁ ଏକପ୍ରକାର ମୃଦୁ ଘୁଘୁର ଶବ୍ଦ ଜାତ ହୋଇଥାଏ । ସେମାନେ ଖୁବ୍ ଉପରେ ଉଡ଼ନ୍ତି-ନାହିଁ । ଘାସ ବା ଶସ୍ୟକ୍ଷେତ ଗଛର ଠିକ୍ ଉପରେ ଉଡ଼ିଯାଇ ତଳକୁ ଖସି ଲୁଚିଯାନ୍ତି । ସେମାନଙ୍କର ଉଡ଼୍ଡୟନ (flight) କ୍ଷିପ୍ର ଓ ସିଧା । ପକ୍ଷର ଦ୍ରୁତ ସ୍ପନ୍ଦନ ଫଳରେ ଏହା ସମ୍ଭବ ହୋଇଥାଏ । ଶସ୍ୟ, ଘାସ ଓ ଅଗଛର ବୀଜ ସେମାନଙ୍କର ମୁଖ୍ୟ ଖାଦ୍ୟ । ତା' ସାଙ୍ଗକୁ ସେମାନେ ଉଇ ଓ ଅନ୍ୟାନ୍ୟ କୋମଳ କୀଟ ଖାନ୍ତି । ଚନକ୍-ଚନା ପୁଣ୍ଡୁକର ସ୍ୱର ଏକପ୍ରକାର ସ୍ୱରଲୟଯୁକ୍ତ ଦୁଇତାନବିଶିଷ୍ଟ ଘୁଘୁର, ଶୁଣିବାକୁ ଏକପ୍ରକାର 'ହୁଇଚ୍-ହୁଇଚ୍··ହୁଇଚ୍-ହୁଇଚ୍' ଶବ୍ଦ ପରି । ପ୍ରଜନନ ଋତୁରେ ଏହା ଅବିରାମ ଭାବେ, ବିଶେଷ କରି ସକାଳେ ଓ ସନ୍ଧ୍ୟାରେ ଏବଂ ମେଘାବୃତ ପାଗରେ ମଧ୍ୟେ ମଧ୍ୟେ ସାରାଦିନ ଏବଂ ରାତିରେ ଶୁଣିବାକୁ ମିଳେ । ଏହି ସ୍ୱର ଘାଗୁସ ପୁଣ୍ଡୁକର ସ୍ୱରଠାରୁ ଏକାବେଳକେ ଭିନ୍ନ । ଘାଗୁସ ପୁଣ୍ଡୁକର ଶବ୍ଦ ଏକପ୍ରକାର ଉଚ୍ଚ ଘୁଘୁର ଓ ତା'ପରେ ଦୁଇଟି ଛୋଟ ତାନ ଥାଏ । ଏହି ସ୍ୱର ଅନେକଟା 'ଏଲ୍‌କୁଇଡ୍ ଓ୍ୱେଟ୍-ମି-ଲିପ୍ସ' ପରି । ଉଭୟ ଚନକ୍-ଚନା ପୁଣ୍ଡୁକ ଓ ଘାଗୁସ ପୁଣ୍ଡୁକର ନୀଡ଼ ଏକାପରି । ଭୂମି ଉଖାରି ସାମାନ୍ୟ ଖାଲ କରି ସେଥିରେ ଘାସ ଦିଆଯାଇଥାଏ । ନୀଡ଼

ଘାସ ଓ କ୍ଷେତ ଭିତରେ ଉତ୍ତମରୂପେ ଲୁଚିରହିଥାଏ । ଥରକେ ଛ'ଟିରୁ ଆଠଟି ଅଣ୍ଡା ଦିଅନ୍ତି । ଅଣ୍ଡାର ବର୍ଣ୍ଣ ଫିକା-ହଳଦିଆ-ବାଦାମୀ ଏବଂ ତା' ଉପରେ ବିଭିନ୍ନ ଆକାରର ଓ ବିଭିନ୍ନ ରଙ୍ଗର ବାଦାମୀ ଚିହ୍ନ ଥାଏ ।

ଗୁଣ୍ଡୁରି (ବର୍ଣ୍ଣଚିତ୍ର 29)—ଇଂରାଜୀରେ 'ଜଙ୍ଗଲ ଝାଟି ପୁଣ୍ଡୁକି' (Jungle Bush Quail) କହନ୍ତି । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଏହାକୁ ପୁଣ୍ଡୁକି ଚଢ଼େଇ ଓ ଗିନି କୁକୁଡ଼ା ବୋଲି ମଧ୍ୟ କହିଥାନ୍ତି । ବୈଜ୍ଞାନିକ ନାମ 'ପାରଡ଼ିକୁଲା ଏସିଆଟିକା' (Perdicula asiatica) । ହିନ୍ଦୀ ନାମ ଲୌଓ୍ୱା । ଏହା ଆକାର ଓ ଅନ୍ୟାନ୍ୟ ଲକ୍ଷଣରେ ପୁଣ୍ଡୁକି ପରି ।ଅଣ୍ଡିରି ଗୁଣ୍ଡୁରିର ଉପର ପାଖର ବର୍ଣ୍ଣ ଘନ ହଳଦିଆ-ବାଦାମୀ, ତା'ଉପରେ କଳା ଓ ବାଦାମୀ ରଙ୍ଗର ଚିହ୍ନ ପଡ଼ିଥାଏ । ତଳପାଖର ବର୍ଣ୍ଣ ଧଳା ଓ ସେଥିରେ ଲଗାଲଗି ହୋଇ କଳାଗାର ଥାଏ । ମାଈ ଚଢ଼େଇର ତଳପାଖ ଫିକା ହଳଦିଆ-ବାଦାମୀ । ଅଣ୍ଡିରି ମାଈ ଉଭୟ ପକ୍ଷୀଠାରେ ଈଷତ୍ ପାଟଳ-ବାଦାମୀ-ବର୍ଣ୍ଣର ଏକ ସୁସ୍ପଷ୍ଟ ରେଖା ମୁଣ୍ଡରେ ଭ୍ରୂ ଉପରୁ ବେକର ଦୁଇ କଡ଼ରେ ବିସ୍ତୃତ । ଆହୁରି ମଧ୍ୟ ଉଭୟର ଗଳାରେ ଉଜ୍ଜ୍ୱଳ ବାଦାମୀ ବର୍ଣ୍ଣ ଛୋପଚିହ୍ନ ରହିଥାଏ । ଆଉ ଜାତିଏ ପୁଣ୍ଡୁକି ଅଛନ୍ତି, ସେମାନଙ୍କୁ ଇଂରାଜୀରେ 'ପଥୁରିଆ ଝାଟି ପୁଣ୍ଡୁକି' (Rock Bush Quail) କୁହାଯାଏ । ଏହାର ବୈଜ୍ଞାନିକ ନାମ 'ପାରଡ଼ିକୁଲା ଆର୍‌ଗୁଣ୍ଡା' (Perdicula argoondah) । ପଥୁରିଆ ଝାଟି ପୁଣ୍ଡୁକି ଅନେକ ପରିମାଣରେ ଦେଖିବାକୁ ଗୁଣ୍ଡୁରି ପରି ଏବଂ ଅନେକ ସମୟରେ ପୁଣ୍ଡୁକି ଚଢ଼େଇ ବାସକରୁଥିବା ସ୍ଥାନରେ ପାଖାପାଖି ଦେଖିବାକୁ ମିଳେ । ଅଣ୍ଡିରି ପଥୁରିଆ ଝାଟି ପୁଣ୍ଡୁକିର ଗଳାରେ ଥିବା ଚିହ୍ନ ବାଦାମୀ ପରିବର୍ତ୍ତେ ଫିକା ଇଟାପରି ଲାଲ ଏବଂ ମାଈର ଗଳାରେ ଆଦୌ ଚିହ୍ନ ନ ଥାଏ । ଗୁଣ୍ଡୁରି ଚଢ଼େଇ ପ୍ରାୟ ଖୋଲା ପର୍ଣ୍ଣ-ମୋଚୀ (deciduous) ଅରଣ୍ୟ ଏବଂ ଶୁଷ୍କ ଘାସ ଓ ବୁଦାବୁଦିକିଆ ଜଙ୍ଗଲରେ ଦେଖାଯାନ୍ତି । ଦଳରେ ପାଞ୍ଚଟିରୁ କୋଡ଼ିଏଟି ଯାଏ ପକ୍ଷୀ ଏକାଠି ବାସକରନ୍ତି । ଦିନବେଳେ ବୁରୁଡ଼ିଲେ ସେମାନେ ବୁଦାମୂଳେ ବା ଅଳ୍ପ ଗହଳ ଘାସତଳେ ଏକାଠି ଆଶ୍ରୟ ନିଅନ୍ତି । ଏତେବେଳେ ସବୁ ପକ୍ଷୀମାନଙ୍କର ମୁହଁ ବାହାର ଆଡ଼କୁ ରହେ । ହଠାତ୍ ସେମାନେ ବାହାରପଡ଼ି ବିଚଳିତ-ଭାବେ ପକ୍ଷ ଘୂର୍ଣ୍ଣନକରି ଚତୁର୍ଦ୍ଦିଗରେ ଖେଳାଇ ହୋଇ ଖଣ୍ଡେ ଦୂର ଉଡ଼ିଯାଇ ପୁଣି ଲୁଚିଯାନ୍ତି । ସେତେବେଳେ ମନେହୁଏ ହଠାତ୍ ଯେପରି ଗୁଣ୍ଡୁରି ଚଢ଼େଇମାନଙ୍କର 'ବିସ୍ଫୋରଣ' ଘଟିଲା ଓ ସେମାନେ ଛିନ୍ନଛିନ୍ନ ହେଲେ ପରି ଯେପରିଭାବେ ଚାରିଆଡ଼କୁ ଫିଙ୍ଗିହୋଇଯାନ୍ତି, ମନେହେବ ଏଇ ପାଦତଳେ ଗୁଳି ପଡ଼ିଗଲା ପରି । ପରେ ପରେ ବିନ୍ଦୁ

ସୁମଧୁର ଧ୍ୱନି 'ହୁଇ-ହୁଇ-ହୁଇ...' ଡାକିଦେଇ ସେମାନେ ପୁଣି ଏକାଠି ମିଳିତ ହୁଅନ୍ତି । ପାଣି ଥିବା ଖାଡିକୁ ଗୁଣ୍ଡୁରି ପକ୍ଷୀମାନେ ସକାଳେ ଓ ସନ୍ଧ୍ୟାରେ ଗୋଟିଏ ଧାଡ଼ିରେ ପିଇବାପାଇଁ ଯାଇଥାନ୍ତି । ଦିନପରେ ଦିନ ତାଙ୍କର ସେଇ ଏକ ଗୋଟିଆ ରାସ୍ତାରେ ସେମାନେ ଯାତାୟାତ କରିଥାନ୍ତି । ସେମାନଙ୍କର ପ୍ରଧାନ ଖାଦ୍ୟ ହେଲା ଶସ୍ୟବୀଜ, ଘାସ ଓ ଅଗଛ ମଞ୍ଜି, ଅଙ୍କୁର, ଉଇ ଓ ଅନ୍ୟାନ୍ୟ କୀଟପତଙ୍ଗ । ପ୍ରଜନନ ଋତୁରେ ଅଣ୍ଡିରି ପକ୍ଷୀମାନେ କଳହପ୍ରିୟ ହୁଅନ୍ତି ଓ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ଆହ୍ୱାନକରି ଏକପ୍ରକାର ବିରକ୍ତିର କର୍କଶ ଶବ୍ଦ କରନ୍ତି । ଗୁଣ୍ଡୁରି ବୁଦାବୁଦିଆ ଜଙ୍ଗଲରେ ତୃଣଗୁଚ୍ଛ ମୂଳ ଘାସ ତ୍ୱାରା ଘେରିଦେଇ ନୀଡ଼ ରଚନାକରେ । ଥରକେ ଗୃହରୁ ଆଠଟିଯାଏ ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଲହୁଣୀ ପରି ଧଳା; ତା' ଉପରେ କୌଣସି ପ୍ରକାର ଚିହ୍ନ ନ ଥାଏ । ଗୁଣ୍ଡୁରିର ଅଣ୍ଡା ଚନକ-ଚନା ପୁଣ୍ଡୁକିର ଅଣ୍ଡାଠାରୁ ଏକାବେଳକେ ଭିନ୍ନ ।

**ଜଙ୍ଗଲି କୁକୁଡ଼ା** (ବର୍ଣ୍ଣଚିତ୍ର 30)—ଇଂରାଜୀ ନାମ 'ଧୂସର ବଣ କୁକୁଡ଼ା' (Grey Jungle fowl) । ବୈଜ୍ଞାନିକ ନାମ 'ଗ୍ୟାଲସ ସୋନେରାଟି' (Gallus sonneratti) । ହିନ୍ଦୀ—ଜଙ୍ଗ୍ଲି ମୁର୍ଗୀ । ଓଡ଼ିଶାର କେତେକ ସ୍ଥାନରେ ଜଙ୍ଗଲି କୁକୁଡ଼ା ଓ ଝାରକୁକୁଡ଼ା (Red jungle fowl) ଉଭୟକୁ ବଣକୁକୁଡ଼ା ବୋଲି ମଧ୍ୟ କୁହାଯାଏ । ଅଣ୍ଡିରି ଓ ମାଈ ଜଙ୍ଗଲି କୁକୁଡ଼ା ଯଥାକ୍ରମେ ଗ୍ରାମ୍ୟ ଗଞ୍ଜା ଓ କୁକ୍କୁଟୀ ଆକାରର ହୋଇଥାନ୍ତି । ଗଞ୍ଜାର ମୋଟାମୋଟି ବର୍ଣ୍ଣ ଦାଗଦାଗିଆ ଧୂସର । ଲାଞ୍ଜ ଦାଆ ପରି ଓ ଧାରୁ ପରି କଳାରଙ୍ଗର । କୁକ୍କୁଟୀର ଉପର ପାଖ ବାଦାମୀ; ତଳପାଖର ବେଶୀ ଭାଗ ଧଳା ଓ ତା' ଉପରେ କାତି ପରି କଳା ରଙ୍ଗର ଚିହ୍ନ ଥାଏ । ଜଙ୍ଗଲି କୁକୁଡ଼ା ଗୋଟି-ଗୋଟିକିଆ, ଦୁଇଟି କରି ବା କ୍ଷୁଦ୍ର କ୍ଷୁଦ୍ର ଦଳରେ ଦେଖାଯାନ୍ତି । ବିଚ୍ଛିନ୍ନ ପାର୍ବତ୍ୟ ଅଞ୍ଚଳର ପାଦଦେଶରେ ଥିବା ବାଉଁଶ ଝାଟି ଅଞ୍ଚଳରେ ଏମାନେ ଦେଖିବାକୁ ମିଳନ୍ତି । ବିଶେଷକରି ନାଗଫେଣୀର କଣ୍ଟା ଥିବା ଅଞ୍ଚଳ; ଜଙ୍ଗଲର ଯେଉଁଠି ବହୁଦିନତଳେ ଗଛ କଟା ହୋଇ ସଫା କରାଯାଇଥିଲା, ସେଠି ଅନାବନା ଗଛ ଉଠି ଯାଇଛି, ସେପରି ଅଞ୍ଚଳ ଏବଂ ଅବହେଳିତ ବା ପରିତ୍ୟକ୍ତ ବୃକ୍ଷବାଟିକା(plantation)ରେ ଏମାନେ ରହନ୍ତି । ଜଙ୍ଗଲି କୁକୁଡ଼ା ମୁଖ୍ୟତଃ ଭାରତୀୟ ଉପଦ୍ୱୀପର ପଶ୍ଚିମାଞ୍ଚଳରେ ସୀମାବଦ୍ଧ । ବାଉଁଶ ବା କର୍ଭି (Karvi) ବୁଦାରେ ଫୁଲ ଧରିଥିବା ସମୟରେ ଖାଦ୍ୟ ସଂଗ୍ରହପାଇଁ ସେ ସ୍ଥାନରେ ବହୁ ସଂଖ୍ୟାରେ ଜଙ୍ଗଲି କୁକୁଡ଼ା ଆସି ଜମା ହୁଅନ୍ତି । ଜଙ୍ଗଲି କୁକୁଡ଼ା ଓ ଝାରକୁକୁଡ଼ା ଉଭୟ ହୁରୁଡ଼ା ଓ ଭୀରୁ ପକ୍ଷୀ । ସକାଳେ ଓ ଅପରବେଳା ଭୂମି ଉଖୁରାଇ ଖାଦ୍ୟ ସଂଗ୍ରହ କରିବା ପାଇଁ ସେମାନେ ଖୋଲା ଅଞ୍ଚଳକୁ

ଆସନ୍ତି; ମାତ୍ର ଖୋଲା ଅଞ୍ଚଳରେ ଗହଳିଆ ଜାଗାଠାରୁ ବେଶି ଦୂରକୁ ଯା'ନ୍ତିନାହିଁ। ଖିପ୍ରଭର ସାମାନ୍ୟ ସୂଚନା ପାଇଲାମାତ୍ରେ ବେକକୁ ଲମ୍ବା କରି ଓ ଲାଞ୍ଜକୁ ନୁଆଁଇ ବୁଦା ଭିତରକୁ ଦୌଡ଼ି ପଳାଇଯାନ୍ତି। ସେମାନଙ୍କର ଖାଦ୍ୟ ହେଲା ଶସ୍ୟ, ଅଙ୍କୁର, ନାଗଚୈରି ଫଳ ଓ କୋଳି (Zizyphus)। ପବନରେ ଖସିପଡ଼ିଥିବା ଫଳ; ଯଥା ବରଫଳ ଓ ସେ ଜାତୀୟ ଅନ୍ୟାନ୍ୟ ଗଛର ଫଳ (Ficus spp) ଜଙ୍ଗଲି କୁକୁଡ଼ାର ପ୍ରିୟ ଆହାର। ସେମାନେ ପୋକଜୋକ ଓ ପୋକମାନଙ୍କର ଲାର୍ଭା ମଧ୍ୟ ଖାଇଥାନ୍ତି। ଅଣ୍ଡିରି ଜଙ୍ଗଲି କୁକୁଡ଼ାର ରାବ 'କୁକ୍-କୟା କୟା-କୁକ୍'। ଏହି ଡାକ 'କ୍ୟାଉକୁନ୍-କ୍ୟାଉକୁନ୍'ରେ ଶେଷ ହୁଏ। ଡାକ ଧୀରେ ଧୀରେ ଓ ମୃଦୁଭାବେ ଉଚ୍ଚାରିତ ହେଉଥିବାରୁ କେବଳ ଅଳ୍ପ ଦୂରଯାଏ ଶୁଣାଯାଏ। ଅଣ୍ଡିରି ମୁର୍ଗୀ ଗଦାଉପରେ, ଶୋଇଯାଇଥିବା ଗଛର ଗଣ୍ଡି ଉପରେ ବା ଅନ୍ୟ କୌଣସି ସୁସ୍ପଷ୍ଟ ଦୃଶ୍ୟମାନ ସ୍ଥାନରେ ବସି ପକ୍ଷକୁ କଡ଼-ପଟିଆ ଉଚ୍ଚ ଶବ୍ଦରେ ଫଡ଼ଫଡ଼ କରି ତା'ପରେ ତା'ର ଡାକ ଦେଇଥାଏ। ତା' ଶୁଣିପାଖରେ ଶୁଣିପାରିବା ସ୍ଥାନ ଭିତରେ ଥିବା ସବୁ ଅଣ୍ଡିରି ଏହି ଡାକର ଜବାବ ଦିଅନ୍ତି।

ଗୋଟିଏ ଅଣ୍ଡିରି ଜଙ୍ଗଲି କୁକୁଡ଼ା ଗୋଟିଏ ମାଈ ସହିତ କିମ୍ବା ଅନେକ ଗୁଡ଼ାଏ ମାଈ କୁକୁଡ଼ା ସହିତ ବାସକରେ, ତାହା ଠିକ୍ ଭାବେ ଜଣାନାହିଁ। ଘନ ବୁଦାଭିତରେ ମାଟିକୁ ଉଖାରି ଛୋଟ ଗାତଭିତରେ ଶୁଖିଲା ପତ୍ର ଦେଇ ନୀଡ଼ ରଚିତ ହୁଏ। ତା' ଭିତରେ ମାଈ କୁକୁଡ଼ା ଥରକେ ଚାରିଟିରୁ ସାତଟି ଯାଏ ଅଣ୍ଡା ଦିଏ। ଅଣ୍ଡାର ବର୍ଣ୍ଣ ଫିକାରୁ ଘନ-ବାଦାମୀ। ଅଣ୍ଡା ଅନେକ ପରିମାଣରେ ଗ୍ରାମ୍ୟ କୁକୁଡ଼ାର ଅଣ୍ଡା ପରି।

**ଝାଗକୁକୁଡ଼ା**—ଇଂରାଜୀ ନାମ 'ଲାଲ୍ ବଣ ମୁର୍ଗୀ' (Red Jungle Fowl)। ବୈଜ୍ଞାନିକ ନାମ 'ଗ୍ୟାଲସ ଗ୍ୟାଲସ' (Gallus gallus)। ଯେତେ ପ୍ରକାର ଗୃହ-ପାଳିତ କୁକୁଡ଼ା ଆମର ଅଛି, ସେ ସମସ୍ତଙ୍କର ଆଦିମ ବଂଶଧର ହେଲା ଝାଟକୁକୁଡ଼ା। ଏହା ମୁଖ୍ୟତଃ ହିମାଳୟର ତରାଇ ଅଞ୍ଚଳ ଓ ଦକ୍ଷିଣକୁ ବ୍ୟାପ୍ତ ହିମାଳୟ ପର୍ବତମାଳାର ପାଦଦେଶରୁ ମଧ୍ୟପ୍ରଦେଶର ପୂର୍ବାଞ୍ଚଳ ଯାଏ ଏହି ବିସ୍ତୃତ ଅଞ୍ଚଳରେ ଦେଖିବାକୁ ମିଳେ। ବିଶେଷ କରି ଯେଉଁଠି ଯେଉଁଠି ଶାଳବଣ (Shorea robusta) ଅଛି, ସେଠି ଝାଟକୁକୁଡ଼ା ରହନ୍ତି। ଏ ଜାତୀୟ କୁକୁଡ଼ା ଓ ଗଞ୍ଜା ଗୃହପାଳିତ ବାଣ୍ଟମ କିସମ (Bantam breed) ଗଞ୍ଜା ଓ ମାଈ ପରି। ଝାଟକୁକୁଡ଼ା ଗଞ୍ଜାର ଡାକ ମଧ୍ୟ ବାଣ୍ଟମ କିସମ ଗଞ୍ଜାର ଡାକ ପରି।

**ମୟୂର** (ବର୍ଣ୍ଣଚିତ୍ର 31)—ଭାରତୀୟ ଉପଦ୍ୱୀପର ଫେଜାଣ୍ଟ ମୁର୍ଗୀ ବଂଶ

(Pheasant family) ଅନ୍ତର୍ଭୁକ୍ତ ଯେତେ ପକ୍ଷୀ ଦେଖଯାନ୍ତି । ସେମାନଙ୍କ ମଧ୍ୟରେ ସବୁଠାରୁ ପରିଚିତ ଓ ଦର୍ଶନୀୟ ପକ୍ଷୀ ହେଲା ମୟୂର । ଏହାର ଇଂରାଜୀ ନାମ 'ସାଧାରଣ ମୟୂର' (Common Peafowl) । ବୈଜ୍ଞାନିକ ନାମ 'ପାଭୋ କ୍ରିଷ୍ଟାଟାସ' (Pavo Cristatus) । ହିନ୍ଦୀ ନାମ ମୋର, ମୟୂର । ଏହା ଅଳ୍ପକାଳ ପୂର୍ବେ ଭାରତର ଜାତୀୟ ପକ୍ଷୀରୂପେ 'ନିର୍ବାଚିତ' ହୋଇଅଛି ।

ମୟୂର ଆମର ଏତେ ପରିଚିତ ଯେ ତା'ର ବର୍ଣ୍ଣନା ଦେବା ଅନାବଶ୍ୟକ । ମୟୂର ପରି ମୟୂରୀର ଚନ୍ଦ୍ରିକା ନ ଥାଏ । ଗୋଟିଏ ସାଧାରଣ ଭ୍ରମ ଧାରଣା ଏହି ଯେ ଝାଲିଝାଲିକିଆ ଚନ୍ଦ୍ରିକା ବା 'ଆଖି' ଅଣ୍ଡିରା ପକ୍ଷୀର ଲାଞ୍ଜରେ ଥାଏ । ପ୍ରକୃତପକ୍ଷେ ଚନ୍ଦ୍ରିକା ଥିବା ପର ତା'ର ଲାଞ୍ଜ ନୁହେଁ । ସେଗୁଡ଼ିକ ଅସ୍ୱାଭାବିକ ଭାବେ ଦୀର୍ଘ ହୋଇ ଯାଇଥିବା ଓ ଲାଞ୍ଜ ଉପର ପାଖକୁ ଢାଙ୍କିଥିବା ପକ୍ଷ ମାତ୍ର । ମୟୂର ପରି ମୟୂରୀର ମୁଣ୍ଡରେ ଚୂଳ ଥାଏ; ମାତ୍ର ମୟୂରର ଚୂଳ ପରି ତାହା ଏତେ ସୁନ୍ଦର ନୁହେଁ । ମୟୂରୀର ବର୍ଣ୍ଣ ଗ୍ରିପିଗ୍ରିପିକିଆ ବାଦାମୀ ଓ ବେକର ତଳପାଖର କିଛି ଅଂଶ ଧାତବ ସବୁଜ । ମୟୂରମାନେ ସାଧାରଣତଃ ଦଳ ଦଳ ହୋଇ ଦେଖାଯାନ୍ତି । ପ୍ରତି ଦଳରେ ମାଈ ଅଣ୍ଡିରା ଉଭୟ ପକ୍ଷୀ ଥାନ୍ତି । ସେମାନେ ମୁଖ୍ୟତଃ ପର୍ଣ୍ଣ-ମୋଚୀ (deciduous) ସମତଳ ଭୂମି ଓ ପାହାଡ଼ର ପାଦଦେଶରେ ଥିବା ଜଙ୍ଗଲରେ ବାସ କରନ୍ତି । କେତେକ ଋତୁରେ ମାଈ ଓ ଅଣ୍ଡିରା ଅଲଗା ଅଲଗା ବାସ କରିପାରନ୍ତି । ସକାଳେ ଓ ସନ୍ଧ୍ୟାରେ ମୟୂରମାନେ ଜଙ୍ଗଲ ମଧ୍ୟରେ ଥିବା ଖୋଲା ପଡ଼ିଆ ବା କ୍ଷେତକୁ ଚରିବାକୁ ବାହାରି-ଥାନ୍ତି । ଗୁଜରାଟ ଓ ରାଜସ୍ଥାନରେ ଧର୍ମବିଶ୍ୱାସ ଯୋଗୁଁ ଲୋକେ ମୟୂର ମାରନ୍ତି ନାହିଁ । ଏଣୁ ସେଠାରେ ମୟୂର ଅର୍ଦ୍ଧ-ଗୃହପାଳିତ ପକ୍ଷୀରୂପେ ବାସ କରନ୍ତି କହିଲେ ଭୁଲ ହେବ ନାହିଁ । ଯେଉଁମାନେ ମୟୂରମାନଙ୍କୁ ଏହିପରି ଅଞ୍ଚଳମାନଙ୍କରେ ଦେଖିଛନ୍ତି, ସେମାନେ ଧାରଣା କରିପାରିବେ ନାହିଁ ଅନ୍ୟତ୍ର ଶିକାର ହେଉଥିବା ବା ସାଧାରଣ ପ୍ରାକୃତିକ ଭକ୍ଷକ ଶତ୍ରୁ ଥିବା ଅଞ୍ଚଳରେ ମୟୂର କେତେ ସତର୍କ ଓ ଚତୁର । ଏମାନଙ୍କର ଦୃଷ୍ଟି ଓ ଶ୍ରବଣ ଶକ୍ତି ଅଦ୍ଭୁତଭାବେ ପ୍ରଖର । ଏଣୁ ମୟୂରକୁ ଅତର୍କିତଭାବେ ଧରିବା ଅସମ୍ଭବ କହିଲେ ଚଳେ । ସାମାନ୍ୟ ଭୟର ସୂଚନା ପାଇଲାମାତ୍ରେ ସେ ଗଛତଳକୁ ଖସିଚାଲିଯାଏ । ହଠାତ୍ ହାବୁଡ଼ିଗଲେ ବା ଲୁକ୍କାୟିତ ସ୍ଥାନରୁ ବାହାରକୁ ତଡ଼ି-ଆଣିଲେ, ସେମାନେ ସଶବ୍ଦରେ ଓ ଶ୍ରମ ସହକାରେ ପକ୍ଷ ପିଟି ଅନେକ ସମୟରେ ରକେଟ୍ ପରି ସିଧା ଉପରକୁ ଉଡ଼ିଯାନ୍ତି । 'ଲାଞ୍ଜ' ପ୍ରତିରୋଧକର କାର୍ଯ୍ୟ କଲେ ମଧ୍ୟ ସେମାନେ ଥରେ ପକ୍ଷ ମେଲାଇ ଉଡ଼ିଲେ ବେଶ୍ ବେଗରେ ଗତି କରିପାରନ୍ତି । ଉଚ୍ଚ

ବୃକ୍ଷଡାଳରେ ସେମାନେ ରାତ୍ରି ଯାପନ କରନ୍ତି । ପ୍ରତ୍ୟୁଷରେ ଅଣ୍ଡିରା ମୟୂରର ଅପ୍ରୀତିକର ଉଚ୍ଚ 'ମେ-ଅ' ଚିତ୍କାରରେ ଜଙ୍ଗଲାଞ୍ଚଳ ପ୍ରତିଧ୍ୱନିତ ହୋଇଉଠେ । ତା'ର ଆଡ଼ମ୍ବରପୂର୍ଣ୍ଣ ରୂପ ସାଙ୍ଗକୁ ଏହି ସ୍ୱାଭାବିକ ଡାକ ସତେ ଯେପରି ବିପରୀତ ଚରମ-ସୀମା (anticlimax) । ଶସ୍ୟ, କନ୍ଦ ଓ ଅଙ୍କୁର ମୟୂରମାନଙ୍କର ପ୍ରଧାନ ଆହାର । ଅବଶ୍ୟ ଏହା ସର୍ବଭୁକ୍ ଓ ମିଳିଲେ ପୋକଜୋକ, ଏଣ୍ଡୁଅ, ସାନ ସାନ ସାପ ଆଦି ଖାଏ । ଯେଉଁ ଅଞ୍ଚଳମାନଙ୍କରେ ଗ୍ରାମବାସୀମାନେ ମୟୂରକୁ ମାରନ୍ତି ନାହିଁ; ସେଠାରେ ଏହି ପକ୍ଷୀମାନେ କ୍ଷେତବାଡ଼ିରେ ନିର୍ଭୟରେ ପଶି ଅନେକ ସମୟରେ ନୂଆ ଲଗାହୋଇଥିବା ଚିନାବାଦାମ ଓ ଡାଲି ଜାତୀୟ ଶସ୍ୟକୁ ଖାଇ ବେଶ୍ କିଛି କ୍ଷତି କରନ୍ତି । ଭୂମିକୁ ଉଖୁରାଇ ଅଳ୍ପ ଖାଲ କରି ମୟୂରୀ କୁଟା ପତ୍ର ପକାଇ ନୀଡ଼ ରଚନାକରେ । ନୀଡ଼ ଘନ ଲତାଗୁଳ୍ମ ଭିତରେ ଉତ୍ତମରୂପେ ଲୁକ୍କାୟିତ ରହିଥାଏ । ଥରକେ ମୟୂରୀ ତିନୋଟିରୁ ପାଞ୍ଚଟି ଯାଏ ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଫିକା ହଳଦିଆରୁ ଦୁଗ୍ଧରେ ମିଶାଇ କଫିର ରଙ୍ଗ ପରି ହୋଇଥାଏ ।

ବର୍ଗ **ଗ୍ରୁଇଫରମିସ** (Gruiformes)—ଏହି ପକ୍ଷୀବର୍ଗ ଅନ୍ତର୍ଗତ ଅନେକଗୁଡ଼ିଏ ବିହଙ୍ଗ-ବଂଶ ଭାରତୀୟ ଉପଦ୍ୱୀପରେ ଦେଖାଯାନ୍ତି । ସେମାନଙ୍କ ମଧ୍ୟରେ ଗ୍ରୁଇଡ଼ି (ସାରସ ପକ୍ଷୀ) (Gruidaecranes), ରାଲିଡ଼ି (ଡାହୁକ, କା'ମ ଆଦି) (Rallidae-Rails) ଏବଂ ଓଟିଡ଼ିଡ଼ି (ହୁକୁନା ପକ୍ଷୀ) (Otididae-Bustards) ପ୍ରଭୃତି ବଂଶର ନାମ ଉଲ୍ଲେଖଯୋଗ୍ୟ ।

**ସାରସ ପକ୍ଷୀ** (ବର୍ଣ୍ଣଚିତ୍ର 32)—ସାରସ (crane) ଜାତୀୟ ପକ୍ଷୀ, ଯଥା ସାରସ (Saras crane), କୁଲଙ୍ଗ (common crane) ଇତ୍ୟାଦି ମଧ୍ୟରେ ସାରସ ପ୍ରକୃଷ୍ଟ ଉଦାହରଣ । ଏହାର ଇଂରାଜୀ ନାମ 'ସାରସ' (Saras crane), ବୈଜ୍ଞାନିକ ନାମ 'ଗ୍ରାସ ଏଣ୍ଟିଗନ' (Grus antigone) । ହିନ୍ଦୀ—ସାରସ । ଓଡ଼ିଶାରେ ସ୍ଥାନ-ବିଶେଷରେ ଏହାକୁ ବଡ଼ ବଗ ଓ ଟେରଲ ମଧ୍ୟ କହିଥାନ୍ତି । ଏହା ଧୂସରବର୍ଣ୍ଣର ଏକ ବଡ଼ ପକ୍ଷୀ । ଆକାର ଶାଗୁଣାର ଆକାର ପରି ଓ ଉଚ୍ଚତାରେ ମନୁଷ୍ୟର ଉଚ୍ଚତା ହେବ । ଏମାନେ କ୍ଷେତ ଜମି ଓ ଜଳାଭୂମିରେ ଯୋଡ଼ି ଯୋଡ଼ି ହୋଇ ଖାଦ୍ୟ ଅନ୍ୱେଷଣ କରୁ-ଥିବାର ଦେଖାଯାନ୍ତି । ଛୁଆ କରିଥିବା ସମୟରେ ଏମାନଙ୍କ ସହିତ ଗୋଟିଏ ଯୋଡ଼ିଏ ଛୁଆ ମଧ୍ୟ ଥାନ୍ତି । ସାରସ ପକ୍ଷୀ କ୍ୱଚିତ୍ ଦଳ ଦଳ ହୋଇ ଦେଖାଯାଆନ୍ତି । ଅବଶ୍ୟ କେବେ କେବେ ଏମାନେ ଦଳ ବାନ୍ଧନ୍ତି ଓ ଗୋଟିଏ ଗୋଟିଏ ଦଳରେ ଶହେରୁ ଅଧିକ ସଂଖ୍ୟକ ସାରସ ମଧ୍ୟ ଦେଖାଯାଇଥାନ୍ତି । ସାରା ଜୀବନକାଳ ପାଇଁ ଏମାନଙ୍କର କେବଳ

ଥିବାରେ ପ୍ରଜନନ ହୁଏ । ଅଣ୍ଡ୍ରି-ମାଈ ମଧ୍ୟରେ ଅନୁରକ୍ତ ଲୋକ-ସାହିତ୍ୟରେ ପୌରାଣିକ କଥାରୂପେ ସ୍ଥାନ ପାଇଅଛି । ସେଥିପାଇଁ ସାରସ ଅନେକ ପରିମାଣରେ ପବିତ୍ର ବୋଲି ପରିଗଣିତ ହୋଇଥାଏ । ଗ୍ରାମ୍ୟାଞ୍ଚଳରେ ଲୋକେ ସେମାନଙ୍କର କଷ୍ଟ କ୍ଷତି କରନ୍ତି ନାହିଁ; ଫଳରେ ଏମାନେ ସ୍ୱଚ୍ଛନ୍ଦ ପୋଷ୍ୟ ଓ ବିଶ୍ୱାସୀ ପକ୍ଷୀ ପରି ବିଚରଣ କରନ୍ତି । ଅପର ପକ୍ଷରେ ଅନ୍ୟ ଜାତିର ସାରସମାନଙ୍କୁ ତାଙ୍କର ସ୍ୱାଦୁ ମାଂସ ପାଇଁ ଲୋକେ ଅତି ଆଗ୍ରହରେ ଶିକାର କରନ୍ତି । ଏଣୁ ଅନ୍ୟ ଜାତି ସାରସମାନେ ଶିକାର ହେଉଥିବା ପକ୍ଷୀମାନଙ୍କ ମଧ୍ୟରେ ସବୁଠାରୁ ସତର୍କ ଓ ସଜାଗ । ସାରସ ପକ୍ଷୀ ଆକାଶମାର୍ଗରେ ଉଡ଼ିବାପାଇଁ ତଳୁ ଉଠିବା ବେଳେ ଶ୍ରମ ସହକାରେ ଉଠେ; ମାତ୍ର ଥରେ ଉଠି ଆକାଶରେ ପକ୍ଷ ବିସ୍ତାର କଲା ପରେ ଏହା ସବେଗରେ ଓ ଦ୍ରୁତଗତିରେ ଉଡ଼େ । ଧୀର ଅଥଚ ଛନ୍ଦୋମୟ ଭାବେ ବଳିଷ୍ଠ ପକ୍ଷ ସଞ୍ଚାଳନ ଫଳରେ ଏହା ସମ୍ଭବ ହୋଇଥାଏ ବୋଲି ଅନୁମାନ କରାଯାଏ । ଉଡ଼ିଲା-ବେଳେ ସାରସ ପକ୍ଷୀର ବେକ ସମ୍ମୁଖକୁ ଓ ଗୋଡ଼ ପଛକୁ ପ୍ରସାରିତ ହୋଇ ରହିଥାଏ । ଭୂମି ଉପରେ ଥିଲାବେଳେ ଓ ଆକାଶମାର୍ଗରେ ଗତିକଲାବେଳେ ସେମାନେ ଏକପ୍ରକାର ଉଚ୍ଚ, ପ୍ରତିଧ୍ୱନନଶୀଳ, ସୁଦୂରବ୍ୟାପୀ ତୂରୀ ପରି ଶବ୍ଦ କରନ୍ତି । ପ୍ରଜନନ ଋତୁରେ ଏବଂ ବେଳେବେଳେ ଅନ୍ୟ ସମୟରେ ମଧ୍ୟ ସାରସଯୋଡ଼ି ଦର୍ଶନୀୟ; ମାତ୍ର ହାସ୍ୟକର ନାଚ-କୁଦରେ ମତ୍ତ ହୋଇଥାନ୍ତି । ମଥା ନତକରି ପରସ୍ପରକୁ ଅଭିବାଦନ କରିବା, ପକ୍ଷ ବିସ୍ତାରିତ କରିବା ଓ ବିଶୃଙ୍ଖଳ ଭାବରେ ନାଚକୁଦ କରିବା ତହିଁର ଅନ୍ତର୍ଗତ । ଶସ୍ୟ, କନ୍ଦ, ଅଙ୍କୁର ଓ ଅନ୍ୟାନ୍ୟ ଉଦ୍ଭିଜ୍ଜ ପଦାର୍ଥ ଏବଂ ପୋକଜୋକ, କମ୍ବୋଜ (mollusc), ବେଙ୍ଗ, ସରୀସୃପ ଓ ବେଳେବେଳେ ମାଛ ସେମାନଙ୍କର ଆହାର ହୋଇଥାଏ । କ୍ଷେତରେ ଅବାଧରେ ପଶିପାରୁଥିବାରୁ ସେମାନେ ସମୟ ସମୟରେ ପ୍ରଭୂତ କ୍ଷତି କରନ୍ତି । ବିଶେଷ କରି ନୂଆ ଲଗାଯାଇଥିବା ଚିନାବାଦାମ ଓ ଡାଲି ଜାତୀୟ ଶସ୍ୟ ଖାଇପକାନ୍ତି । ଜଳପ୍ଲାବିତ ଧାନକ୍ଷେତ ମଝିରେ ବା ଘାସପୂର୍ଣ୍ଣ ବନ୍ଧ ବା ଜଳାଭୂମି ମଝିରେ ଥିବା ଟାପୁରେ ସାରସ ପକ୍ଷୀ ନୀଡ଼ ରଚନାକରେ । ଶର, ନଳ ଓ କୁଟାରେ ପକ୍ଷୀବସା ନିର୍ମିତ ହୋଇଥାଏ । ଏହା ବେଶ୍ ବଡ଼ । ଥରକେ ସାରସ ଦୁଇଟି ଅଣ୍ଡା ଦିଏ । ବର୍ଣ୍ଣ ଫିକା ସବୁଜିଆ ଧଳା ବା ଫିକା-ପାଟଳ ଧଳା । ବେଳେବେଳେ ତା' ଉପରେ ବାଦାମୀ ବା ବାଇଗଣି ରଙ୍ଗର ଛିଟା ବା ଚିହ୍ନ ଥାଏ ।

ଆଉ ଦୁଇ ଜାତି ସାରସ ପକ୍ଷୀ ବହୁସଂଖ୍ୟାରେ ଶୀତଋତୁରେ ଭାରତୀୟ ଉପମହା-ଦେଶକୁ ଆସନ୍ତି । ତାଙ୍କ ଭିତରେ ସାନ ସାରସଟି ହେଉଛି **କେରକେରା** । ଏହାକୁ ଇଂରାଜୀରେ 'ଡେମୋଇସିଲ୍' (Demoisille), ହିନ୍ଦୀରେ କରକରା ଓ କୁଞ୍ଜ କହନ୍ତି ।

ବୈଜ୍ଞାନିକ ନାମ 'ଆନ୍ଥ୍ରୋପଇଡ଼େସ ଭିରଗୋ' (Anthropoides virgo) । ଏହାର ମସ୍ତକ ପରଦ୍ୱାରା ଆବୃତ । କାନ କଡ଼ରେ ଧଳା ଚକଚକ କରୁଥିବା ପକ୍ଷ-ଗୁଚ୍ଛ ରହିଥାଏ । ବେକ ଓ ଗ୍ରୀବ କଳା । ଅନ୍ୟ ଜାତି ସାରସ ପକ୍ଷୀଟି ହେଲା କୁଲଙ୍ଗ । ଏହାକୁ ଇଂରାଜୀରେ 'ସାଧାରଣ ସାରସ' (Common crane) ଓ ହିନ୍ଦୀରେ 'କୁଲଙ୍ଗ' ବୋଲି କହନ୍ତି । ବୈଜ୍ଞାନିକ ନାମ 'ଗ୍ରାସ ଗ୍ରାସ' (Grus grus) । ଏହାର ମସ୍ତକରେ ପର ନଥାଏ ଓ କଳା । ବେକର ପଛ ପାଖରେ ପାର୍ଥକ୍ୟ ପ୍ରକାଶକ ଏକ ଲାଲ ଚିହ୍ନ ପଡ଼ିଥାଏ ।

ଡାହୁକ (Rails) (ବଂଶ ରାଲ୍ଲିଡ଼ି)—(Family Rallidae) ମାନଙ୍କର ଆକାର କ୍ଷୁଦ୍ରରୁ ମଧ୍ୟମ ଧରଣର । ଏମାନେ ଜଳାଭୂମିରେ ଲୁଚିଛପି ବିଚରଣ କରନ୍ତି । ଏମାନଙ୍କର ଲାଞ୍ଜ ଥୁଣ୍ଟା, ପକ୍ଷ ମଣ୍ଡଳାକାର, ଗୋଡ଼ ଓ ପାଦାଙ୍ଗୁଳି ଲମ୍ବା ଓ ପରହୀନ । ଆମର ପରିଚିତ ଡାହୁକ (ବର୍ଣ୍ଣଚିତ୍ର 33)ର ଇଂରାଜୀ ନାମ 'ଧଳାଛାତିଆ ଜଳମୁର୍ଗୀ' (White-breasted waterhen) । ବୈଜ୍ଞାନିକ ନାମ "ଆମାଉଅରନିସ୍ ଫୋହେନିକଉରସ" (Amauornis Phoenicurus) । ହିନ୍ଦୀ ନାମ—ଜଲ ମୁର୍‌ଘି, ଡାଉକ୍ । ଏହା ଜଳାଭୂମିର ଏକ ସାଧାରଣ ପକ୍ଷୀ । ଏହାର ବର୍ଣ୍ଣ ଶିଲେଟ ରଙ୍ଗ ପରି ଧୂସର, ଲାଞ୍ଜ ଥୁଣ୍ଟା ଓ ଗୋଡ଼ ପରହୀନ । ଆକାର ପ୍ରାୟ ତିତ୍ତିର (Grey Partridge) ପରି । ଡାହୁକର ମୁହଁ ଓ ଗ୍ରୀବ ଧଳା ଏବଂ ତାହା ସୁସ୍ପଷ୍ଟ । ଲାଞ୍ଜ ଉପରଆଡ଼କୁ ଟେରଚ୍ଛା ଭାବେ ଠିଆରହିଥାଏ । ଲାଞ୍ଜ ତଳର ବର୍ଣ୍ଣ କଳଙ୍କି ଧରିଥିବା ପରି ଲାଲ ଓ ଉଜ୍ଜ୍ୱଳ । ଡାହୁକ ଜଳ ସମୀପଠାରୁ ଅଭିନ୍ନ । ସାଧାରଣତଃ ଏକାକୀ ବା ଯୋଡ଼ି ଯୋଡ଼ି ହୋଇ ଏମାନେ ଜଳାଭୂମି ଓ ଗାଁ ପୋଖରୀ କଡ଼ରେ ଥିବା ନଳବଣ ଓ ବୁଦା ଭିତରେ ବା ନିକଟରେ ଦେଖାଯାନ୍ତି । ମୌସୁମୀ ବର୍ଷାକାଳରେ ଯେତେବେଳେ ଖାତ ସବୁ ଜଳରେ ଭରିଉଠେ ଓ ବର୍ଷାଜଳରେ ଗୃହଆଡ଼ ଜଳମଗ୍ନ ହୋଇଯାଏ, ସେତେବେଳେ ଡାହୁକ ବିଚରଣ ପାଇଁ ଭୂମି ଆଡ଼କୁ ମାଡ଼ିଆସନ୍ତି । ସେତେବେଳେ ସେମାନେ ସାଧାରଣତଃ ରାସ୍ତାକଡ଼ ବୁଦାଜଙ୍ଗଲ ଭିତରେ ଏବଂ ଗ୍ରାମ୍ୟ ରାସ୍ତାକଡ଼ର ହିଡ଼ରେ ଥିବା ଘାସ ଭିତରେ ଦେଖିବାକୁ ମିଳନ୍ତି । ଡାହୁକ ସତର୍କଭାବେ ଟହଲ ମାରୁଥିବା ସମୟରେ ବା ବୁଦା ଗୁଳ୍ମ ମଧ୍ୟରେ ଗୋପନରେ ବୁଲୁଥିବା ବେଳେ, ତା'ର ଥୁଣ୍ଟା ଓ ଉପର ଆଡ଼କୁ ଠିଆରହିଥିବା ଲାଞ୍ଜ ମୁହୁର୍ମୁହୁଃ ଉପର ତଳ ହୋଇ ଧକେଇ-ଚକେଇ ହେଉଥାଏ ଏବଂ ତା' ସଙ୍ଗେ ସଙ୍ଗେ ଲାଞ୍ଜତଳେ ରହିଥିବା ସୁସ୍ପଷ୍ଟ ଲାଲ ଚିହ୍ନ ଦିଶିଉଠେ । ଏହା ସାଧାରଣତଃ ଗୋଟିଏ ଲାଜକୁଳା ପକ୍ଷୀ । ତା' ଉପରେ କେହି ନଜର ରଖୁ ଏକଥା

ସେ କୌଣସିହେଲେ ସହଜରେ ନାହିଁ । ସାମାନ୍ୟ ସନ୍ଦେହ ମାତ୍ରେ ସେ ପଳାଇ ଲୁଚିଯାଏ; ମାତ୍ର ଯେଉଁଠି ତା' ଉପରେ ଉତ୍ପୀଡ଼ନ ହୁଏନାହିଁ, ସେଠାରେ ସେ ବଗିଚା ଓ ଉନ୍ମୁକ୍ତ ସ୍ଥାନରେ ଆନନ୍ଦରେ ଓ ସ୍ୱଚ୍ଛନ୍ଦରେ ବୁଲୁଥାଏ । କୀଟପତଙ୍ଗ, କମ୍ବୋଜ (mollusc), ଜିଆ, ମଞ୍ଜି ଓ ଅନ୍ୟାନ୍ୟ ଉଦ୍ଭିଦ ପଦାର୍ଥ ତାହୁକର ଆହାର । ବର୍ଷା ଋତୁ ଭିନ୍ନ ବର୍ଷର ଅନ୍ୟ ସମୟରେ ଏହା ନୀରବ । ବର୍ଷା ଋତୁ ଏହାର ପ୍ରଜନନ ସମୟ । ସେତେବେଳେ ଅଣ୍ଡିରା ତାହୁକ ବଡ଼ ରାବ କରନ୍ତି ଓ କଳହପ୍ରିୟ ହୋଇଉଠନ୍ତି । ଏହା ପତ୍ର ଥିବା ବୁଦା ଗଛ ଉପରକୁ ଉଠି ତା' ଉପରେ କଡ଼ରେ ବା ମଝିରେ ବସି ଜୋରରେ ଆସଙ୍ଗ-ଲିପ୍ସୁ ଡାକ ଦିଏ । ଏହି ଡାକ ପକ୍ଷୀମାନଙ୍କର ସାଧାରଣ ଡାକପରି ନୁହେଁ । ଏହି ଶବ୍ଦ କର୍କଶ, ଷଣ୍ଢର ପରି ହୁଙ୍କାର, କାକ ପରି ରାବ ଓ ହାସ୍ୟସୂଚକ ଶବ୍ଦଦ୍ୱାରା ଆରମ୍ଭ ହୁଏ । ଏହା ଏକପ୍ରକାର ଧାତବ ଶବ୍ଦ; ଯଥା—ଝରର—କ୍ୱାକ୍—କ୍ୱାକ୍; ଝରର—କ୍ୱାକ୍—କ୍ୱାକ୍, ଇତ୍ୟାଦି । ଏହି ଶବ୍ଦ ଶୁଣିଲେ ମନେହୁଏ ଯେପରିକି ଗୋଟିଏ ଭାଲୁ ବେଦନାରେ ଚିତ୍କାର କରୁଛି । ଏପରି ରାବ ପରେ ଅଣ୍ଡିରା ତାହୁକ ଏକଭାବରେ କୁକ୍-କୁକ୍-କୁକ୍ ଶବ୍ଦ କରି ଲାଗିଥାଏ । ଏହି ଶବ୍ଦ ଅନେକ ପରିମାଣରେ ଶ୍ରେଷ୍ଠ ସିନ୍ଦୂରମୁଣ୍ଡି ପକ୍ଷୀ (Coppersmith barbet)ର ଶବ୍ଦ ଭଳି; ମାତ୍ର ତା' ଅପେକ୍ଷା ସ୍ୱରରେ ଉଚ୍ଚତର ଓ ଲୟରେ ଦ୍ରୁତତର । ଦୂରରୁ ଏହି ଶବ୍ଦ ଅଟାକଳର ତୈଳଚାଳିତ ଇଞ୍ଜିନ୍‌ର 'ପୁକିଙ୍ଗ' (Pookin) ଶବ୍ଦ ବୋଲି ନିଃସନ୍ଦେହରେ ଭ୍ରମ ହୁଏ । ଆଉ ଆଜିକାଲି ତ ଗାଁଗଣ୍ଡାରେ ସର୍ବତ୍ର ଆଧୁନିକତାର ଚିହ୍ନ ହେଲା ଅଟାକଳ । ଅଣ୍ଡିରା ତାହୁକ ଏକାଦିକ୍ରମେ ପ୍ରାୟ ପନ୍ଦର ମିନିଟ୍ ବା ଅଧିକ ସମୟ ଡାକଦେଲା ପରେ ମଝିରେ ମଝିରେ ଦିନ ସାରା ଡାକ ଦେଉଥାଏ । ବିଶେଷ କରି ଆକାଶ ମେଘୁଆ ଥିଲେ, ସାରା ଦିନ ତା'ର ଡାକ ଶୁଣିବାକୁ ମିଳେ । ସାରା ରାତି ମଧ୍ୟ ତାହୁକ ସେହିପରି ଡାକ ଦିଏ । ଭୂମି ଉପରେ ଗଛଲତା ତଳେ ତାହୁକ ନୀଡ଼ ରଚନାକରେ । କ୍ଷୁଦ୍ର ଶାଖା ପଲ୍ଲବ ଓ ଲତାପତ୍ରରେ ଏହା ତିଆରି ହୋଇଥାଏ । ନୀଡ଼ର ଆକାର କପ୍ ପରି; ମାତ୍ର ଅଗଭୀର । ଜଳ ନିକଟରେ ଘନ ବୁଦାରେ ଭୂମିରୁ ଏକ ବା ଦୁଇ ମିଟର ଉଚ୍ଚତାରେ ମଧ୍ୟ ତାହୁକ ନୀଡ଼ ନିର୍ମାଣ କରିଥାଏ । ଥରକେ ଛ'ରୁ ସାତଟି ଯାଏ ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଦୁଧ-ସର ପରି ହଳଦିଆ ବା ପାଟଳିଆ ଧଳା । ତା' ଉପରେ ଲାଲ ବାଦାମୀ ଛିଟା ବା ଚିହ୍ନ ଥାଏ ।

ତାହୁକ (Rail) ବଂଶର ଆଉ ଏକ ସୁନ୍ଦର ମାତ୍ର କେତେକ ପରିମାଣରେ ପରିପାଟୀହୀନ ପକ୍ଷୀ ହେଲା **କା'ଆମ** (ବର୍ଣ୍ଣଚିତ୍ର 34) । ଏହାର ଇଂରାଜୀ ନାମ 'ବାଇଗଣୀ

କା'ମ (Purple Moorhen); ବୈଜ୍ଞାନିକ ନାମ 'ପୋରଫାଇରିଓ ପୋର-ଫାଇରିଓ' (Porphyrio porphyrio); ହିନ୍ଦୀ ନାମ—କାଇମ୍, ଖା'ଲିମ୍, କାଲିମ୍ । ଓଡ଼ିଆରେ କା'ଆମକୁ କ୍ୟାନ ଓ କଣ୍ଡାନ ମଧ୍ୟ କୁହାଯାଆନ୍ତି । ଏହାର ଆକାର ଗ୍ରାମ୍ୟ କୁକ୍କୁଟୀ ଆକାର ହେବ । ବର୍ଣ୍ଣ ବାଇଗଣୀ ନୀଳ । ପାଦ ଓ ଅଙ୍ଗୁଳି ଲମ୍ବା, ଅନାବୃତ୍ତ ଓ ଲାଲ । ମସ୍ତକର ଭାଗ (Frontal shield-ଭାଲସ୍ଥି ଢାଲିକ) ପରିଷ୍କାର ଓ ଲାଲ । କ୍ଷୁଦ୍ର ଓଜନିଆ ଲାଲ ଥଣ୍ଟ ଧଳ ଆଡ଼କୁ ବିସ୍ତୃତ ହୋଇ ଏହି ଲାଲ ଭାଲାସ୍ଥି ଢାଲିକ ଗଠନ କରିଥାଏ । କା'ଆମର ଲାଞ୍ଜ ଥୁଣ୍ଟା ଓ ଲାଞ୍ଜ ତଳଭାଗ ଧଳା । ପ୍ରତି ପଦକ୍ଷେପରେ ଲାଞ୍ଜ ଉପରକୁ ତଳକୁ ହେବା ଫଳରେ ଏହି ଧଳାବର୍ଣ୍ଣ ଦୃଶ୍ୟ ହୁଏ । କା'-ଆମକୁ ଚିହ୍ନିବା ପାଇଁ ଲାଲ ଭାଲସ୍ଥି ଓ ଲାଞ୍ଜ ତଳର ଧଳାବର୍ଣ୍ଣ ବିଶେଷ ସଙ୍କେତ । ଜଳାଭୂମିର ନଳବଣରେ କା'ଆମମାନେ ଦଳ ଦଳ ହୋଇ ଦେଖାଯାଆନ୍ତି । ବାଳିଆ ଭାବେ ଶର ଭିତରେ ସେମାନେ ଖାଦ୍ୟସଂଗ୍ରହ ପାଇଁ ଛପି ଛପି ବୁଲୁଥାନ୍ତି । ହାତ ଧରାଧରି ହୋଇ ଟଳମଟଳ ହୋଇ ଗ୍ଲାଲେ ଯେପରି ଦେଖାଯାଏ କା'ଆମମାନେ ନଳ ଉପର ଦେଇ ଉଠିବା ଓ ଖସିଲାବେଳେ ସେହିପରି ଦେଖାଯାଏ । ସେମାନେ ଭାସମାନ ଶର ଓ ପଦ୍ମପତ୍ର ଉପରେ ଟହଲ ମାରିଲାବେଳେ ତାହାଙ୍କମାନଙ୍କ ପରି ଥୁଣ୍ଟା ଲାଞ୍ଜ ଉପର ତଳ ଉଠେ ପଡ଼େ । ଭୟର ସୂଚନା ମିଳିଲେ ସେମାନେ ଦୌଡ଼ି ପଳାଇଯାଇ ଲୁଚିଯାଆନ୍ତି । ସେମାନେ ଉଡ଼ିବା ପାଇଁ ପରାଙ୍ମୁଖ ଓ ନିହାତି ଆବଶ୍ୟକ ହେଲେ ଉଡ଼ି-ଆନ୍ତି । ଉଡ଼ିଲାବେଳେ ମନେହୁଏ ସତେ ଯେପରି କଷ୍ଟରେ ଉଡ଼ୁଛନ୍ତି । ଉଡ୍‌ଡ୍ୟନ ମଧ୍ୟ ନିସ୍ତେଜ ଜଣାପଡ଼େ । ଉଡ଼ିଲାବେଳେ ଦୀର୍ଘ ଲମ୍ବା ପାଦ ଦୁଇଟି ପଛ ଆଡ଼କୁ ଝୁଲି ରହିଥାଏ; ମାତ୍ର ଥରେ ଉଡ଼ିବାକୁ ଆରମ୍ଭକଲେ ସେମାନେ ବେଶ୍ ଦ୍ରୁତବେଗରେ ଉଡ଼ି ପାରନ୍ତି । ଧାନ ଓ ଅନ୍ୟାନ୍ୟ ଜଳଜ ଉଦ୍ଭିଦର ଅଙ୍କୁର କା'ଆମମାନଙ୍କର ପ୍ରଧାନ ଖାଦ୍ୟ । ସ୍ଥାନୀୟ ଅଞ୍ଚଳରେ ସେମାନେ ଧାନକ୍ଷେତର କ୍ଷତି କରନ୍ତି । ସେମାନେ ଯେତେ ଧାନ ଖାଆନ୍ତି, ତା' ଅପେକ୍ଷା ଅଧିକ ଧାନଗଛକୁ ତାଙ୍କର ଲମ୍ବା ପାଦରେ ଦଳି ନଷ୍ଟ କରି-ପକାଇଥାନ୍ତି । ସେମାନେ ପୋକଜୋକ ଓ କମ୍ବୋଜ (mollusc—ଗେଣ୍ଡା, ଶାମୁକା ଆଦି) ମଧ୍ୟ ଖାଇଥାନ୍ତି । ଶରବଣ ଭିତରୁ ଉଦନସାରି ବିଶେଷକରି ମେଘୁଆ ପାଗରେ ସେମାନଙ୍କର ନାନା ପ୍ରକାର କର୍କଶ ରାବ ଶୁଣିବାକୁ ମିଳିଥାଏ । ବିଶେଷ କରି ପ୍ରଜନନ ଋତୁରେ ଅଣ୍ଡିରା କା'ଆମମାନେ ବଡ଼ ରାବ କରନ୍ତି । ସେତେବେଳେ ଅଣ୍ଡିରା କା'ଆମ କେତେକ ଅଭିସାର ଖେଳ ପ୍ରଦର୍ଶନ କରିଥାଏ । ତାହା ହେଲା ଥଣ୍ଟରେ ଦଳ ଧରି ଆହ୍ଲାଦକର ଶବ୍ଦ କରିବା ସଙ୍ଗେ ସଙ୍ଗେ ସଙ୍ଗିନୀଆଡ଼କୁ ମୁହଁକରି ମୁଣ୍ଡ ନୁଆଁଇବା ଓ

ଦୁଇଟିଛୁଆ । ପୁରାତନବାଦୀ ପକ୍ଷୀଶିକାରୀମାନେ କା'ଆମକୁ ଏକ 'ଶିକାର ପକ୍ଷୀ' (game bird) ବୋଲି ବିଚାର କରନ୍ତିନାହିଁ; ମାତ୍ର ଗ୍ରାମ୍ୟାଞ୍ଚଳର ଲୋକେ ଏହାର ମାଂସକୁ ଖୁବ୍ ଭଲପାନ୍ତି । ସେଥିପାଇଁ ଗାଁ ଅଞ୍ଚଳର ଶିକାରୀମାନଙ୍କ ଦାଉଯୋଗୁଁ କା'ଆମ ବିଶେଷ ଭାବେ ଉତ୍ପୀଡ଼ିତ ହୁଅନ୍ତି । ପାଣି ଉପରେ ଭାସୁଥିବା ଶରବଣ ଭିତରେ ଜଳଜ ଉଦ୍ଭିଦର ପତ୍ରକୁ ଗୁଣିଣାପରି ଯୋଖି ତା' ଉପରେ ଶର ବା ଧାନପତ୍ର ଗୁଚ୍ଛ ପକାଇ କା' ଆମ ନୀଡ଼ ରଚନାକରେ । ନୀଡ଼ ବିଶେଷ ବଡ଼ । ଥରକେ ସେଥିରେ ଚାରୋଟିରୁ ସାତଟି ଯାଏ ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ହଳଦିଆରୁ ଲାଲ୍‌ଆସିଆ ହଳଦିଆ । ତା' ଉପରେ ଲାଲ୍‌ବାଦାମୀ ଚିହ୍ନ ବା ଛିଟା ଦାଗ ପଡ଼ିଥାଏ ।

ଆମର ହୁକୁନା ଜାତୀୟ (Bustards) ପକ୍ଷୀମାନଙ୍କ ମଧ୍ୟରେ (ଓଟିଡ଼ିଡ଼ି ବଂଶ—Family Otididae) ହୁକୁନା (ବର୍ଣ୍ଣଚିତ୍ର 35) ବୋଧହୁଏ ସବୁଠାରୁ ଚିତ୍ତାକର୍ଷକ ଓ ବୈଶିଷ୍ଟ୍ୟପୂର୍ଣ୍ଣ । ଏହାର ଇଂରାଜୀ ନାମ 'ବୃହତ୍ ଭାରତୀୟ ହୁକୁନା ପକ୍ଷୀ' (Great Indian Bustard) ଓ ବୈଜ୍ଞାନିକ ନାମ 'କୋରିଓଟିସ ନାଇଗ୍ରିସେପ୍‌ସ' (Choriotis nigriceps) । ହିନ୍ଦୀ ନାମ—ଗୁକ୍‌ଦାର, ହୁକ୍‌ନା । ଏହା ଗୋଟିଏ ବଡ଼ ଭୂମିବାସୀ ପକ୍ଷୀ, ଆକାର ପ୍ରାୟ ଶାଗୁଣାର ଆକାର ହେବ । ଠିଆ ହୋଇଥିଲେ ବେଳେ ତଳୁ ମୁଣ୍ଡ ଉପରଯାଏ ଉଚ୍ଚତା ହେବ ପ୍ରାୟ ଏକ ମିଟର । ଏମାନେ ଓଜନରେ ପନ୍ଦର କିଲୋ ଯାଏ ହୁଅନ୍ତି । ହୁକୁନାକୁ ଦେଖିଲେ ମନେହୁଏ ସତେ ଯେପରି ଏହା ଗୋଟିଏ ଛୋଟ ଓଟପକ୍ଷୀ (Ostrich) । ଏହାର ଗୋଡ଼ ମଜଭୁତ୍ ଓ ପରହୀନ ଏବଂ ଦେହ ଗୋଡ଼ ସହିତ ସମକୋଣ ଗଠନକରି ଭୂମି ସହିତ ସମାନ୍ତରାଳ ରେଖାରେ ଅବସ୍ଥାନ କରେ । ଏହି ଲକ୍ଷଣମାନ ହୁକୁନା ପକ୍ଷୀର ବିଶେଷତ୍ୱ । ପିଠିର ପରର ବର୍ଣ୍ଣ ଘନ ଫିକା ପୀତାଭ; ସେଥିରେ ସୂକ୍ଷ୍ମ କୃମିପରି କଳାଗାର ପଡ଼ିଥାଏ । ଦେହର ତଳପାଖ ଧଳା । ଛାତିର ତଳ ଅଂଶରେ ଗଳାହାର ପରି କଳା ବର୍ଣ୍ଣର ଏକ ଓସାରିଆ ଡୋରା ପଡ଼ିଥାଏ । ଧଳା ବେକ, ମୁଣ୍ଡର କଳା ଚୂଡ଼ା ଓ ଓସାରିଆ ପକ୍ଷର ଅଗ୍ରାଂଶ ନିକଟରେ ଥିବା ଧଳା ଚିହ୍ନ, ଯାହା ଉଡ଼ିଲାବେଳେ ସ୍ପଷ୍ଟ ଦେଖାଯାଏ—ଏସବୁ ଲକ୍ଷଣ ଦ୍ୱାରା ହୁକୁନା ପକ୍ଷୀକୁ ଆହୁରି ସୁବିଧାରେ ଚିହ୍ନଟ କରାଯାଇପାରେ । ମାଈ ହୁକୁନା ଅଣ୍ଡିରାଠାରୁ କ୍ଷୁଦ୍ର । ହୁକୁନା ପକ୍ଷୀ ବିକ୍ଷିପ୍ତଭାବେ ଗୋଟି-ଗୋଟିକିଆ ହୋଇ ଦେଖାଯାନ୍ତି । ବେଳେ ବେଳେ ଦୁଇ ତିନୋଟି ପକ୍ଷୀ ଏକସାଙ୍ଗରେ ମାତ୍ର ବିକ୍ଷିପ୍ତଭାବେ ଦେଖାଯାନ୍ତି । ଅତୀତରେ ଗୋଟିଏ ଗୋଟିଏ ଦଳରେ ବିଚ୍ଛିନ୍ନଭାବେ 25-30ଟି ଯାଏ ପକ୍ଷୀ ଦେଖାଯିବାର ଲିପିବଦ୍ଧ ଅଛି । ଖୋଲା ଅର୍ଦ୍ଧ-ମରୁଭୂମି ସମତଳ ଅଞ୍ଚଳ ଏବଂ

ମଝିରେ ମଝିରେ ଅଳ୍ପ ବୁଦାବୁଦିଆ ଘାଟି ଜଙ୍ଗଲ ଓ ବୃକ୍ଷଜମି ଥିବା ଖୋଲା ଶୁଷ୍କ ତୃଣଭୂମି ଏମାନଙ୍କର ପ୍ରିୟ ବାସସ୍ଥଳୀ । ହୁକୁନା ଗୋଟିଏ ଅତ୍ୟନ୍ତ ନିର୍ବୋଧ ଓ ସରଳ ପକ୍ଷୀ । ଏଣୁ ଫନ୍ଦିଫିକର ବିନା ଏହା ପାଖରେ ପହଞ୍ଚିବା ସହଜ ନୁହେଁ । ଅନାଷ୍ଟକାର୍ଯ୍ୟ ବୋଲି ମନେ ହେଉ ନଥିବା ବଳଦ ଗାଡ଼ି ଭିତରେ ବସି ବା ଓଟ ଉପରେ ବା ଓଟ ପଛରେ ଯାଇ ହୁକୁନା ପକ୍ଷୀ ନିକଟରେ ପହଞ୍ଚିହୋଇପାରେ । ଦୁର୍ଭାଗ୍ୟର କଥା ଏହି ଯେ ଏହି ପକ୍ଷୀମାନେ ନିର୍ବୋଧ-ଚିହ୍ନବ ଶିକାରୀମାନଙ୍କର ଜିପ୍ ଗାଡ଼ିକୁ ସନ୍ଦେହ କରନ୍ତି ନାହିଁ । ଫଳରେ ହୁକୁନା ପକ୍ଷୀ ମାରିବା ଆଇନ୍ ଅନୁସାରେ ସମ୍ପୂର୍ଣ୍ଣ ନିଷିଦ୍ଧ ହେଲେ ମଧ୍ୟ, ଗତ କେଇ ବର୍ଷ ଭିତରେ ଏହିପରି ଭାବେ ଚୋର ଶିକାରୀମାନଙ୍କର ଦାଉରେ ସେମାନଙ୍କର ବଂଶ ପ୍ରାୟ ଲୋପ ହେବାକୁ ବସିଛି । ଓଜନଦାର ଜିନିଷକୁ ଉଠାଇବାରେ ଯେପରି ଶ୍ରମ ହୁଏ, ହୁକୁନା ପକ୍ଷୀ ପ୍ରଥମେ ଉଡ଼ିବାକୁ ଉଠିଲାବେଳେ ସେହିପରି ଜଣାପଡ଼େ । ମାତ୍ର ଥରେ ଆକାଶକୁ ଉଠି ଉଡ଼ିବାକୁ ଆରମ୍ଭ କଲେ, ସେ ଦୃଢ଼ଭାବେ ସ୍ଥିର ଓ ଛନ୍ଦମୟ ଭାବରେ ପକ୍ଷ ଦୋହଲାଇ ଥରକେ ବହୁ କିଲୋମିଟର ଦୂର ଉଡ଼ିଯାଏ । ଅବଶ୍ୟ କେବେହେଲେ ସେ ବହୁତ ଉଚ୍ଚରେ ଉଡ଼େ ନାହିଁ । ସାନ ବଡ଼ ଝିଣ୍ଟିକା, କୋଟଲ (beetle), ଶସ୍ୟ ଓ ବିଭିନ୍ନ ପ୍ରକାର ଶସ୍ୟର କୋମଳ ଅଙ୍କୁର ଏମାନଙ୍କର ପ୍ରଧାନ ଖାଦ୍ୟ । ଏଣ୍ଡୁଅ ଜାତୀୟ ସରୀସୃପ, କ୍ଷୁଦ୍ର କ୍ଷୁଦ୍ର ସାପ ଏବଂ ତେନ୍ତୁଳିଆବିଛା ଆଦି ପ୍ରାଣୀ (Centipedes) ମଧ୍ୟ ସେମାନଙ୍କ ପେଟକୁ ଯାଏ । ଭୟଭୀତ ହେଲେ ହୁକୁନା ଏକପ୍ରକାର 'ହୁକ୍' ଶବ୍ଦ କରେ । ଅଣ୍ଡିରା ହୁକୁନା ବହୁପତ୍ନୀକ । ଏକପ୍ରକାର ଅଦ୍ଭୁତ ବିଳାପଧ୍ୱନି ପରି ଶବ୍ଦ କରି ସେ ତାର ପତ୍ନୀମାନଙ୍କ ସମ୍ମୁଖରେ ସଗର୍ବରେ ପଦଚାରଣା କରି ନିଜକୁ ପ୍ରଦର୍ଶନ କରେ । ଏହି ପ୍ରଦର୍ଶନ କେତେକ ପରିମାଣରେ ଅଣ୍ଡିରା ଟାର୍କି ବା ପେରୁ ପକ୍ଷୀ (Turkey)ର ପ୍ରଦର୍ଶନ ପରି । ମାଈ ହୁକୁନା ଥରକେ ଗୋଟିଏ କ୍ୱଚିତ୍ ଦୁଇଟି ଅଣ୍ଡା ଦିଏ । ବିକ୍ଷିପ୍ତ ବୁଦାବୁଦିଆ ଅଞ୍ଚଳରେ ବୁଦାମୂଳ ଆଗ୍ଭୁଡ଼ି ସେହି ଖାତରେ ହୁକୁନା ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ମସିଆ ଫିକା ବାଦାମୀ ବା ଅଳ୍ପ ସବୁଜ-ବାଦାମୀ ରଙ୍ଗର । ତା' ଉପରେ ହାଲୁକା ଭାବେ ଘନ ବାଦାମୀ ବର୍ଣ୍ଣର ଚିହ୍ନ ଥାଏ ।

ବର୍ଗ **କାରାଡ୍ରି ଫରମିସ୍** (Charadri formes)—ଏହା ଗୋଟିଏ ବୃହତ୍ ପକ୍ଷୀବର୍ଗ । ଏଥିରେ ତେରଟି ଭିନ୍ନବିଧ ଜଳଚର ବା ଜଳତଟବାସୀ ପକ୍ଷୀବଂଶ ଅନ୍ତର୍ଭୁକ୍ତ । ଭାରତୀୟ ଉପଦ୍ୱୀପରେ ଏହି ପକ୍ଷୀମାନେ ଆବାସୀ (resident) ବା ପ୍ରବାସୀ ଭାବେ ଉତ୍ତମ ସଂଖ୍ୟାରେ ଦେଖାଯାନ୍ତି । ଏହି ପକ୍ଷୀବଂଶମାନଙ୍କ ମଧ୍ୟରେ ଗୋଟିଏ ହେଲା ଜାକାନିଡ଼ (Jacanidae) । ଦଳଫିମ୍ପି (Jacana or Lilytrot-

ଚିତ୍ର ନଂ 33

ଡାହୁକ

( Whitebreasted Waterhen )

ପୃଷ୍ଠା ନଂ 76 ଦେଖ



ଚିତ୍ର ନଂ 35

ଗୁଡ଼ନା

( Great Indian Bustard)

ପୃଷ୍ଠା ନଂ 79 ଦେଖ





ଚିତ୍ର ନଂ 36
କାଳ ଝୀଲ୍ଲେଇ
( Bronzewinged Jacana )
ପୃଷ୍ଠା ନଂ 81 ଦେଖ

ଚିତ୍ର ନଂ 37

ଟେଣ୍ଟୋଇ

( Redwattled Lapwasing )

ପୃଷ୍ଠା ନଂ 82 ଦେଖ



ଚିତ୍ର ନଂ 39

ଜିରିଆ

( Little Ringed Plover )

ପୃଷ୍ଠା ନଂ 85 ଦେଖ





ଚିତ୍ର ନଂ 40

ଘୁମା ଚଢ଼େଇ

( Stone Curlew or Goggle-Eyed Plover)

ପୃଷ୍ଠା ନଂ 86 ଦେଖ

ଚିତ୍ର ନଂ 41

ମାଛଖିଆ

( Brownheaded Gull )

ପୃଷ୍ଠା ନଂ ୪୪ ଦେଖ






ଚିତ୍ର ନଂ 42

ନୂନ୍ ଚୂନ୍ନ

( Indian Whiskered Tern )

ପୃଷ୍ଠା ନଂ 90 ଦେଖ

ଚିତ୍ର ନଂ 43

ଘଟ ଚଢ଼ିର

( Common Sandgrouse )

ପୃଷ୍ଠା ନଂ 92 ଦେଖ






ଚିତ୍ର ନଂ 44

ହୁରଡ଼ ଚଢ଼େଇ

( Common Green Pigeon)

ପୃଷ୍ଠା ନଂ 93 ଦେଖ



ଚେଟ ନଂ 46
କପୋତ ( Spotted Dove )
ଲଲ କପୋତ ( Red Turtle Dove )

ପୃଷ୍ଠା ନଂ 95 ଦେଖ




ଚିତ୍ର ନଂ 47

ଚନ୍ଦନା

( Ros ringed Parakeet )

ପୃଷ୍ଠା ନଂ 97 ଦେଖ



ଚିତ୍ର ନଂ 48

କୋଇଲ୍

( Koel )

ପୃଷ୍ଠା ନଂ 98 ଦେଖ

ters), ଏହି ବିଚାର । ଦୁଇ ଜାତ ଦଲଫିମ୍ପି ଦେଖାଯାଆନ୍ତି । ସେଥିରୁ ଗୋଟିଏ ହେଲା କାଳି ଝିମ୍ପିଳେଇ (ବର୍ଣ୍ଣିତଚିତ୍ର 36) । ଓଡ଼ିଶାରେ ସ୍ଥାନବିଶେଷରେ ଏହାକୁ ପାଣି ଡାହୁକ ଓ ଦଲଫିମ୍ପି ମଧ୍ୟ କହିଥାନ୍ତି । ଇଂରାଜୀ ନାମର ଆକ୍ଷରିକ ଅର୍ଥ 'ବ୍ରୋଞ୍ଜ ପକ୍ଷ 'ଦଲଫିମ୍ପି.' (Bronzewinged Jacana) । ବୈଜ୍ଞାନିକ ନାମ 'ମେଟୋପୋଡ଼ିଆସ ଇଣ୍ଡିକାସ' (Metopodius indicus) । ଏହା ଗୋଟିଏ ଲମ୍ବାଗୋଡ଼ିଆ ଜଳାଭୂମି ପକ୍ଷୀ । ଆକାରରେ ତିତ୍ତିର (Grey partirdge) ଠାରୁ ଟିକେ ବଡ଼ ହେବ । ସାଧାରଣ ଆକୃତି କା'ଆମ (moor hen) ପରି । ଏହାର ମୁଣ୍ଡ, ବେକ ଓ ଗ୍ରୀବା ଚକ୍‌ଚକ୍ କଳା; ପିଠି ଓ ପକ୍ଷ ଧାତବ ସବୁଜଆସିଆ ବ୍ରୋଞ୍ଜ ବର୍ଣ୍ଣର ଏବଂ ଥୁଣ୍ଟା ଲଞ୍ଜ ଲାଲ-ବାଦାମୀ । ଆଖିର ପଛ ଆଡ଼୍ ବେକର ପଛ ପର୍ଯ୍ୟନ୍ତ ଏକ ଓସାରିଆ ଧଳା ଗାର ବିସ୍ତୃତ ଓ ସୁସ୍ପଷ୍ଟ । କାଳି ଝିମ୍ପିଳେଇ ପକ୍ଷୀ ଆଂଶିକ ଭାବେ ଆଢ଼ୁଆଳରେ ରହିଥିଲେ ମଧ୍ୟ ଆଖି ପଛର ଏହି ଗାରଯୋଗୁ ତାକୁ ଚହ୍ନି ହୋଇଯାଏ । ଅପ୍ରାପ୍ତ ବୟସ୍କ ଦଲଫିମ୍ପି ସାଧାରଣତଃ ଧଳାସିଆ, ଲାଲ ଆସିଆ ବା ବାଦାମୀ । ସବୁପ୍ରକାର ଦଲଫିମ୍ପି ମାନଙ୍କର ଗୋଟିଏ ବିଶେଷ ଲକ୍ଷଣ ହେଲା ସେମାନଙ୍କର ପାଦାଙ୍ଗୁଳି ବୁଡ଼ିଆଣୀର ପାଦପରି ଅତ୍ୟଧିକ ଲମ୍ବା । ଏହା ଫଳରେ ଦଳରେ ଆବୃତ ପୋଖରୀ ଓ ଦହରେ ପ୍ରଶଂସନୀୟ ଭାବେ ଜୀବନ ବିତାଇବା ସେମାନଙ୍କ ପକ୍ଷରେ ସମ୍ଭବ ହୋଇଅଛି । ଜଳବାସୀ କୀଟ ଓ କମ୍ବୋଜ (mollusc), ଜଳଜ ଉଦ୍ଭିଦର ମଞ୍ଜି ଓ ମୂଳ ଏବଂ ଅନ୍ୟାନ୍ୟ ଉଦ୍ଭିଜ୍ଜ ପଦାର୍ଥ ଏମାନଙ୍କର ଖାଦ୍ୟ । ଖାଦ୍ୟ ସଂଗ୍ରହ ପାଇଁ ଦଲଫିମ୍ପି ପାଣି ଉପରେ ଭାସୁଥିବା ପତ୍ର ଓ କାଣ୍ଡ ଉପରେ ଲଘୁପଦରେ ଦୌଡ଼ାଦୌଡ଼ି କରେ । ପଦାଙ୍ଗୁଳି ଅତି ଲମ୍ବା ହୋଇ-ଥିବାରୁ ସେ ତା' ସାହାଯ୍ୟରେ ଦେହର ଓଜନକୁ ବଣ୍ଟନ କରିଦେଇପାରେ । ଯେଉଁ ଅଞ୍ଚଳରେ ସେମାନଙ୍କ ଉପରେ ଅତ୍ୟାଚାର କରା ନ ଯାଏ, ସେଠାରେ ସେମାନେ ଶାନ୍ତ ଓ ମନୁଷ୍ୟକୁ ଭୟ କରନ୍ତିନାହିଁ । ଗାଁ ପୋଖରୀମାନଙ୍କରେ ସ୍ତ୍ରୀଲୋକେ ପରସ୍ପର ସହିତ କଥା ହୋଇ ମାଠିଆ ବୁଡ଼ାଇ ପାଣି ନେଉଥିବେ ବା ଧୋବା ତାର ଅଭ୍ୟସ୍ତ ପଥର ଉପରେ ଶବ୍ଦକରି ଲୁଗା କାଚୁଥିବ—ସାଧାରଣତଃ ଏପରି ପରିସ୍ଥିତିରେ ଅଦୂରରେ ଦଲଫିମ୍ପି ଦେଖିବାକୁ ମିଳନ୍ତି । ଆମ ଦେଶରେ ଦେଖାଯାଉଥିବା ଦୁଇଜାତି ଦଲଫିମ୍ପି ଉଭୟ ଭଲ ବୁଡ଼ାଳି ଓ ଆବଶ୍ୟକ ହେଲେ ପହଁରି ପାରନ୍ତି ମଧ୍ୟ; ମାତ୍ର ସେମାନଙ୍କର ଉଡ଼ା ଦୁର୍ବଳ । ଉଡ଼ିଲାବେଳେ ସେମାନେ ଦ୍ରୁତବେଗରେ ପକ୍ଷ ସ୍ପନ୍ଦିତ କରନ୍ତି । ସେତେବେଳେ ବେକ ସମ୍ମୁଖକୁ ପ୍ରସାରିତ ରହେ ଓ ବାୟୁ ପ୍ରତିରୋଧକ ଗୋଡ଼ ପଛ ଆଡ଼େ ଝୋଲିରହିଥାଏ । କାଳି ଝିମ୍ପିଳେଇର ରାବ ଏକ ପ୍ରକାର କର୍କଶ ସଁ ସଁଇଆ ନାକ ଓ

ଶୁଣିବାକୁ 'ସିକ୍-ସିକ୍-ସିକ୍......' ପରି । ପ୍ରଜନନ ଋତୁରେ ଦଳ୍‌ଫିମ୍ପ ଭାରି ଶବ୍ଦ କରନ୍ତି ଓ କଳହ କରନ୍ତି । ଆହୁରି ମଧ୍ୟ, ସେମାନେ ଏକ ପ୍ରକାର ଅଘାଘ କର୍କଶ ଘଡ଼ଘଡ଼ିଆ (grunt) ଶବ୍ଦ କରିଥାନ୍ତି ।

ଆମର ଅନ୍ୟ ସାଧାରଣ ଆବାସୀ ଦଲଫିମ୍ପି ଟି ହେଲା **ପାନ୍‌ରି ଝିଁଲ୍ଲେଇ** । ଇଂରାଜୀରେ ଏହାକୁ 'ଫେଜେଣ୍ଟ ଲାଞ୍ଜିଆ ଦଲଫିମ୍ପି' (Pheasant-tailed Jacana) କହନ୍ତି । ବୈଜ୍ଞାନିକ ନାମ 'ହାଇଡ୍ରୋଫାସିଆନାସ ଚିରୁରଗାସ' (Hydrophasianus chirurgus) । ଏହାର ପ୍ରକୃତି ଓ ବାସ କାଳିଝିଁଲ୍ଲେଇ ପରି ଏବଂ ଦୁଇଟି ଯାକ ଦଲଫିମ୍ପି ଏକାଠି ଏକା ପୋଖରୀରେ ଦେଖିବାକୁ ମିଳନ୍ତି । ପାନ୍‌ରି ଝିଁଲ୍ଲେଇ ପକ୍ଷୀର ବର୍ଣ୍ଣ ସୁସ୍ପଷ୍ଟ କଳା ଓ ଚକୋଲେଟ୍-ବାଦାମୀ ଏବଂ ଲାଞ୍ଜ ଲମ୍ବା, ଗୋଜିଆ, ଦାଆ-ଆକାର ଓ ଫେଜାଣ୍ଟ ମୁରଗୀ (pheasant) ର ଲାଞ୍ଜ ପରି । ଉଭୟ ମାଈ କାଳି ଝିଁଲ୍ଲେଇ ଓ ପାନ୍‌ରି ଝିଁଲ୍ଲେଇ ଏକାଧିକ ପତି ଗ୍ରହଣ କରନ୍ତି । ମାଈ ଦଲଫିମ୍ପି ଗୋଟିଏ ଅଣ୍ଡିରା ସହିତ ପ୍ରଜନନ ପରେ ଅଣ୍ଡା ଦେଇ ଚାଲିଯାଏ । ଅଣ୍ଡିରା ପକ୍ଷୀ ଅଣ୍ଡା ଉଷୁମାଇ ଫୁଟାଏ ଓ ଶାବକ ପ୍ରତିପାଳନ କରେ । ମାଈ ପକ୍ଷୀ ପୁଣି ଅନ୍ୟ ଏକ ଅଣ୍ଡିରା ପକ୍ଷୀ ସହିତ ସହବାସ କରି ଅଣ୍ଡା ଦେଇ ଚାଲିଯାଏ । ଏହିପରି ଭାବେ ସେ ପରେ ପରେ ବହୁ ପତି ଗ୍ରହଣ କରିଥାଏ । ଦଳୁଆ ଉଦ୍ଭିଦର କାଣ୍ଡକୁ ମୋଡ଼ି ଦଲଫିମ୍ପି କ୍ଷୁଦ୍ର ନୀଡ଼ ରଚନା କରେ । ନୀଡ଼ ପାଣି ସିଙ୍ଗଡ଼ା ବା ବଳାତ ଦଳର ଭାସମାନ ପତ୍ର ଉପରେ ରହିଥାଏ । କାଳି ଝିଁଲ୍ଲେଇ ପକ୍ଷୀ ଥରକେ ସାଧାରଣତଃ ଚାରିଟି ଅଣ୍ଡା ଦିଏ । ଅଣ୍ଡା ଦେଖିବାକୁ ସୁନ୍ଦର ଓ ବ୍ରୋଞ୍ଜ-ବାଦାମୀ ରଙ୍ଗର । ତା ଉପରେ ଆବୁରୁ ଜାବୁରୁ ହୋଇ କଳାରଙ୍ଗର ଜାଲିଜାଲିଆ ଚିହ୍ନ ଥାଏ । ପାନ୍‌ରି ଝିଁଲ୍ଲେଇ ପକ୍ଷୀର ଅଣ୍ଡା ମସୃଣ, ସବୁଜ ଆସିଆ ବ୍ରୋଞ୍ଜ ବା ସବୁଜ ବାଦାମୀ ଓ ତା' ଉପରେ କୌଣସି ଚିହ୍ନ ନଥାଏ ।

ଟିଟ୍ଟିଭ (Plover), ଟୁ' ଚଢ଼େଇ (Sand piper) ଆଦି ପକ୍ଷୀ ଚାରାଡ୍ରିଡ଼ି (Charadriidae) ବଂଶ ଅନ୍ତର୍ଭୁକ୍ତ । ସେମାନଙ୍କ ମଧ୍ୟରୁ ଅନେକ ଏ ଦେଶର ଆବାସୀ ପକ୍ଷୀ ଓ ଆଉ କେତେକ ଶୀତକାଳରେ ପ୍ରଧାନତଃ ଉତ୍ତରାଞ୍ଚଳରୁ ଆସିଥାନ୍ତି । ଆମର ଆବାସୀ ଟିଟ୍ଟିଭ ପକ୍ଷୀମାନଙ୍କ ମଧ୍ୟରେ ସବୁଠାରୁ ସାଧାରଣ ଓ ପରିଚିତ ହେଲା **ଟେଣ୍ଟେଇ** (ବର୍ଣ୍ଣଚିତ୍ର 37) । ଓଡ଼ିଶାର ବିଭିନ୍ନ ସ୍ଥାନରେ ଏହା ଟେଁଟେଁଇ, ଟିଥେଇ ଟିଟ୍ଟିଭ, ଟେଥେଇ ଆଦି ନାମରେ ପରିଚିତ । ଇଂରାଜୀ ନାମ Red-wattled lapwing. ବୈଜ୍ଞାନିକ ନାମ 'ଭେନେଲସ ଇଣ୍ଡିକାସ' (Vanellus indicus) । ହିନ୍ଦୀ ନାମ – ଟିଟିହ, ଟିଟୁଡ଼ି । ଏହାର ଆକାର ତିତିର (grey Partridge) ର

ଆକାର ପରି । ଉପର ପାଖର ବର୍ଣ୍ଣ ବ୍ରୋଞ୍ଜ-ବାଦାମୀ, ତଳ ପାଖ ଧଳା; ଗୋଡ, ମୁଣ୍ଡ ଓ ବେକ କଳା ଏବଂ ଆଖି ଆଗକୁ ଗାଢ଼ ଲାଲ ରଙ୍ଗର ଏକ ମାଂସଳ ଖଣ୍ଡ ଅବସ୍ଥିତ । ଗୋଟିଏ ଓସାରିଆ ଧଳା ପଟି ଆଖି ପଛରୁ ଆରମ୍ଭ ହୋଇ ବେକର ଦୁଇ କଡ଼ରେ ଯାଇ ଦେହ ତଳ ପାଖର ଧଳା ସହିତ ମିଶିଛି । ଏମାନେ ଯୋଡ଼ି ଯୋଡ଼ି ଅଥବା ଭିନ୍ନ-ଗ୍ରୁପ୍‌ରେ ଛିଟି କରି ବିକ୍ଷିପ୍ତ ଭାବେ ଖୋଲା ଅଞ୍ଚଳରେ କର୍ଷିତ ଭୂମି ଓ ଗୋଚାରଣ ଭୂମିରେ ବୁଲୁଥିବାର ଦେଖାଯାନ୍ତି । ସାଧାରଣତଃ ଆର୍ଦ୍ର ଅଞ୍ଚଳ ଓ ବିଶେଷକରି ପୋଖରୀ, ଗାଡ଼ିଆ ଥିବା ସ୍ଥାନର ପାଖ ଆଖରେ ଦେଖାଯାନ୍ତି । ଅଣ୍ଟାକୁ ଭୂମି ସହିତ ସିଧା ଠିଆ ବାଗରେ ରଖି ଏମାନେ ସବେଗରେ ଅଥଚ ଅଳ୍ପ ଦଉଡ଼ି ଦଉଡ଼ି ଝୁକ୍‌ରି ଝୁକ୍‌ରି ଝୁଙ୍କନ୍ତି । ଏଭଳି ଖାଦ୍ୟ ସଂଗ୍ରହ ଟିଟିଭି ପକ୍ଷୀମାନଙ୍କର ବିଶେଷ ଗୁଣ । ଏମାନେ ଦିନ ଓ ରାତି ଉଭୟ ସମୟରେ ଜାଗ୍ରତ ଓ ସକ୍ରିୟ । ଟିଟିଭିମାନେ ସେମାନଙ୍କ ଅଞ୍ଚଳ ପ୍ରତି ଅଭୂତ ଭାବେ ସତର୍କ ଦୃଷ୍ଟି ରଖିଥାନ୍ତି । ମନୁଷ୍ୟ ଅବା ଶ୍ୱାପଦ ହେଉ, କୌଣସି ଅନାହୂତ ସନ୍ଦେହଜନକ ପ୍ରାଣୀ ତାଙ୍କ ଇଲାକାରେ ପ୍ରବେଶକଲେ ଟିଟିଭି ଉତ୍ତେଜିତ ଓ ଉନ୍ମତ୍ତ ଭାବେ ରାବକରେ । ଏହି ଧ୍ୱନି—'ଡିଡ୍-ଇ-ଡୁ-ଇଟ୍ ବା 'ପିଟି-ଟୁ-ଡୁ-ଇଟ୍'—ଆମର ଅତି ପରିଚିତ । ପ୍ରୟୋଜନ ଓ ଉତ୍ତେଜନାର ହେତୁ ଅନୁସାରେ ଏହି ରାବ କେବଳ ଥରେ, ଦୁଇଥର ବା ବାରମ୍ବାର ଉନ୍ମତ୍ତ ବା ଧୀରଭାବେ ଧ୍ୱନିତ ହୋଇଥାଏ । ନୀଡ଼ ବା ଶାବକ ଆକ୍ରାନ୍ତ ହେବାର ଆଶଙ୍କା ହେଲେ ବିଚଳିତ ବାପ ମା' ଉନ୍ମାଦଭାବେ ଚିତ୍କାର କରି ମୁଣ୍ଡ ଉପରେ ଉଡ଼ି ବୁଲନ୍ତି ଏବଂ ଅନାହୂତ ପ୍ରାଣୀ ଉପରକୁ ଝାମ୍ପ ମାରନ୍ତି ଯେପରି ତାକୁ ଆଘାତ କରିବେ । କୀଟ ପତଙ୍ଗ, କୋଟଳି ଶୂକ (grub) ଓ କମ୍ବୋଜ (mollusce) ଟିଟିଭିମାନଙ୍କର ଆହାର । ପକ୍ଷର ବାରମ୍ବାର ସଞ୍ଚାଳନ ଫଳରେ ଏହା ଉଡ଼ିଥାଏ ଓ ଏହାର ଉଡ଼ା ଅଚଞ୍ଚଳ । ଖଣ୍ଡେ ବାଟ ଉଡ଼ି ଟିଟିଭି ଓହ୍ଲାଇ ପଡ଼େ ଓ ସାଧାରଣତଃ ଭୂଇଁ ଛୁଇଁବା ସାଙ୍ଗେ ସାଙ୍ଗେ ଅଳ୍ପ କେତେ ପାଦ ଦୌଡ଼ି ଯାଏ । ଭୂମିରେ ଛୋଟ ଖାତରେ ଏହା ଅଣ୍ଡା ଦିଏ । ଖାତରେ କୁଟା କାଠି ଦିଆଯାଇ ନ ଥାଏ ଓ ବେଳେବେଳେ କଡ଼ରେ ଛୋଟ ଛୋଟ ପଥର ଥାଏ । ମୁଖ୍ୟତଃ ଶୁଖିଲା ଗ୍ରାମ୍ୟ ପୋଖରୀ ଏବଂ ସୂର୍ଯ୍ୟତାପରେ ଶୁଖି ରହିଥିବା ଅନାବାଦୀ ଭୂମିରେ ସେମାନେ ଅଣ୍ଡା ଦେବାକୁ ଭଲପାନ୍ତି । ବେଳେବେଳେ କେତେକ ଅସାଧାରଣ ସ୍ଥାନରେ ମଧ୍ୟ ସେମାନଙ୍କର 'ନୀଡ଼' ଦେଖିବାକୁ ମିଳିଅଛି । ଯଥା—ବଙ୍ଗଳା ଘରର କଂକ୍ରିଟ ଛାତର ଚଟାଣ ଏବଂ ନିୟମିତ ଭାବେ ବ୍ୟବହୃତ ରେଳ ସାଇଡ଼ିଙ୍ଗରେ ଦୁଇଟି ରେଳ ଧାରଣାର ମଧ୍ୟବର୍ତ୍ତୀ ସ୍ଥାନରେ ବିଛାହୋଇଥିବା ପଥର ଉପରେ । ଟିଟିଭି

ଥରକେ ତନି ଗୁଟିଏ ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଧୂସର-ବାଦାମୀ ଓ ତା’ ଉପରେ କଳା ରଙ୍ଗର ଛୁପି ଛୁପିକା ଚିହ୍ନ ଥାଏ । ଅଣ୍ଡା ଏବଂ ନବଜାତ ପକ୍ଷିଶାବକ ବର୍ଣ୍ଣ ଏପରି ନିଖୁଣ ଭାବେ ପରିପାର୍ଶ୍ୱ ସହିତ ମିଶିଯାଏ ଯେ, ଆଖି ଆଗରେ ଥିଲେ ମଧ୍ୟ ଆଦୌ ଜାଣି ହୁଏନାହିଁ ।

**ଗୁ ଚଢ଼େଇ** (ବର୍ଣ୍ଣ ଚିତ୍ର 38)—ଏହାର ଇଂରାଜୀ ନାମ ‘ସାଧାରଣ ଗୁ’ ଚଢ଼େଇ’ (Common Sandpiper); ବୈଜ୍ଞାନିକ ନାମ—‘ଟ୍ରିଙ୍ଗା ହାଇପୋଲିଉକସ’ (Tringa hypoleucos) । ଅନେକଗୁଡ଼ିଏ ନଗ୍ନପାଦ ଓ ସୂକ୍ଷ୍ମଚଞ୍ଚୁ ବିଶିଷ୍ଟ ଜଳାଭୂମି ଓ ତୀରବାସୀ ପକ୍ଷୀ ଦେଖାଯାନ୍ତି, ସେମାନଙ୍କୁ ସାଧାରଣ ଭାଷାରେ ଗୁ’ ଚଢ଼େଇ (‘snippet’) ବୋଲି କୁହାଯାଏ । ଆମର ସାଧାରଣ ଗୁ’ ଚଢ଼େଇ ତନ୍ମଧ୍ୟରୁ ଗୋଟିଏ । ଏହାର ଆକାର ପ୍ରାୟ ଘୁଣ୍ଟୁଡ଼ି ଚଢ଼େଇ (quail)ର ଆକାର ପରି । ପିଠି ପାଖର ବର୍ଣ୍ଣ ଧୂସରିଆ ସବୁଜ-ବାଦାମୀ, ତଳ ପାଖ ଧଳା, ଗୁନ୍ଥର କଡ଼ ମସିଆ ଶ୍ୟାମଳ ଏବଂ ବେକର ଅଗ୍ରଭାଗରେ କେତୋଟି କଳା ରେଖା ପଡ଼ିଥାଏ । ଉଡ଼ୁଥିଲାବେଳେ ଏହାର ବାଦାମୀ ଲାଞ୍ଜ (କେବଳ ବାହାର ଆଡ଼କୁ କେତୋଟି ଧଳା ପର ଥାଏ) ଓ ବାଦାମୀ ଲାଞ୍ଜ ତଳ ଏବଂ ଡେଣାରେ ଥିବା ଧଳା ରେଖାଦ୍ୱାରା ଏହାକୁ ‘ଚୂପକା’ (wood sandpiper) ଚଢ଼େଇଠାରୁ ବାରି ହୁଏ । ଗୁ’ ଚଢ଼େଇ ଓ ଚୂପକା (ଅନ୍ୟ ଏକ ଜାତି ଗୁ’ ଚଢ଼େଇ) ଉଭୟ ସମଭାବରେ ସାଧାରଣ ଭାବେ ଦେଖିବାକୁ ମିଳିଥାନ୍ତି । ଶୀତକାଳରେ ଆମ ଦେଶକୁ ପରିବ୍ରଜନରେ ଯେତେ ପକ୍ଷୀ ଆସନ୍ତି, ସେମାନଙ୍କ ମଧ୍ୟରେ ସାଧାରଣ ଗୁ’ ଚଢ଼େଇ ପହିଲ ଆସେ ଓ ଡେରିରେ ଯାଏ । ଉତ୍ତରାଞ୍ଚଳରେ ଏମାନଙ୍କର ନିକଟତମ ପ୍ରଜନନ କ୍ଷେତ୍ର ହେଲି କାଶ୍ମୀର ଓ ଘରୱାଲ । କେତେକ ପ୍ରଜନନ ନ କରୁଥିବା (non-breeding) ସାଧାରଣ ଗୁ’ ଚଢ଼େଇ ନ ବାହୁଡ଼ି ସାରାବର୍ଷଟି ଆମ ଦେଶର ସମତଳ ଭୂମିରେ କଟାଇ ଦେଇଥାନ୍ତି । ଚୂପକା ଚଢ଼େଇ ଦଳ ଦଳ ହୋଇ ରହନ୍ତି; ମାତ୍ର ଗୁ’ ଚଢ଼େଇ କ୍ୱଚିତ୍ ଦଳ ଦଳ ହୋଇ ଦେଖାଯାନ୍ତି । ଗୁ’ ଚଢ଼େଇ ଏକାକୀ ପାଣି କଡ଼ରେ ଲାଞ୍ଜ ଅଂଶକୁ ପ୍ରବଳ ଭାବରେ ଆନ୍ଦୋଳିତ କରି, ମଝେ ମଝେ ମୁଣ୍ଡ ଓ ବେକକୁ ଫୁଲାଇ ଅକ୍ଳାନ୍ତ ଭାବେ ଦୌଡ଼ି ବୁଲୁଥିବାର ସାଧାରଣତଃ ଦେଖିବାକୁ ମିଳେ । ହୁରୁଡ଼ିଲେ ସେ ଦେହକୁ ‘କାଠ’ କରି ଦ୍ରୁତ ପକ୍ଷସଞ୍ଚାଳନଦ୍ୱାରା ପାଣିର ଅଳ୍ପ ଉପରେ କର୍କଶ ପେଁ କାଳିଆ ‘ଟି-ଟି-ଟି’ ଶବ୍ଦ କରି ଉଡ଼ିଯାଏ । ଏଭଳିଭାବେ ଉଡ଼ିବା ଗୁ’ ଚଢ଼େଇର ବିଶେଷତ୍ୱ । ସ୍ୱଚ୍ଛନ୍ଦରେ ଥିଲାବେଳେ ସେ ସୁନ୍ଦର ପେଁ କାଳିଆ ସ୍ୱରରେ କେତେଥର ‘ହୁଇଟ, ହୁଇଟ୍’ ଧ୍ୱନି କରିଥାଏ । ଗୁ’ ଚଢ଼େଇ ନିର୍ଦ୍ଦିଷ୍ଟ

ଅଞ୍ଚଳରେ ଦ୍ୱନ୍ଦ୍ୱ ପରେ ଧନ ଖାଦ୍ୟ ସଂଗ୍ରହ କରୁଥିବାର ଦେଖିବାକୁ ମିଳେ । ଅର୍ଥାତ୍ ପ୍ରତ୍ୟେକ ଗୃ' ଚଢ଼େଇ ତା' ଇଲାକାରେ ଚରେ । ପୋକ ଜୋକ, ଛୋଟ ଛୋଟ କମ୍ବୋଜ (mollusc) ଆଦି ଗୃ' ଚଢ଼େଇମାନଙ୍କର ଖାଦ୍ୟ । ଏସବୁକୁ ସେମାନେ ପାଣିକୂଳରେ ଝୁଙ୍କନ୍ତି । କଙ୍କରମୟ ତଟ ବା ପ୍ରବହମାନ ନଦୀ ମଧ୍ୟରେ ଥିବା ଟାପୁରେ ଭୂମିକୁ ଉନ୍ମୁକ୍ତ କରି ସାମାନ୍ୟ ଖାଲୁଆ କରି ସେଥିରେ ପଥ ଦେଇ ଗୃ' ଚଢ଼େଇ ନୀଡ଼ ରଚନା କରେ । ସାଧାରଣତଃ ଥରକେ ସେ ଗୃରୋଟି ଅଣ୍ଡା ଦିଏ । ଅଣ୍ଡା ହଳଦିଆ-କଷା ବା ପଥର ବର୍ଣ୍ଣ ହୋଇଥାଏ । ତା' ଉପରେ ଲାଲ୍-ବାଦାମୀ ରଙ୍ଗର ଛିଟା ଓ ଗ୍ରୁପ ଥାଏ ।

**ଚୂପ୍‌କା**—ଏହାର ଇଂରାଜି ନାମ 'କାଠିଆ ଗୃ' ଚଢ଼େଇ' (Wood sand piper) ବା 'ଦାଗ ଦାଗିଆ ଗୃ' ଚଢ଼େଇ' (Spotted sand piper)। ବୈଜ୍ଞାନିକ ନାମ 'ଟ୍ରିଙ୍ଗା ଗ୍ଲାରିଓଲା' (Tringa glareola) । ଶୀତ ଋତୁରେ ଆମ ଦେଶରେ ଏହା ଏକ ସାଧାରଣ ପରିବ୍ରାଜୀ ପକ୍ଷୀ । ଏମାନେ ବହୁଦୂର ଉତ୍ତରାଞ୍ଚଳରୁ-ସାଇବେରିଆରୁ ଆସିଥାନ୍ତି । ଏମାନେ ଦଳବଦ୍ଧଭାବେ ଖାଦ୍ୟ ସଂଗ୍ରହ କରନ୍ତି । ଉଡ଼ନ୍ତ-ବେଳେ ଏମାନଙ୍କର ଧଳା ପିଠି ଓ ଲାଞ୍ଜ ଦେଖାଯାଏ । ଉଡ଼ିଗଲାବେଳେ 'ଚଫ୍-ଚଫ୍-ଚଫ୍-ଚଫ୍' ଶବ୍ଦ ମଧ୍ୟ କରନ୍ତି । ଏହି ବର୍ଣ୍ଣ ଓ ଶବ୍ଦଦ୍ୱାରା ଏମାନଙ୍କୁ ଅନ୍ୟ ଗୃ' ଚଢ଼େଇମାନଙ୍କଠାରୁ ଚହ୍ନି ହୁଏ ।

**ଜିରିଆ** (ବର୍ଣ୍ଣଚିତ୍ର 39)—ଏହାର ଇଂରାଜି ନାମ 'ଛୋଟ ମୁଦିଆ ଟିଟ୍‌ଟିଭ' (Little Ringed Plover) । ବୈଜ୍ଞାନିକ ନାମ 'ଚରାଡ୍ରିଆସ ଡୁବିଆସ' (Charadrius dubius) । ହିନ୍ଦୀ ନାମ ଜିରିଆ, ମେରିଓ୍ୟା । ଏହା ପୁଣ୍ଡୁକି ଚଢ଼େଇ (quail) ଠାରୁ ସାମାନ୍ୟ ଛୋଟ । ଏହା ଟିଟ୍‌ଟିଭ ପକ୍ଷୀ (Plover)ର ଏକ ପ୍ରତିରୂପ (typical) । କାରଣ ଏହାର ପିଠି ପାଖର ବର୍ଣ୍ଣ ବାଲିଆ-ବାଦାମୀ ଓ ତଳପାଖ ଧଳା; ମୁଣ୍ଡ ବଡ଼ ଓ ଗୋଲାକାର; ପାଦ ଲମ୍ବା ଓ ଅନାବୃତ ଏବଂ ଅଣ୍ଟା ପାଖଥଣ୍ଟ ପରି ଛୋଟ ଓ ମଜବୁତ୍ । ଜିରିଆର ଲଲାଟ (fore head) ଧଳା; ମସ୍ତକାଗ୍ର (fore crown), କାନକୁ ଢାଙ୍କିଥିବା ପର ଓ ଆଖି ଗୃରିପାଖ କଳା । ବେକର ପୂରା ଗୃରିପଟେ କଳାରଙ୍ଗର ପଟି ଥାଏ । ଏହା ପଶ୍ଚାତ୍ ଗଳାବନ୍ଧ (hind collar)ର ଧଳା ଅଂଶକୁ ପିଠି ଉପରର ବାଦାମୀ ବର୍ଣ୍ଣଠାରୁ ପୃଥକ୍ କରିଥାଏ । ଠିକ୍ ଜିରିଆ ପକ୍ଷୀ ପରି ଆଉ ଗୋଟିଏ ଟିଟ୍‌ଟିଭ ପକ୍ଷୀ ଅଛି । ତାକୁ 'କେଣ୍ଟିଆ ଟିଟ୍‌ଟିଭ' (Kentish Plover) କହନ୍ତି । ଏହାର ବୈଜ୍ଞାନିକ ନାମ 'ଚରାଡ୍ରିଆସ ଆଲେକଜାଣ୍ଡ୍ରିନାସ'

(Charadrius alexandrinus) । କିରଆ ଉଡ଼ିଲାବେଳେ ତା' ପକ୍ଷରେ ଧଳା ଶଲାକା ଚିହ୍ନ ଦେଖିବାକୁ ମିଳେନାହିଁ; ମାତ୍ର କେଣ୍ଟିଆ ଟିଟ୍ଟିଭ ପକ୍ଷରେ ଏହି ଧଳା ଗାର ଥାଏ । ପକ୍ଷର ଏହି ଚିହ୍ନକୁ ନଦ୍ୟା ନ କଲେ କେଣ୍ଟିଆ ଟିଟ୍ଟିଭକୁ କିରଆ ବୋଲି ଭ୍ରମ ହେବା ସହଜ । ସନ୍ତସନ୍ତିଆ ପୋଖରୀ କୂଳ, ନଦୀ ବନ୍ଧ ଓ କୂଆଁରିଆ କାଦୁଆ ଭୂମିରେ ଯୋଡ଼ ଯୋଡ଼ ହୋଇ ଅଥବା ଛୋଟ ଛୋଟ ଦଳରେ, ମାତ୍ର ବିକ୍ଷିପ୍ତ ଭାବେ ଏମାନେ ବୁଲୁଥିବାର ଦେଖାଯାନ୍ତି । କ୍ଷୁଦ୍ର ଓ ଦ୍ରୁତ ପଦକ୍ଷେପରେ ଉଦ୍ୟମ ସହକାରେ ସେମାନେ ଭୂମିରେ ଦୌଡ଼ି ବୁଲନ୍ତି ଓ ହଠାତ୍ ଅଟକି ଯାଇ ଏଠା ସେଠା ଠୁଙ୍କି ପକାନ୍ତି । ଆଉ ତା' ସହିତ ଚେଶ୍ମୋଇମାନଙ୍କର ବିଶେଷ ଲକ୍ଷଣ—ଧକ୍କା ମାରିଲା ପରି ଲାଞ୍ଜ ପାଖ ଉପର ତଳ ହେଉଥାଏ । କିରଆମାନଙ୍କର ଆଉ ଏକ ଚମତ୍କାର ଅଭ୍ୟାସ ଅଛି । ନରମ କାଦୁଅ ଉପରେ ଖାଦ୍ୟ ସଂଗ୍ରହ କରୁଥିଲାବେଳେ ଗାତ ଭିତରେ ବା ଆବଡ଼ା ଖାବଡ଼ା ଭିତରେ ଲୁଚିଥିବା ପୋକ, ବାଲି ଡ଼ୁବୁରି (sand hopper) ଓ ଛୋଟ ଛୋଟ କଙ୍କଡ଼ାମାନଙ୍କୁ ତରଛେଇ ପଦାକୁ ବାହାର କରି ଆଣିବା ପାଇଁ ସେମାନେ ଦ୍ରୁତ ପଦକ୍ଷେପଦ୍ୱାରା ପାଦ ବାଡ଼େଇ କମ୍ପନ ସୃଷ୍ଟି କରନ୍ତି । ଉପରୋକ୍ତ ଜୀବ ସେମାନଙ୍କର ପ୍ରଧାନ ଆହାର । ପ୍ରାକୃତିକ ପରିବେଶରେ ସେମାନଙ୍କର ବର୍ଣ୍ଣ ପରିପାର୍ଶ୍ୱ ସହିତ ଅତି ଆଶ୍ଚର୍ଯ୍ୟଜନକଭାବେ ମିଶିଯାଏ । ଫଳରେ ସେମାନେ ହିଷ୍ଟିଲ ଥିବା ପର୍ଯ୍ୟନ୍ତ ସେମାନଙ୍କୁ ବାରିବା କଷ୍ଟକର । ଏହି କ୍ଷୁଦ୍ର ଟିଟ୍ଟିଭ ପକ୍ଷୀମାନେ ଖାଦ୍ୟ ସଂଗ୍ରହ କାଳରେ ବିକ୍ଷିପ୍ତଭାବେ ବୁଲୁଥିଲେ ମଧ୍ୟ ଜଣେ ଭୟ ପାଇ ଉଡ଼ିଲା ମାତ୍ରେ ଅନ୍ୟ ସମସ୍ତେ ତା ସଙ୍ଗେ ସଙ୍ଗେ ଉଡ଼ା ଦେଇ ଏକାଠି ଦ୍ରୁତ ବେଗରେ ଘୂରି ବାଂକି ଉଡ଼ିଯାନ୍ତି । ଏ ସମୟରେ ସେମାନଙ୍କର ତଳପାଖର ଧଳା ବର୍ଣ୍ଣ ଏକାଠି ଥରକୁ ଥର ଝଟକି ଉଠିଥାଏ । ସେମାନଙ୍କର ପକ୍ଷ ଗୋଜିଆ ଦ୍ରୁତ ପକ୍ଷ ସଞ୍ଚାଳନଦ୍ୱାରା ସେମାନେ କ୍ଷିପ୍ର ବେଗରେ ଉଡ଼ନ୍ତି; ମାତ୍ର ଭୂମିଠାରୁ 4।5 ମିଟରରୁ ଅଧିକ ଉଚ୍ଚରେ ଉଡ଼ନ୍ତିନାହିଁ । ସାଧାରଣତଃ ଥରକେ ଗୃରଟି ଅଣ୍ଡା ଦିଅନ୍ତି । ନଦୀ ଶଯ୍ୟାର ଶୁଷ୍କ ବାଲିବନ୍ଧର କଙ୍କର ଉପରେ ସେମାନେ ଅଣ୍ଡା ଦିଅନ୍ତି । ଚେଶ୍ମୋଇ ପକ୍ଷୀମାନଙ୍କର ଡିମ୍ବର ଆକାର ସ୍ୱତନ୍ତ୍ର । ତାହା ଉପର ଆଡ଼କୁ କଲାପରି ଗୋଜିଆ । କିରଆର ଅଣ୍ଡାର ଆକାର ମଧ୍ୟ ସେହିପରି ହୋଇଥାଏ । ତା' ଉପରେ ଘନ ବାଦାମୀ ଓ ବାଇଗଣି ରଙ୍ଗର ଗିଜିରି ମିଜିରି ରେଖା ଓ ଚିହ୍ନ ଥାଏ । ଅଣ୍ଡାର ବର୍ଣ୍ଣ ପରିପାର୍ଶ୍ୱ ସହିତ ସମ୍ପୂର୍ଣ୍ଣରୂପେ ମେଳ ଖାଉଥିବାରୁ ଖଣ୍ଡେ ଦୂରରୁ ଲକ୍ଷ୍ୟକରି ପାଖକୁ ଆସି ଦେଖିଲା ବେଳକୁ ଜଣା ପଡ଼େନାହିଁ ।

**ରମା ଚଢ଼େଇ** (ବର୍ଣ୍ଣଚିତ୍ର 40)—ଏହା ବୁରହିନିଡ (Burhinidae) ବଂଶ

ଅନ୍ତର୍ଗତ । ଏହାର ଇଂରାଜୀ ନାମ 'ପଥର କାର୍ଲୋ' (stone curlew) ବା 'ଗଗଲ ଆଖିଆ ଟିଟ୍ଟିଭୋଇ' (Goggle-eyed Plover) । ଏହାର ବୈଜ୍ଞାନିକ ନାମ 'ବୁରହିନାସ ଓଇଡ଼ିକ୍‌ନେମାସ' (Burhinus Oedicnemus) । ହିନ୍ଦୀ ନାମ— କରଓ୍ୱାନକ୍ ବା ବରସିଁର । ଏହା ଟେଣ୍ଟୋଇ ପରି ଗୋଟିଏ ପକ୍ଷୀ ଓ ଭୂମି ଉପରେ ବାସକରେ । ଦେହରେ ବାଦାମୀ ଡୋରିଆ ଦାଗ ପଡ଼ିଥାଏ । ଏହା ତିତ୍ତିର ପକ୍ଷୀଠାରୁ ବଡ଼ । ରାମା ଚଢ଼େଇର ଗୋଡ଼ ତିତ୍ତିର ପକ୍ଷୀର ଗୋଡ଼ଠାରୁ ଅଧିକ ଲମ୍ବ ମଧ୍ୟ । ଏହାର ମୁଣ୍ଡ ଗୋଲାକାର ଓ ଗୋଡ଼ର ଆଣ୍ଠୁ ମୋଟା । ଆଖି ବଡ଼, ଗୋଲାକାର ଓ ଗଗଲ ଚଷମା ପିନ୍ଧିଲା ପରି । ଉଡ଼ୁଥିଲାବେଳେ ପକ୍ଷର ଉପର ପାଖରେ ଦୁଇଟି ଧଳା ଅଣ-ଓସାରିଆ ଡୋରିଆ ଦାଗ ଓ ମୁଖ୍ୟ ପରଗୁଡ଼ିକର ଅଗ ନିକଟରେ ଗୋଟିଏ ଓସାରିଆ ଧଳା ଚିହ୍ନ ଦେଖାଯାଏ । ଏହି ଦୁଇଟି ବିଶେଷ ଲକ୍ଷଣଦ୍ୱାରା ରାମା ଚଢ଼େଇକୁ ଚିହ୍ନଟ କରାଯାଇପାରେ । ଖୋଲା ଝାଟି ଓ ବୁଦବୁଦିଆ ଜଙ୍ଗଲ ଥିବା ଅଞ୍ଚଳ, କଣ୍ଟିତ ଓ ପଡ଼ିଆ ପଡ଼ିଥିବା ଜମି ଏବଂ ଶୁଖି ଯାଇଥିବା ନଦୀର କଙ୍କରଳ ଶଯ୍ୟାରେ ରାମାଚଢ଼େଇ ବାସକରେ । ବେଳେବେଳେ ଏହା ଗ୍ରାମ ନିକଟସ୍ଥ ପ୍ରତି ବର୍ଷ ପତ୍ର ଝଡ଼ୁଥିବା (deciduous) ହାଲୁକା ଜଙ୍ଗଲ ଓ ଝଙ୍କାଳିଆ ଆମ୍ବ ବଗିଚାରେ ଦେଖିବାକୁ ମିଳେ । ଯୋଡ଼ି ଯୋଡ଼ି ହୋଇ ବା ଦଳ ଦଳ ହୋଇ ଏମାନେ ବାସ କରନ୍ତି । ଗୋଟିଏ ଦଳରେ ଚାରିଟିରୁ ପାଞ୍ଚଟି ଯାଏ ପକ୍ଷୀ ଥାନ୍ତି । ଯେଉଁ ପକ୍ଷୀମାନଙ୍କର ଚକ୍ଷୁ ବଡ଼, ସେମାନେ ସାଧାରଣତଃ ଅସ୍ପଷ୍ଟ ଆଲୋକ ଓ ରାତିରେ ବିଚରଣ କରନ୍ତି । ରାମାଚଢ଼େଇ ମଧ୍ୟ ମୁଖ୍ୟତଃ ପ୍ରଦୋଷ ଓ ଗୋଧୂଳିର ଅସ୍ପଷ୍ଟ ଆଲୋକ ଓ ରାତିରେ ଚାଲବୁଲ କରେ ଏବଂ ଦିନବେଳା ନିଷ୍କ୍ରିୟ । ଭୟର ସୂଚନା ପାଇଲେ ବା ଡରକଲେ ସେ ମୁଣ୍ଡକୁ ହଂସପରି ତଳାଆଡ଼କୁ ବଙ୍କାଇ, ବେକକୁ ଦେହ ସଳଖରେ ସିଧାରଖି, ଦ୍ରୁତ ଓ କ୍ଷୁଦ୍ର ପଦକ୍ଷେପରେ ଖସି ପଳାଇଯାଏ । ତା'ପରେ ବୁଦା ବା ପଥର ପାଖରେ ପକ୍ଷୀଟି ଦେହକୁ ତଳେପାଣି ଜଡ଼ ପରି ବସିରହେ । ଏତେବେଳେ ବେକ ଆଗଆଡ଼କୁ ପ୍ରସାରିତ ରହିଥାଏ ଓ ବିସ୍ଫାରିତ ନେତ୍ରରେ ସେ ଆଗନ୍ତୁକର ଗତିବିଧି ଲକ୍ଷ୍ୟକରେ । ଏହି ଅବସ୍ଥାରେ ରାମାଚଢ଼େଇର ବର୍ଣ୍ଣ ଓ ରୂପରେଖ ପରିପାର୍ଶ୍ୱ ସହିତ ଆଶ୍ଚର୍ଯ୍ୟଜନକ ଭାବେ ମିଶିଯାଏ । ଫଳରେ ଅତି ନିକଟରେ ପକ୍ଷୀଟି ମଧ୍ୟ ତାକୁ ଠଉରାଇବା ସହଜ ହୁଏନାହିଁ । ପୋକଜୋକ, ଖୋଳହୀନ ଗେଣ୍ଡା (Slug) ଓ କ୍ଷୁଦ୍ର କ୍ଷୁଦ୍ର ସରୀସୃପ ଏମାନଙ୍କର ପ୍ରଧାନ ଖାଦ୍ୟ । ତା' ସହିତ କିଛି କଙ୍କର ମଧ୍ୟ ସେମାନେ ଉଦରସ୍ଥ କରନ୍ତି । ରାମାଚଢ଼େଇର ରାବ ସାଧାରଣତଃ ପ୍ରଦୋଷ ଓ ଗୋଧୂଳି ସମୟରେ ଶୁଣିବାକୁ ମିଳେ । ଚନ୍ଦ୍ରପକ୍ଷ ରାତିରେ ସାରାରାତି

ସେମାନେ ଧ୍ୱନି କରନ୍ତି । ଏହା ଏକପ୍ରକାର ତୀକ୍ଷ୍ଣ ସ୍ପଷ୍ଟ ଆର୍ତ୍ତନାଦ ଯୁକ୍ତ ସୁସ୍ୱର ପରି ଓ ଶୁଣିବାକୁ 'ପିକ୍, ପିକ୍, ପିକ୍, ପିକ୍···ପିକ୍-ଉଇକ୍, ପିକ୍-ଉଇକ୍' । ଏଥିରେ ଦ୍ୱିତୀୟ ପଦାଂଶ ଉପରେ ସ୍ୱରଘାତ ହୁଏ । ଅନେକେ ଏହି ଶବ୍ଦ ସହିତ ପରିଚିତ ହେଲେ ମଧ୍ୟ ତାହା ଯେ ଗ୍ରାମଚଢ଼େଇର ଡାକ ସେକଥା ଜାଣନ୍ତିନାହିଁ । କଙ୍କରିଲ ଭୂମିରେ ବୁଦା ବା ତୃଣଗୁଚ୍ଛ ମୂଳେ, ଶୁଷ୍କ ନଦୀ ଶଯ୍ୟାରେ, ଆମ୍ବ ବଗିଚ୍ଚ ଓ ଖୋଲା ସ୍ଥାନ ସ୍ଥାନ ବୁଦାଙ୍ଖାଟି ଥିବା ଅଞ୍ଚଳରେ ଏମାନେ ମାଟିକୁ ସାମାନ୍ୟ ଉଖୁରାଇ ଖାଲୁଆ କରି ସେଠି ଅଣ୍ଡା ଦିଅନ୍ତି । ସାଧାରଣତଃ ଥରକେ ଦୁଇଟି ଅଣ୍ଡା ଦିଅନ୍ତି । ଅଣ୍ଡାର ବର୍ଣ୍ଣ ମସିଆ କଷାରୁ ପାକଲ ସବୁଜିଆ । ତା' ଉପରେ ବାଦାମୀ ବା ବାଇଗଣି ରଙ୍ଗର ସ୍ପଷ୍ଟ ଛିପିଛିପିକା ଚିହ୍ନଥାଏ । କଙ୍କରିଲ ପରିବେଶରେ ଗ୍ରାମଚଢ଼େଇ ପରି ତା'ର ଅଣ୍ଡା ମଧ୍ୟ ଆଶ୍ଚର୍ଯ୍ୟଜନକ ଭାବେ ମିଶିଯାଏ ।

ଆମ ଦେଶର ସାଗର କୂଳ ବିସ୍ତୀର୍ଣ୍ଣ । ଏଠାରେ ଉତ୍ତମ ସଂଖ୍ୟାରେ ମାଛଖିଆ (Gull) ଓ ଡିବେନ୍ (Tern) ଦେଖାଯାନ୍ତି । ଏଥିରୁ କେତେକ ଆବାସୀ ଓ କେତେକ ପ୍ରବାସୀ । ବାହାରୁ ବାହାରୁ ଦେଖିବାକୁ ଗଲେ ମାଛଖିଆ ଓ ଡିବେନ ମଧ୍ୟରେ ତଫାତ୍ ହେଲ, ମାଛଖିଆ ଡିବେନଙ୍କଠାରୁ କିଛିଟା ଓଜନିଆ ଏବଂ ସେମାନଙ୍କର (ମାଛଖିଆ) ପକ୍ଷ ଅପେକ୍ଷାକୃତ ଓସାରିଆ ଓ ଅଳ୍ପଗୋଲିଆ । ଆମର ଅତି ସାଧାରଣ **ମାଛଖିଆ** (ବର୍ଣ୍ଣଚିତ୍ର 41)କୁ ଇଂରାଜୀରେ 'ବାଦାମୀ ମୁଣ୍ଡିଆ ମାଛଖିଆ' (Brown-headed Gull) ବୋଲି କହନ୍ତି । ଏହାର ବୈଜ୍ଞାନିକ ନାମ 'ଲରସ ବ୍ରୁନିସେଫାଲସ' (Larus brunnicephalus) । ହିନ୍ଦୀ ନାମ-ଡୋମ୍ରା । ଏହା ପଙ୍କତିଆ କାଉ (Jungle crow) ଠାରୁ ସାମାନ୍ୟ ବଡ଼ । ଉପର ପାଖର ବର୍ଣ୍ଣ ଧୂସର ଓ ତଳପାଖ ଧଳା । ଗ୍ରୀଷ୍ମକାଳରେ ମୁଣ୍ଡ ଘନ କଫିର ରଙ୍ଗପରି ବାଦାମୀ । ଶୀତକାଳରେ ଏହା ଆମଦେଶକୁ ଆସେ । ଏତେବେଳେ ତା'ର ମୁଣ୍ଡ ଧୂସରିଆ ଧଳା ହୋଇଥାଏ ଓ ବେଳେବେଳେ ତା'ର କାନ ପଛକୁ ଏକ ବାଲି ଚନ୍ଦ୍ରାକାର କଳାଚିହ୍ନ ଉଲ୍ଲମ୍ବ (Vertical) ଭାବେ ରହିଥାଏ । ଆଉ ଜାତିଏ ମାଛଖିଆ ମଧ୍ୟ ସାଧାରଣତଃ ଦେଖାଯାନ୍ତି । ତାକୁ 'କଳାମୁଣ୍ଡି ମାଛଖିଆ' କହନ୍ତି । ଇଂରାଜୀ ନାମ Blackheaded gull, ବୈଜ୍ଞାନିକ ନାମ 'ଲରସ ରିଡ଼ିବୁନ୍‌ଡ଼ାସ' (Larus ridibundus) । ଏହା ସାଧାରଣ ମାଛଖିଆଠାରୁ ଟିକିଏ ସାନ । ସାଧାରଣ ମାଛଖିଆ ଓ କଳାମୁଣ୍ଡି ମାଛଖିଆଙ୍କୁ ଗୋଟିଏ ଲକ୍ଷଣଦ୍ୱାରା ଚିହ୍ନି ହେବ । ତାହା ହେଲ ସାଧାରଣ ମାଛଖିଆ ଡେଣାରେ ପ୍ରଥମ ମୁଖ୍ୟ ପକ୍ଷ କଳା; ମାତ୍ର ତା'ର ଅଗ୍ରଭାଗର ସନ୍ନିକଟ ସ୍ଥାନ ସ୍ପଷ୍ଟଭାବେ

ଥାଏ । ଏହାକୁ 'ଦର୍ପଣ' (mirror) ବୋଲି କୁହାଯାଇଥାଏ । କଳାମୁଣ୍ଡି ମାଛଖିଆ ଡେଣାରେ ପ୍ରଥମ ମୁଖ୍ୟ ପକ୍ଷ ଧଳା; ମାତ୍ର ତା'ର ପ୍ରାନ୍ତ ଓ ଅଗ୍ରଭାଗ କଳା । ଉଭୟ ଜାତିର ଅପ୍ରାପ୍ତ-ବୟସ୍କ ପକ୍ଷୀଙ୍କର ଲାଞ୍ଜ ଧଳା ଓ ଉଭୟର ଲାଞ୍ଜ ଅଗ୍ରଭାଗ ନିକଟରେ ଗୋଟିଏ କରି କଳାରେଖା ଦେଖିବାକୁ ମିଳେ । ସମୁଦ୍ର କୂଳରେ ଉଭୟ ଜାତି ମାଛରଙ୍କା ଏକତ୍ର ଦେଖାଯାନ୍ତି । ଏମାନେ ଅନ୍ତର୍ଦେଶ (inland) ଅଞ୍ଚଳକୁ ସେତେ ବେଶୀ ସାଧାରଣ ଭାବେ ଦେଖାଯାନ୍ତିନାହିଁ । ଏହି ମାଛିଖିଆ ପକ୍ଷୀମାନେ ଆମଦେଶରେ ଶୀତକାଳଟି କଟାଇବା ପାଇଁ ସେପ୍ଟେମ୍ବର-ଅକ୍ଟୋବର ମାସରେ ଆସି ପହଞ୍ଚନ୍ତି । ସେମାନେ ସମୁଦ୍ରତଟ ଓ ଅନ୍ତର୍ଦେଶରେ ଥିବା ନଦୀ କୂଳରେ ବାସକରି ଏପ୍ରିଲ ମାସ ଶେଷ ସୁଦ୍ଧା ବାହୁଡ଼ିଯାନ୍ତି । ସେମାନେ ମୁଖ୍ୟତଃ ବନ୍ଦର ଓ ସମୁଦ୍ର କୂଳବର୍ତ୍ତୀ ମାଛଧରାଳି ବସତିମାନଙ୍କରେ ଦେଖାଯାନ୍ତି । ରୋଷେଇଶାଳର ଟିକୁରାଟିକୁରି ଓ ଆବର୍ଜନା ପାଣିକୁ ଫୋପଡ଼ା ହେଲେ ସେଥିରୁ ଖାଦ୍ୟ ସଂଗ୍ରହ କରିବା ପାଇଁ ସେମାନେ ଲଙ୍ଗର ପକାଇଥିବା ଜାହାଜ ଚାରିପଟେ ଉଡ଼ି ବୁଲୁଥାନ୍ତି ଏବଂ ପୋତାଶ୍ରୟ ଭିତରକୁ ଆସୁଥିବା ବା ପୋତାଶ୍ରୟ ବାହାରକୁ ଯାଉଥିବା ଜାହାଜ ପିଛୁ ଧରି ଉଡ଼ିଥାନ୍ତି । ଆମ ଦେଶରେ ଥିଲାବେଳେ ସେମାନଙ୍କର ପ୍ରଧାନ ଖାଦ୍ୟ ହେଲା, ଜାହାଜରେ ରୋଷେଇଶାଳରୁ ଫୋପଡ଼ା ହେଉଥିବା ଟିକ୍‌ରା ଟିକ୍‌ରି ଓ ଆବର୍ଜନା ଏବଂ ମାଛମରା ଡଙ୍ଗାରୁ ଫୋପଡ଼ା ହେଉଥିବା ମଲା ମାଛ । ଏଥିପାଇଁ ସେମାନଙ୍କୁ ମାଟିଆ ଚିଲ ଓ ଶଙ୍ଖଚିଲମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ହୋଇଥାଏ । ପାଣି ଉପରେ ଭାସୁଥିବା ଖାଦ୍ୟକୁ ଥଣ୍ଟରେ ଧରିବା ପାଇଁ ମାଛଖିଆ-ମାନଙ୍କୁ ଉଡ଼ୁଥିବା ସମୟରେ ପାଣିଉପରକୁ ଝାମ୍ପ ମାରିବାକୁ ପଡ଼େ । ଅନେକ ସମୟରେ ସେମାନେ ଏଥିପାଇଁ ଭାସମାନ ଖାଦ୍ୟଜଡ଼ରେ ଜଳରେ ଓହ୍ଲାଇ ପଡ଼ନ୍ତି ଓ ପାତିହଂସ ପରି କ୍ଷୁଦ୍ର କ୍ଷୁଦ୍ର ଢେଉ ଉପରେ ମଜାରେ ଭାସୁଥାନ୍ତି । ଅନ୍ତର୍ଦେଶ (inland) ଅଞ୍ଚଳରେ ସେମାନେ କୀଟପତଙ୍ଗ, କୋଟଳ ଶୂକ (grub) ଓ କେତେକ ଉଦ୍ଭିଦ ପଦାର୍ଥ ମଧ୍ୟ ଖାଇଥାନ୍ତି । ମାଛଖିଆ ଉଚ୍ଚ ସ୍ୱରରେ ନାନାପ୍ରକାର କର୍କଶ ରାବ କରିଥାଏ । ତନ୍ମଧ୍ୟରେ ସବୁଠାରୁ ସାଧାରଣ ରାବ ଅନେକ ପରିମାଣରେ ଡାମରାକାଉର ରାବପରି ଏକପ୍ରକାର ଅସନ୍ତୋଷ ସୂଚକ ଚରଚରିଆ 'କଇଆ (ହ)' ଶବ୍ଦ ।

ପ୍ରାକୃତିକ ଭାରତବର୍ଷରେ ମାଛଖିଆ କେବଳ ଲାଦାଖର ଉଚ୍ଚଭୂମିରେ ଅବସ୍ଥିତ ହ୍ରଦରେ ପ୍ରଜନନ କରେ । ଏମାନେ ସଂଘବଦ୍ଧ ଭାବରେ ନୀଡ଼ ରଚନା କରନ୍ତି । ଜଳା-ଭୂମିରେ ଅର୍ଦ୍ଧ ଭାସମାନ ତୃଣମୟ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପରେ ଦଳାକୁ ଉଖୁରାଇ ଏକାଠି ଗାଦି ପରି କରି ସେଥିରେ ଅଣ୍ଡାଦିଅନ୍ତି । ଥରକେ ଦୁଇରୁ ତିନୋଟି ଅଣ୍ଡାଦିଅନ୍ତି । ସାଧାରଣତଃ

ଅଣ୍ଡାର ବର୍ଣ୍ଣ ହଳଦିଆ ସବୁଜରୁ ହାଲୁକା ହଳଦିଆ ବାଦାମୀ ହୋଇଥାଏ । ତା’ ଉପରେ କଳା ବା ଲାଲବାଦାମୀ ରଙ୍ଗର ବଡ଼ ବଡ଼ ଛୁପ, ଦାଗ ଆଦି ପଡ଼ିଥାଏ ।

ଟ୍ରେନ (tern) ମାନଙ୍କର ଗୋଟିଏ ଭଲ ଉଦାହରଣ ହେଲା **ନୁନ୍‌ଚୁରନି** (ବର୍ଣ୍ଣଚିତ୍ର 42) । ଓଡ଼ିଶାର କେତେକ ଅଞ୍ଚଳରେ ଏହାକୁ ମାଛରଙ୍କା ବୋଲି ମଧ୍ୟ କହିଥାନ୍ତି । ଇଂରାଜୀ ନାମ ‘ଭାରତୀୟ ନିଶଯୁକ୍ତ ଟ୍ରେନ’ (Indian Whiskered Tern); ବୈଜ୍ଞାନିକ ନାମ, ‘କ୍ଲିଡ଼ୋ ନିଆସ ହାଇବ୍ରିଡ଼ା’ (Chlidonias hybrida) । ହିନ୍ଦୀରେ ଏହାକୁ ତେହାଷ୍ଟ କହନ୍ତି ଓ ସବୁପ୍ରକାର ଟ୍ରେନ୍‌ଙ୍କୁ କୁରଣ୍ଟ କୁହାଯାଏ । ଏହା ଗୋଟିଏ କ୍ଷୀଣ, ସୁଦୃଶ୍ୟ ରୌପ୍ୟ ଧୂସର ଓ ଧଳାପକ୍ଷୀ । ଆକାର ପାରାପରି; ମାତ୍ର ତା’ଠାରୁ ଅନେକ ପରିମାଣରେ ପତଳା । ଏହା ‘ପାଙ୍କ ଟ୍ରେନ’ (Marsh terns) ପକ୍ଷୀ ଦଳଅନ୍ତର୍ଭୁକ୍ତ । ଏହି ଦଳର ପକ୍ଷୀମାନଙ୍କର ବିଶେଷ ଲକ୍ଷଣ ହେଲା, ସେମାନଙ୍କର ଲାଞ୍ଜ ସାମାନ୍ୟ ଦିଫାଳିଆ ଓ ପ୍ରାୟ ସମଚତୁର୍ଭୁଜାକାର । ଥଣ୍ଟ ଲାଲ ବା କଳାସିଆ ଲାଲ । ବିଶ୍ରାମ ନେଉଥିବା ସମୟରେ ପକ୍ଷର ଅଗ୍ର ଲାଞ୍ଜକୁ ଟପି ପଛଆଡ଼କୁ ବାହାରି ରହିଥାଏ । ଗ୍ରୀଷ୍ମକାଳ ଏମାନଙ୍କର ପ୍ରଜନନ ଋତୁ । ଏ ସମୟରେ ଉଭୟ ମାଈ ଓ ଅଣ୍ଡିରାଙ୍କର ମୁଣ୍ଡ ଉପର ଓ ପେଟ ସ୍ପଷ୍ଟଭାବେ କଳା ଦେଖାଯାଏ । ସାଧାରଣତଃ ଜଳାଭୂମି, ଜଳପ୍ଲାବିତ ଧାନବିଲ ଓ କୂଳର କାଦୁଆ ଭୂମି ଉପରଦେଇ ନୁନ୍‌ଚୁରନି ଉଡ଼ି ଯା’ ଆସ କରୁଥିବାର ଦେଖିବାକୁ ମିଳେ । ଏତେବେଳେ ତା’ର ଲମ୍ବା ଅଣଓସାରିଆ ପକ୍ଷ ଲଳିତ ଛନ୍ଦରେ ଆନ୍ଦୋଳିତ ହେଉଥାଏ ଏବଂ ଶିକାର ଉଦ୍ଦେଶ୍ୟରେ ଥଣ୍ଟ ଓ ଆଖି ତଳଆଡ଼କୁ ନିର୍ଦ୍ଦିଷ୍ଟ ଭାବେ ନିବଦ୍ଧ ରହିଥାଏ । ଥରକୁ ଥର ସେ ସ୍ପର୍ଶକ (tangent) ଭାବେ ଝାମ୍ପ ମାରି ବାଲିକଙ୍କଡ଼ା, ପୋକ, ବେଙ୍ଗଫୁଲ ବା ଛୋଟମାଛ ତଳୁ ଉଠାଇ ନିଏ । ମାଛମରା ଡଙ୍ଗା ସମୁଦ୍ରରୁ ମାଛମାରି ଫେରିଲାବେଳେ ନୁନ୍‌ଚୁରନି ତା’ ପିଚ୍ଛା ନେଇଥାନ୍ତି ଏବଂ କୌଣସି କ୍ଷୁଦ୍ର ମାଛ ପାଣିକୁ ଫୋପଡ଼ା ହେଲେ ତାକୁ ଝାମ୍ପିନିଅନ୍ତି । ସେମାନଙ୍କର ପାଦରେ ଅଙ୍ଗୁଳିଯୋଜକ ଚର୍ମ ଥାଏ ଓ ପହଁରି ପାରୁଥିଲେ ମଧ୍ୟ, ସେମାନେ ମାଛଖିଆ (gull) ଯେମିତି ପାଣିରେ ଓହ୍ଲାଇ ପଡ଼େ, ସେମିତି ଓହ୍ଲାଇ ପଡ଼ନ୍ତିନାହିଁ । ତାଙ୍କର ଅଧିକାଂଶ ସମୟ ଉପରେ ଉଡ଼ିବାରେ ବା ତୀରରେ କ୍ଷୁଦ୍ର ଗୋଡ଼ ଉପରେ ଭରାଦେଇ ହାସ୍ୟକର ଠାଣିରେ ବସି ରହିବାରେ କଟିଥାଏ । ଉଡ଼ିଲାବେଳେ ସେମାନେ ଏକପ୍ରକାର ତୀବ୍ର କର୍କଶ ରାବ କରନ୍ତି । ତାହା ‘କ୍ରଇକ୍, କ୍ରଇକ୍’ ପରି ଶୁଣାଯାଏ । ଏହି ରାବ କେତେକ ପରିମାଣରେ ଦୂରରୁ ଲିଟୋରା (Shrike) ପକ୍ଷୀର କ୍ଷୀଣ କର୍କଶ ଶବ୍ଦପରି ମନେହୁଏ ।

ଆମର ଆଉ ଗୋଟିଏ ସାଧାରଣ ଟର୍ଣ୍ଣ ହେଲା '**ନଦୀଟର୍ଣ୍ଣ**।' ଏମାନଙ୍କୁ ଇଂରାଜୀରେ River Tern କହନ୍ତି । ବୈଜ୍ଞାନିକ ନାମ 'ଷ୍ଟାରନା ଅରେନସିଆ' (Sterna qurantia) । ଓଡ଼ିଶାର କେତେକ ସ୍ଥାନରେ ଏହାକୁ ମାଛରଙ୍କା ବୋଲି ମଧ୍ୟ କହନ୍ତି । ଏହା ପାଖ ପଡ଼ିବର୍ଷ୍ଣେ ବେଶି ଭାଗ ନଦୀ ତୀରରେ ଦେଖାଯାଏ । ଏହାର ବର୍ଣ୍ଣ ମଧ୍ୟ ଣ୍ଟୁନ୍‌ଟ୍ରେନ୍ ପରି ଧୂସର ଓ ଧଳା ଏବଂ ମୁଣ୍ଡ ଉପର ବାଦାମୀ ଦାଗଯୁକ୍ତ; ମାତ୍ର ନଦୀ ଟର୍ଣ୍ଣ ଣ୍ଟୁନ୍‌ଟ୍ରେନ୍ ପକ୍ଷୀଠାରୁ କେତେକାଂଶ ବଡ଼ । ଏହାର ଥଣ୍ଟ ହଳଦିଆ । ଲାଞ୍ଜ ଣ୍ଟୁନ୍‌ଟ୍ରେନର ଲାଞ୍ଜ ଅପେକ୍ଷା ଅଧିକ ଲମ୍ବ ଓ ଗୃହକ ଚଢ଼େଇ (Swallow)ର ଲାଞ୍ଜ ପରି ଅଧିକ ଦୁଫାଳିଆ । ପ୍ରଜନନ ଋତୁରେ ମୁଣ୍ଡ ଉପରର ବର୍ଣ୍ଣ ଘନ କଳା ହୋଇଥାଏ; ମାତ୍ର ପେଟ ପାଖ ଧଳା ରହିଥାଏ ।

ଣ୍ଟୁନ୍‌ଟ୍ରେନ କାଶ୍ମୀର ସମେତ ଉତ୍ତର ଭାରତରେ ପ୍ରଜନନ କରେ । ସେମାନେ ହ୍ରଦ ବା ଜଳାଭୂମିରେ ଅର୍ଦ୍ଧନିମଜ୍ଜିତ ପାଣି ସିଙ୍ଗଡ଼ା ବା ସେହିପରି ଗଛ ଉପରେ ନଳତୃଣରେ ଯାହା ତାହା ଗୋଲାକାର ନୀଡ଼ ରଚନା କରିଥାନ୍ତି । ଥରକେ ଦୁଇତିନୋଟି ଅଣ୍ଡା ଦିଅନ୍ତି । ଅଣ୍ଡାର ରଙ୍ଗ ସବୁଜିଆରୁ ନୀଳ ଆଭାଯୁକ୍ତ; ଏପରିକି ବାଦାମୀ ଆସିଆ ମଧ୍ୟ ହୋଇଥାଏ । ତା' ଉପରେ ଘନବାଦାମୀ ବା ବାଇଗଣିଆ ବାଦାମୀ ବର୍ଣ୍ଣର ଛିପଛିପିଆ ଚିହ୍ନ ଓ ରେଖା ପଡ଼ିଥାଏ ।

**କଲୁମ୍ବିଫରମିସ୍**—(COLUMBIFORMIS) ବର୍ଗ—ଏହି ବର୍ଗର ପକ୍ଷୀ ହେଲେ ଆମର ଭାଟ ତିତ୍ତିର (sand grouse) (ଟେରୋକ୍ଲିଡ଼ି ବଂଶ, family Pteroclidae) ଏବଂ ପାରାବତ (pigeon) ଓ କପୋତ (dove) (କଲୁମ୍ବିଡ଼ି ବଂଶ, (Columbdidae) । ଅନେକ ଗୁଡ଼ାଏ ଜାତର ଚଢ଼େଇ ଏହି ଦୁଇ ପକ୍ଷିବଂଶ ଅନ୍ତର୍ଭୁକ୍ତ । ସେସବୁ ଶିକାର ପକ୍ଷୀଭାବେ ଓ ମାଂସ ପାଇଁ ଲୋକପ୍ରିୟ । ଅନ୍ୟାନ୍ୟ ଲକ୍ଷଣ ବ୍ୟତୀତ ସେମାନଙ୍କର ପାଣି ପିଇବା ରୀତି ସ୍ୱତନ୍ତ୍ର । ଗୃହପାଳିତ କୁକୁଡ଼ା ପାଣିରେ ଥଣ୍ଟ ବୁଡ଼ାଇ ଜଳ ଆହରଣ କରେ ଓ ମୁଣ୍ଡକୁ ଉପରକୁ ଉଠାଇ ତାକୁ ଗିଳେ; ମାତ୍ର ପାରା, କପୋତ, ଭାଟ ତିତ୍ତିର ଆଦି ପକ୍ଷୀମାନେ ଘୋଡ଼ାପରି ପାଣିରେ ଥଣ୍ଟ ବୁଡ଼ାଇ ଅବ୍ୟାହତ ଭାବେ ପାଣି ପିଅନ୍ତି । ବାହାରୁ ବାହାରୁ ଲକ୍ଷ୍ୟକଲେ, ଭାଟ ତିତ୍ତିର ପାରାପରି ପକ୍ଷୀ, ଆଉ ସେମାନଙ୍କର ଦେହ ଅଲକ୍ଷିତ (cryptically coloured) ବାଦାମୀ ବର୍ଣ୍ଣର ପରଦ୍ୱାରା ଘନଭାବେ ଆଚ୍ଛାଦିତ । ସେମାନଙ୍କର ବେକ କ୍ଷୁଦ୍ର, ଗୋଡ଼ ଖୁବ୍ ସାନ ଏବଂ ଲାଞ୍ଜ କ୍ରମ ସୂକ୍ଷ୍ମ । ଅନେକ ଜାତର ଭାଟ ତିତ୍ତିରଙ୍କ ଲାଞ୍ଜର ମଝି ପର ପ୍ରସାରିତ ଓ ପିନ୍‌କଣ୍ଟା ପରି ସୂକ୍ଷ୍ମ । ସେମାନେ ଦଳ ଦଳ ହୋଇ ଅର୍ଦ୍ଧ ମରୁଭୂମି ଓ ଅନାବାଦୀ

ଭୂମିରେ ଦେଖାଯାନ୍ତି । ଅନେକ ସମୟରେ ଗୋଟିଏ ଦଳରେ ବହୁ ସଂଖ୍ୟକ ପକ୍ଷୀ ଥାନ୍ତି । ସେମାନେ ଦିନର ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ ସ୍ଥାନରେ ଜଳପାନ କରିବାର ଦେଖାଯାଏ ।

**ଭଟ ତିତିର** (ବର୍ଣ୍ଣଚିତ୍ର 43)—ଏହାର ଇଂରାଜୀ ନାମ 'ସାଧାରଣ ଭଟ୍ଟତିତିର' (Common Sandgrouse), ବୈଜ୍ଞାନିକ ନାମ 'ଟେରୋକ୍ଲିସ ଏକ୍ସସ୍ଟସ' (Pterocles exustus); ହିନ୍ଦୀ ନାମ ଭଟ୍ଟ ତିତିର । ଏହା ପାରାଠାରୁ କେତେକ ପରିମାଣରେ କ୍ଷୁଦ୍ର । ବର୍ଣ୍ଣ ବାଲିପରି ହଳଦିଆ ବାଦାମୀ । ଲାଞ୍ଜ ପିନ୍‌କଣ୍ଟା ପରି ସୂକ୍ଷ୍ମାଗ୍ର । ଛାତିରେ ଏକ କ୍ଷୀଣ କଳାରଙ୍ଗର ପଟି ଚିହ୍ନଥାଏ । ପେଟ ପାଖର ବର୍ଣ୍ଣ ବାଦାମୀ ଆସିଆ କଳା । ଗଣ୍ଡଦେଶ, ଚିବୁକ ଓ ତଣ୍ଟି ମସିଆ ହଳଦିଆ । ମାଈ ପକ୍ଷୀର ସାରା ଦେହରେ ଡୋରିଆ ଦାଗ ଓ ବିନ୍ଦୁ ବିନ୍ଦୁ ଚିହ୍ନ ପଡ଼ିଥାଏ । ମୁଣ୍ଡ ଉପର ଦେଇ ଉଡ଼ିଗଲାବେଳେ ଭଟ୍ଟ ତିତିରଙ୍କୁ ସେମାନଙ୍କର ଗୋଜିଆ ପକ୍ଷ, ଲାଞ୍ଜ ଓ ସ୍ୱତନ୍ତ୍ର ଦୋହରା ଡାକଦ୍ୱାରା ଚିହ୍ନଟ କରିହୁଏ । ସେମାନଙ୍କର ସାଧାରଣ ବର୍ଣ୍ଣ ଏପରି ଯେ ତୃଣହୀନ ଖାଲି ଭୂମି ଉପରେ ବସିଥିବାବେଳେ ସେମାନଙ୍କୁ ଆଦୌ ଜାଣି ହୁଏନାହିଁ । ସେମାନେ ଜଳଠାରୁ ବେଶ୍ କିଛି ଦୂରରେ ରହିଲେ ମଧ୍ୟ, ସକାଳେ ଓ ଉପରବେଳା ନିୟମିତ ଭାବେ ସେମାନଙ୍କର ଆଦୃତ ଜୋର ବା ପୋଖରୀରେ ପାଣି ପିଇବା ପାଇଁ ନିର୍ଦ୍ଦିଷ୍ଟ ସମୟରେ ଚତୁର୍ଦ୍ଦିଗରୁ ଆସି ରୁଣ୍ଡ ହୁଅନ୍ତି । ପାଣି ପିଇବା ପାଇଁ ଆସି ଜମା ହେଲା-ବେଳେ ବା ପାଣି ପିଇ ବାହୁଡ଼ିଲାବେଳେ ସେମାନଙ୍କୁ ଲୋକେ ବନ୍ଧୁକରେ ଶିକାର କରନ୍ତି । ସେମାନେ ଖୁବ୍ ଦ୍ରୁତ ବେଗରେ ଦୃଢ଼ଭାବରେ ଉଡ଼ନ୍ତି ଓ ଉଡ଼ିଲାବେଳେ ଏକପ୍ରକାର ସ୍ୱତନ୍ତ୍ର ଚରଚରିଆ ଦୋହରା 'କୁଟ୍-ରୋ' ଡାକ ଦିଅନ୍ତି । ଭଟ୍ଟ ତିତିର ମୁଣ୍ଡ ଉପର ଦେଇ ଉଡ଼ିଗଲାବେଳେ ସେମାନଙ୍କର ଏହି ସ୍ୱନ ସ୍ପଷ୍ଟ ଶୁଣାଯାଏ । ଅନେକ ସମୟରେ ସେମାନେ ପ୍ରକୃତ ପକ୍ଷେ ଦୃଷ୍ଟିଗୋଚର ହେବା ପୂର୍ବରୁ ଏହି ଶବ୍ଦ ଶୁଣା ଯାଇଥାଏ । ଘାସ ଓ ଅଗଛର ବୀଜ, ବୀଜ ଏବଂ ଛେଦିତ ଶସ୍ୟର ବିକ୍ଷିପ୍ତ ଅବଶେଷ ଭଟ୍ଟତିତିରର ପ୍ରଧାନ ଖାଦ୍ୟ । ତା' ସହିତ ସେମାନେ ଅନେକ ପରିମାଣରେ କଙ୍କର ମଧ୍ୟ ଗିଳିଥାନ୍ତି । ସେମାନେ ଖୋଲା ଭୂମିରେ ଅଣ୍ଡା ଦିଅନ୍ତି । ବେଳେବେଳେ ଟିକିଏ ଚଟକା ହୋଇଥିବା ସ୍ଥାନରେ ମଧ୍ୟ ଅଣ୍ଡା ଦିଅନ୍ତି; ମାତ୍ର ସେମାନେ ସେଥିରେ କୁଟାକାଠି ରଖି ନୀଡ଼ ରଚନା କରନ୍ତିନାହିଁ । ଭଟ୍ଟତିତିର ଥରକେ ସାଧାରଣତଃ ତିନୋଟି ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ପଥରର ରଙ୍ଗ ପରି ଫିକା ଧୂସର ବା ଫିକା ହଳଦିଆ । ତା' ଉପରସାରା ବାଦାମୀ ଦାଗ ଓ ଚିହ୍ନଥାଏ । ପକ୍ଷୀଶାବକମାନଙ୍କର କୋମଳ ପର ରକ୍ଷାବର୍ଣ୍ଣର

ହୋଇଥିବାରୁ ଶତ୍ରୁ ସେମାନଙ୍କୁ ସହଜରେ ଧରିପାରେ ନାହିଁ । ଆହୁରି ମଧ୍ୟ, ଅଣ୍ଡାରୁ ଫୁଟିଲା ମାତ୍ରେ, ପକ୍ଷୀ ଛୁଆ ଦୌଡ଼ି ପାରନ୍ତି । ଅଣ୍ଡିରା ପକ୍ଷୀ ଜଳରେ ପଶି ପାଣି ପିଇଲା-ବେଳେ ତା' ପେଟର ପର ଓଦା ହୁଏ । ସେ ପିଲାମାନଙ୍କ ପାଖକୁ ଫେରିଲେ ପକ୍ଷୀ ଶାବକମାନେ ସେଥିରୁ ଜଳ ଗ୍ରହଣ କରି ତୃଷା ମେଣ୍ଟାନ୍ତି ।

ପାତିହଂସ (duck) ଓ ବାଲିହଂସ (teal) ମଧ୍ୟରେ ପ୍ରକୃତପକ୍ଷେ କୌଣସି ତଫାତ୍ ନଥିଲାପରି ପାରା (pigeons) ଓ କପୋତ (doves) ମାନଙ୍କ ମଧ୍ୟରେ କୌଣସି ନିର୍ଦ୍ଦିଷ୍ଟ ଫରକ ନାହିଁ । ପାରା ବଡ଼ କପୋତ ଅଟନ୍ତି ଓ କପୋତ ସାନ ପାରା ଅଟନ୍ତି । ଗୋଟିଏ ଦଳ ପାରା ଅଛନ୍ତି, ସେମାନେ ସମ୍ପୂର୍ଣ୍ଣ ରୂପେ ଫଳଭକ୍ଷୀ । ସେମାନଙ୍କୁ **ହରଡ଼ ଚଢ଼େଇ** କହନ୍ତି । ସ୍ଥଳବିଶେଷରେ ଏମାନଙ୍କର ନାମ ହରଡ଼ ଖାଇ, ହାଉଆ ହରଡ଼ ଓ ସଲ୍ଲୁରି । ହିନ୍ଦୀ ନାମ ହରିଆଲ୍; ଇଂରାଜୀ ନାମ 'ସାଧାରଣ ସବୁଜ ପାରା' (Common Green Pegion); ବୈଜ୍ଞାନିକ ନାମ, ',ଟ୍ରିରନ୍ ଫୋଏନିକପ୍‌ଟେରା' (Treron phoenicoptera) (ବର୍ଣ୍ଣଚିତ୍ର 44) । ଏହା ଗୋଟିଏ ପେଣ୍ଡା କୋଦମା ପକ୍ଷୀ, ଆକାର ପାରାପରି । ବର୍ଣ୍ଣ ହଳଦିଆ, ଗାଢ଼ ସବୁଜ ଓ ପାଉଁଶିଆ ଧୂସର । ସ୍କନ୍ଧ ସ୍ଥାନରେ ପକ୍ଷରେ ନୀଳବର୍ଣ୍ଣର ଚିହ୍ନ ଥାଏ । ଏହି ରେଖା ପୁରୁଷ ପକ୍ଷୀଠାରେ ସୁସ୍ପଷ୍ଟ ଓ ମାଈ ପକ୍ଷୀ ଦେହରେ ଊଣା ସ୍ପଷ୍ଟ । ଏହାର ଗୋଡ଼ ହଳଦିଆ (ଲାଲ ନୁହେଁ) । ଏହି ଲକ୍ଷଣଦ୍ୱାରା ଅନ୍ୟ ସମସ୍ତ ପ୍ରକାର ଭାରତୀୟ ହରଡ଼ ଚଢ଼େଇ (green pigeon) ଠାରୁ ଏହାକୁ ପୃଥକ୍ କରାଯାଇପାରେ । ଏମାନେ ଦଳ ଦଳ ହୋଇ ଖୋଲା ଜମିରେ ଓ ଜଙ୍ଗଲରେ ଦେଖାଯାନ୍ତି । ହରଡ଼ ଚଢ଼େଇ ସାଧାରଣତଃ ଗ୍ରାମ ଓ ସହର ନିକଟରେ ଦେଖିବାକୁ ମିଳନ୍ତି । ଉପଯୁକ୍ତ ଫଳଭରା ଗଛ ସେମାନଙ୍କୁ ଆକୃଷ୍ଟ କରେ । ସେଥିପାଇଁ ସେମାନେ ଗ୍ରାମ ଓ ସହରର ଫଳ ବଗିଚାରେ ମଧ୍ୟ ପ୍ରବେଶ କରନ୍ତି । ହରଡ଼ ଚଢ଼େଇ ଯୂଥପ୍ରିୟ ଓ ପ୍ରାୟ ସମ୍ପୂର୍ଣ୍ଣ ରୂପେ ବୃକ୍ଷବାସୀ । କ୍ୱଚିତ୍ ଏହା ତଳକୁ ଓହ୍ଲାଏ । ଫଳଭରା ବୃକ୍ଷଡାଳ ଭିତରେ ଏହା ଦକ୍ଷତା ସହକାରେ ବିଚରଣ କରେ ଏବଂ ଅନେକ ସମୟରେ ନିକଟରେ ନଥିବା ବର ବା ଓସ୍ତ ଫଳ ପାଖରେ ପହଞ୍ଚିବାପାଇଁ ଡାଳକୁ ଗୋଡ଼ରେ ଜାବୁଡ଼ି ଧରି ତଳ ଆଡ଼କୁ ଝୁଲି ବେକ ଓ ମୁଖକୁ ପ୍ରସାରିତ କରିଥାଏ । ବିପଦର ସୂଚନା ପାଇଲେ ଏମାନେ ଜଡ଼ ହୋଇଯାନ୍ତି । ସେମାନଙ୍କର ପକ୍ଷୀର ବର୍ଣ୍ଣ ସବୁଜ ପତ୍ରର ବର୍ଣ୍ଣ ସହିତ ଏଡ଼େ ସୁନ୍ଦରଭାବେ ମିଶିଯାଏ ଯେ ବଡ଼ ପକ୍ଷୀଟିଏ ହୋଇଥିଲେ ମଧ୍ୟ ସେମାନଙ୍କର ଉପସ୍ଥିତି ଜଣାପଡ଼େନାହିଁ । କେବଳ ଏଠି ସେଠି ସାମାନ୍ୟ ସଞ୍ଚାଳନଦ୍ୱାରା ସେମାନଙ୍କ ଅବସ୍ଥିତି ଜଣାପଡ଼େ ।

ବନ୍ଧୁକ ଫୁଟିଲେ ଗୋଟିଏ ଫଳଭରା ବରଗଛରୁ ଯେତେ ସଂଖ୍ୟାରେ ସଲ୍କୁର ଉଡ଼ିଯାନ୍ତି ତାହା ଦେଖିଲେ ଆଖି ଖୋସି ହୋଇଯାଏ । ଦିନବେଳେ ଫଳ ସଂଗ୍ରହ ପାଇଁ ସେମାନେ ଗଛରୁ ଗଛ ଉଡ଼ି ବୁଲନ୍ତି ଓ ମଝିରେ ମଝିରେ ଗଛର ସବା ଉପର ଡାଳରେ ବିଶ୍ରାମ ନିଅନ୍ତି । ପତ୍ରହୀନ ବୃକ୍ଷର ଉପର ଅଂଶରେ ବସି ନିୟମିତ ଭାବେ ସକାଳେ ଓ ସନ୍ଧ୍ୟାରେ ହରଡ଼ଖାଇ ପରକୁ ଫୁଲାଇ ଖରା ପୁହାନ୍ତି । ସେମାନଙ୍କର ଉଡ଼ା କ୍ଷିପ୍ର, ବଳବାନ୍ ଓ ସିଧା । ଉଡ଼ିଲାବେଳେ ପକ୍ଷ ସଞ୍ଚାଳନ ଫଳରେ ଏକ ପ୍ରକାର ସ୍ୱତନ୍ତ୍ର ଧାତବ ଶବ୍ଦ ଜାତ ହୋଇଥାଏ । ହରଡ଼ ଚଢ଼େଇ ପ୍ରାୟ ସମ୍ପୂର୍ଣ୍ଣ ରୂପେ ଫଳ ଖାଇ ଜୀବନ ଧାରଣ କରନ୍ତି । ବର, ଓସ୍ତ, ଡିମିରି ଫଳ ଆଦି ବିଭିନ୍ନ ଜାତିର ଏମାନଙ୍କର ମୁଖ୍ୟ ଆହାର । ସେମାନେ ମନୁଷ୍ୟ ପରି ଉଚ୍ଚ ନୀଚ ତାନରେ ଅତ୍ୟନ୍ତ ପ୍ରୀତିକର ଓ ସ୍ନିଗ୍ଧ ମୃଦୁ ସୁସୁର ଶବ୍ଦ କରନ୍ତି । ସଲ୍କୁରର ନୀଡ଼ କପୋତ ପରି କ୍ଷୁଦ୍ର କାଠିଦ୍ୱାରା ନିର୍ମିତ ହୋଇଥାଏ ଓ ମଞ୍ଚା ପରି । ଏହା ମଧ୍ୟମ ଆକାରର ବୃକ୍ଷ ଡାଳ ଭିତରେ ଲୁଚି ରହିଥାଏ । ପାରାବଂଶର ପକ୍ଷୀମାନେ ସାଧାରଣତଃ ଥରକେ ଦୁଇଟି ଅଣ୍ଡା ଦିଅନ୍ତି । ହରଡ଼ଖାଇ ମଧ୍ୟ ଦୁଇଟି ଅଣ୍ଡାଦିଏ । ତାହା ଧଳା ଓ ଉଜ୍ଜ୍ୱଳ ।

**ପାରାବତ** (ବର୍ଣ୍ଣଚିତ୍ର 45)—ଏହା ପାରା, ଦେଉଳିଆ ପାରା, ଗୋଲା ପାରା, କୋଠ ପାରା ଆଦି ବିଭିନ୍ନ ନାମରେ ପରିଚିତ । ଇଂରାଜୀ ନାମ 'ନୀଳ ପଥୁରିଆ ପାରା' (Blue Rock Pigeon) । ବୈଜ୍ଞାନିକ ନାମ 'କଲୋମ୍ବା ଲିଭିଆ' (Columba livia) । ହିନ୍ଦି-କବୁତର । ଏହା ଆମର ଗୋଟିଏ ଅତି ପରିଚିତ ପକ୍ଷୀ । ବର୍ଣ୍ଣ ଶିଲଟିଆ ଧୂସର ଏବଂ ବେକ ଓ ଛାତିର ଉପର ଅଂଶ ଚକଚକିଆ ଧାତବ ସବୁଜ, ବାଇଗଣି ଓ ମାଜେଣ୍ଟା ଲାଲ । ପକ୍ଷରେ ଦୁଇଟି କଳା ଶଳାକା ପରି ଚିହ୍ନଥାଏ ଏବଂ ଲାଞ୍ଜରେ ଏକଡ଼ରୁ ସେକଡ଼କୁ ଏକ ଓସାରିଆ କଳା ଚିହ୍ନଥାଏ । କାଉ ଓ ଘରଚଟିଆ ପରି ପାରା ଆମର ଏକ ଅତି ପରିଚିତ ପକ୍ଷୀ । ବଣ୍ୟ ପାରାବତ ରୁଚି ଅନୁସାରେ ଉତ୍ତୁରି ଯାଇଥିବା ଆମର ବିଭିନ୍ନ କିସମ (breed) ଗୃହପାଳିତ ପାରାମାନଙ୍କର ଆଦିପୁରୁଷ । ଏମାନେ ଖୋଲା ଗିରିଚୂଡ଼ା ଓ ପାହାଡ଼ିଆ ଅଞ୍ଚଳରେ ବାସକରନ୍ତି । ପାରାବତ ଘନ ଜଙ୍ଗଲରେ ରହନ୍ତିନାହିଁ । ଅଧିକାଂଶ ସ୍ଥାନରେ ବଣ୍ୟ ପାରାବତ ଓ ଗୃହପାଳିତ ପାରାବତ ଅବାଧରେ ପ୍ରଜନନ କରନ୍ତି । ଫଳରେ, ସେମାନେ ନିଶ୍ଚିତଭାବେ ମନୁଷ୍ୟର ଏକ ସହଭୋଜୀ (Commensal) ପ୍ରାଣୀରେ ପରିଣତ ହୋଇଅଛନ୍ତି । ଭାରତର ପ୍ରାୟ ପ୍ରତ୍ୟେକ ସହରରେ ସ୍ଥାୟୀ ଅଧିବାସୀ ପାରା ଦେଖିବାକୁ ମିଳନ୍ତି । ସେମାନେ ସବୁଠାରୁ ଗହଳ ହେଉଥିବା ବଜାର ଅଞ୍ଚଳର କୋଳାହଳ ଓ ଧମଧାମ ସହିତ ସମ୍ପୂର୍ଣ୍ଣରୂପେ

ଅଭ୍ୟସ୍ତ ଏବଂ ସେ ଅଞ୍ଚଳରେ ମଧ୍ୟ କୋଠାଘର ଉପରେ ଓ ଭିତରେ ଏକାନ୍ତ ସ୍ଥିତି ସ୍ଥାପନ କରନ୍ତି ଓ ନୀଡ଼ ରଚନାକରନ୍ତି । ଗୋଦାମଘର, କାରଖାନାର ଗ୍ରୁଦ ଘର, ମସଜିଦ, ରେଲଷ୍ଟେଶନ ଓ ମାଲଗାଡ଼ି ତଥା ଲଦା ଉତୁରା ପ୍ରାଙ୍ଗଣ ଏମାନଙ୍କର ବିଶେଷ ପ୍ରିୟ ବିଚରଣ ସ୍ଥାନ । ଏସବୁ ସ୍ଥାନକୁ ଏମାନେ ଆବର୍ଜନା ପୂର୍ଣ୍ଣ କରି ଅପ୍ରଶମିତ ଭାବେ ବିରକ୍ତିକର ଓ ଉତ୍ପୀଡ଼କ ପକ୍ଷୀରେ ପରିଣତ ହୋଇଅଛନ୍ତି । ବଣ୍ୟ ଅବସ୍ଥାରେ ପାରାବତ ସାଧାରଣତଃ ଦଳ ଦଳ ହୋଇ ପୁରାତନ କୂପର ଖୋପ, ଭଗ୍ନ କୋଠାଘର, ପାହାଡ଼ିଆ ଅଞ୍ଚଳରେ ଅବସ୍ଥିତ ପୁରାତନ ଦୁର୍ଗର ଗର୍ତ୍ତମାନଙ୍କରେ ଏବଂ ପର୍ବତର ଉଦ୍‌ଗତ ଭାଗର ଥାକ ଓ ଫାଟମାନଙ୍କରେ ବାସ କରନ୍ତି । ସେଠାରୁ ସେମାନେ ଖାଦ୍ୟ ଟୁଙ୍ଗିବା ପାଇଁ ନୂଆ ବୁଣା ହୋଇଥିବା ବା ଅମଳ ହୋଇଥିବା ଶସ୍ୟ, ଡାଲି ଜାତୀୟ ଶସ୍ୟ ଓ ଚିନାବାଦାମ କ୍ଷେତକୁ ଯା'ଆସ କରିଥାନ୍ତି । ପାରାମାନଙ୍କର ସ୍ୱନ ସହିତ ଆମେ ଅତ୍ୟନ୍ତ ପରିଚିତ । ଅଣ୍ଡିରା ପାରା ବେକ ଫୁଲାଇ ଗମ୍ଭୀର 'ଗୁଟୁ-ଗୁ, ଗୁଟୁ-ଗୁ' ଶବ୍ଦକରେ । ଏ ଶବ୍ଦ କଲାବେଳେ ସେ ସାଧାରଣତଃ ତା'ର ସଙ୍ଗିନୀ ଉଦ୍ଦେଶ୍ୟରେ ମୁଣ୍ଡନୁଆଁଏ ଓ ତା' ସମ୍ମୁଖରେ ଧୀରେ ଧୀରେ ଚକା ଭଉଁରି ଖେଳାଲାପରି ବୁଲେ । ପାରା କୁଟା କାଠିରେ ନୀଡ଼ ରଚନାକରନ୍ତି । ପାରାବଂଶର ପକ୍ଷୀମାନେ ଥରକେ ଦୁଇଟି ଅଣ୍ଡା ଦିଅନ୍ତି । ପାରା ମଧ୍ୟ ଦୁଇଟି ଅଣ୍ଡାଦିଏ । ତା'ର ବର୍ଣ୍ଣ ଧଳା ଓ ତା' ଉପରେ କୌଣସି ଚିହ୍ନ ନଥାଏ ।

**କପୋତ** (ବର୍ଣ୍ଣଚିତ୍ର 46, ଉପର ଚିତ୍ର)—ଏହାର ଇଂରାଜୀ ନାମ 'ଚିହ୍ନିତ କପୋତ' (Spotted dove) । ବୈଜ୍ଞାନିକ ନାମ 'ଷ୍ଟ୍ରେପ୍‌ଟୋ ପେଲିଆ ଚ୍ଚାଇନେନସିସ' (Streptopelia chinensis) । ହିନ୍ଦୀ ନାମ—ଚନ୍ଦୋକା ଫାଖ୍‌ଟା, ପାର୍କି । ଏହାର ଆକାର ବଣି ଚଢ଼େଇ ଓ ପାରାର ମଝାମଝି । ଏହା ଗୋଟିଏ ପାତଳା ପାରା । ଦେହ ଉପରିଭାଗର ବର୍ଣ୍ଣ ସ୍ପଷ୍ଟ ଧଳାଦାଗଯୁକ୍ତ ବାଇଗଣି-ବାଦାମୀ ଓ ଧୂସର । ବେକର ପଛ ପାଖରେ କଳା ଉପରେ ଧଳାଚିହ୍ନ ଥିବା ଚେସ ଖେଳ ପାଲି ପରି ଚିହ୍ନିତ । ଏମାନେ ଉତ୍ତମରୂପେ ଜଳ ପାଉଥିବା ଖୋଲା ଜଙ୍ଗଲାଞ୍ଚଳ ଓ କୃଷି ଅଞ୍ଚଳରେ ଯୋଡ଼ି ଯୋଡ଼ି ହୋଇ ବା କ୍ଷୁଦ୍ର କ୍ଷୁଦ୍ର ଦଳରେ ଧୂଳି ଧୂସରିତ ରାସ୍ତା, ଅମଳ ହୋଇ ଥୁଣ୍ଟା ଥିବା କ୍ଷେତ ଆଦିରେ ବୀଜ ଟୁଙ୍ଗୁଥିବାର ଦେଖାଯାଏ । ଯେଉଁଠି ଡରଭୟର କାରଣ ନାହିଁ, ସେଠାରେ କପୋତ ପୋଷା ମୁନିଆପରି ବଗିଚାରେ ପଶି ବୀଜ ଟୁଙ୍ଗେ । ଏପରିକି ଲୋକମାନଙ୍କର ଯିବାଆସିବାରେ ବିଚଳିତ ନ ହୋଇ ବଙ୍ଗଳା ଘରର ବରଗା ଖୋପରେ ନୀଡ଼ ରଚନା କରେ । ଏହାର ବାରମ୍ବାର ଉଚ୍ଚାରିତ ସ୍ୱନ ପ୍ରୀତିକର, ବରଂ କେତେକ ପରିମାଣରେ ବିଷାଦବୋଳା 'କ୍ରୁ-କୁକ୍-କ୍ରୁ-କ୍ରୁ…କ୍ରୁ-କ୍ରୁ-କ୍ରୁ' । ଏହି ସ୍ୱନରେ

'ନ୍'ର ସଂଖ୍ୟା ତିନରୁ ଛଅ ସଂଖ୍ୟାରେ ଥାଏ । ଏହାର ନୀଡ଼ ସାଧାରଣ ପକ୍ଷୀ ନୀଡ଼ପରି । ତାହା ବଙ୍ଗଳା ଘରର ସ୍ତମ୍ଭ ବା ଖୋପରେ ଓ ବୁଦାରେ କାଠିରେ ତିଆର ହୋଇଥାଏ କପୋତ ଥରକେ ସାଧାରଣତଃ ଦୁଇଟି ଧଳା ଅଣ୍ଡା ଦେଇଥାଏ ।

ଆଉ ଗୋଟିଏ କପୋତ ହେଲା **ଲାଲ କପୋତ** (ବର୍ଣ୍ଣଚିତ୍ର 46 ତଳ) । ଏହାର ଇଂରାଜୀ ନାମ 'ଲାଲ୍ କଇଞ୍ଚ କପୋତ' (Red Turtle Dove); ବୈଜ୍ଞାନିକ ନାମ 'ଷ୍ଟ୍ରେପ୍‌ଟୋପେଲିଆ ଟ୍ରାଙ୍କୁଇବାରିକା' (Streptopelia tranquebarica); ହିନ୍ଦୀ ନାମ ମେରେଟି ଫାଖ୍‌ତା, ଗିରଭଇ ଫାଖ୍‌ତା, ଇଦ୍ଧା । ଏହା ମଇନା ପକ୍ଷୀଠାରୁ ସାମାନ୍ୟ ବଡ଼ । ବର୍ଣ୍ଣଚିତ୍ରରେ ଅଙ୍କିତ ଲାଲ କପୋତର ଚିତ୍ର ଦିଆଯାଇଅଛି । ମାଈ ଲାଲ୍ କପୋତର କାନ୍ଧ ଓ ପକ୍ଷ ଅଞ୍ଚଳ ଉଜ୍ଜ୍ୱଳ ବାଇଗଣି ଆସିଆ ଇଟାପରି ଲାଲ-ବାଦାମୀ ପରିବର୍ତ୍ତେ ମସିଆ ବାଦାମୀ ଆସିଆ ଧୂସର । ମାଈପକ୍ଷୀ ପଞ୍ଝା (Ring Dove) ହିନ୍ଦୀ ନାମ ଛୋଟ ଫାଖ୍‌ତା ଚଢ଼େଇର ଏକ କ୍ଷୁଦ୍ର ସଂସ୍କରଣ ପରି ଦେଖାଯାଏ । ଲାଲ୍ କପୋତ ଖୋଲା ଗୁଳ୍ମଜମି ଓ ଅର୍ଦ୍ଧ-ମରୁଭୂମି ଅଞ୍ଚଳରେ ଅଳ୍ପ ସଂଖ୍ୟାରେ ଦେଖାଯାନ୍ତି । ଏମାନେ ସାଧାରଣ କପୋତ ପରି ଖୁବ୍ ସାଧାରଣ ନୁହନ୍ତି, ବରଂ ଆମର ଯେତେ ପ୍ରକାର କପୋତ ଅଛନ୍ତି, ତାଙ୍କ ଭିତରେ ସବୁଠାରୁ କମ୍ ସଂଖ୍ୟାରେ ଦେଖାଯାନ୍ତି । ସାଧାରଣ କପୋତ ମନୁଷ୍ୟ ବାସ ନିକଟରେ ବହୁ ସଂଖ୍ୟାରେ ଦେଖା ଯାଉଥିବା ବେଳେ, ଲାଲ୍ କପୋତ କ୍ୱଚିତ୍ ମନୁଷ୍ୟ ବାସ ବା ଯାତାୟତ ସ୍ଥାନରେ ଦେଖିବାକୁ ମିଳନ୍ତି । ଏହାର ସ୍ୱର ଏକପ୍ରକାର କର୍କଶ ଘୂର୍ଣ୍ଣ୍ୟମାନ ଶବ୍ଦ ଓ 'ଗ୍ରୁ-ଗୁର-ଗୁ, ଗ୍ରୁ-ଗୁର-ଗୁ' ପରି ଶୁଣାଯାଏ । ପର ପର ଏହା ବହୁବାର ଉଚ୍ଚାରିତ ହୋଇଥାଏ । ସାଧାରଣ କପୋତର ନୀଡ଼ ପରି ଲାଲ୍ କପୋତର ନୀଡ଼ କାଠିରେ ତିଆର ହୋଇଥାଏ ଓ ବୃକ୍ଷଡାଳରେ ତଳୁ ତିନରୁ ଛଅମିଟର ଉଚ୍ଚତାରେ ରଚିତ ହୋଇଥାଏ । ଏହା ଥରକେ ଦୁଇଟି ଧଳା ଅଣ୍ଡା ଦିଏ । ତଳୁ ଅନାଇଲେ ଅଣ୍ଡା ନୀଡ଼ ଫାଙ୍କଦେଇ ଦେଖାଯାଏ ।

**ସିଟାସି ଫର୍‌ମିସ** ବର୍ଗ (Order Psittaciformes)—କେବଳ ଗୋଟିଏ ବଂଶର ପକ୍ଷୀ ଏହି ବର୍ଗ ଅନ୍ତର୍ଭୁକ୍ତ । ତାହା ହେଲା ସିଟାସିଡ଼ି (Psittacidae) । ଶୁଆ ବା ଶୁକ (Parrots) ଏହି ବଂଶର । ଏମାନଙ୍କର ବିଶେଷ ଲକ୍ଷଣ ହେଲା— ଚଞ୍ଚୁ, ମଜବୁତ ଓ ବକ୍ରଶୀ କଣ୍ଟାପରି ଏକାବେଳକେ ବଙ୍କା ଥଣ୍ଟ; ଗୋଡ଼ କ୍ଷୁଦ୍ର, ଆରୋହଣ ଉପଯୋଗୀ ବା ଯୁଆଳି-ଅଙ୍ଗୁଳି (Zygodactyl) ଅର୍ଥାତ୍ ଦୁଇଟି ପଦାଙ୍ଗୁଳି ସାମନାକୁ ଓ ଦୁଇଟି ପଛକୁ ମୁଖ କରିଥାଏ । ଶୁକମାନଙ୍କର ପକ୍ଷ ମୁଖ୍ୟତଃ

ସବୁଜ ଓ ଆଲୁ ଶାରକ ବର୍ତ୍ତି, ମାତ୍ର ଏମାନେ ଫସଲ ଓ ଫଳ ବଗିଗୃର ବହୁତ କ୍ଷତି କରନ୍ତି । ଅର୍ଥନୈତିକ ଦୃଷ୍ଟିକୋଣରୁ ଏମାନେ ଏତେ ଦୋଷୀ ଯେ ସେଥିରୁ ତାଙ୍କୁ ମୁକୁଳାଇଲା ଭଳି ଗୁଣ ସେମାନଙ୍କର ନାହିଁ । ଆମର ସବୁଠାରୁ ସାଧାରଣ ଶୁକ ହେଲା **ଚନ୍ଦନା** (ବର୍ଣ୍ଣ ଚିତ୍ର-47) । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଏହାର ନାମ ଛିଲ୍‌ଆଖାଇ, ଛିଲ୍‌ଆଙ୍କ୍ଲେ ଶୁଆ, ଚନ୍ଦନ, ଶୁଆ ଓ ଟିଆ । ଇଂରାଜି ନାମ 'ଲାଲମୁହଁଆ ତୋତା' (Roseringed Parakeet) । ବୈଜ୍ଞାନିକ ନାମ 'ସିଟାକୁଲ୍ କ୍ରାମେରୀ' (Psittacula Krameri) । ହିନ୍ଦୀ ନାମ—ତୋତା, ଲବାର ତୋତା । ଏହା ମଇନା ଅପେକ୍ଷା ସାମାନ୍ୟ ବଡ଼ । ଏହାର ଲାଞ୍ଜ ଲମ୍ବା ଓ ଗୋଜିଆ । ବର୍ଣ୍ଣ ଘାସ ପରି ସବୁଜ । ଥଣ୍ଟ ଟ୍ରେଟ, ମଜବୁତ, ବନଶୀକଣ୍ଟା ପରି ଅତ୍ୟନ୍ତ ବଙ୍କା ଓ ଲାଲ୍ । ବେକ ଗୃଣ୍ଡପଟେ କଳା ଓ ଗୋଲାପୀ ବାଇଗଣି ମିଶା ଏକ ପଟି ଥାଏ । କାଉ, ଘରଚଟିଆ, ବଣି ଓ ପାରାପରି ଚନ୍ଦନା ଏକ ଅତି ପରିଚିତ ପକ୍ଷୀ । ଏମାନେ ଅତି ଅଧିକ ସଂଖ୍ୟାରେ ଦଳ ବାନ୍ଧି ଯଥେଷ୍ଟ ଖାଦ୍ୟ ଥିବା କ୍ଷେତବାଡ଼ି ଓ ସହର ଅଞ୍ଚଳରେ ପଶି ଫସଲ ଉଜାଡ଼ନ୍ତି । କୃଷକ ଓ ଫଳ ଉଦ୍ୟାନ ଗୃହୀମାନଙ୍କର ଏମାନେ ଏକ ବଡ଼ ଶତ୍ରୁ । ଶସ୍ୟ ଓ ଫଳ ପାଚିଥିବା ସମୟରେ ଏମାନେ ଆସି ସେ ସବୁକୁ ନଷ୍ଟ କରିପକାନ୍ତି । ଯେତେ ଖାଆନ୍ତି ତା'ଠୁ ବେଶି ଖଣ୍ଡିଆ କରି ନଷ୍ଟ କରିଦିଅନ୍ତି । ରେଲଷ୍ଟେସନମାନଙ୍କରେ ବଳଦଗାଡ଼ି, ଟ୍ରକ୍‌ରେ ଲଦା ହୋଇ ଯିବାକୁ ରହିଥିବା ଶସ୍ୟ ଓ ଚନାବାଦାମ ବସ୍ତା ଉପରେ ଚନ୍ଦନା ପକ୍ଷୀସବୁ ବସ୍ତାକୁ କାମୁଡ଼ି ଧରି ଧୀରେ ସୁସ୍ଥେ ଥଣ୍ଟରେ ସେଥିରୁ ଶସ୍ୟ ଓ ଫଳ ଖାଇବା ଏକ ସାଧାରଣ ଦୃଶ୍ୟ । ଚନ୍ଦନାମାନେ ଏକତ୍ର ତରୁବୀଥିମାନଙ୍କରେ ଦଳବାନ୍ଧି ରାତ୍ରି ଯାପନ କରନ୍ତି । ଅନେକ ସମୟରେ କୋଳାହଳମୟ ନଗରର ସୀମାନା ଭିତରେ ଥିବା ନିକୁଞ୍ଜରେ ସେମାନେ ରାତ୍ରି ଯାପନ କରନ୍ତି । ଆଖପାଖର ଗାଁ ଗଣ୍ଡାରେ ପଶି ଚଢ଼ାଉ କରି ପ୍ରତି ସନ୍ଧ୍ୟାରେ ଦୂରଦୂରାନ୍ତରରୁ ଦଳ ଦଳ ହୋଇ ଚନ୍ଦନା ପକ୍ଷୀ କଳରବ କରି ସେଠାକୁ ଫେରୁଥିବାର ଦେଖାଯାଏ । ସେମାନଙ୍କର ଚିର୍ ଚିରିଆ ତୀକ୍ଷ୍ଣ ଶବ୍ଦ 'କିଅକ୍, କିଅକ୍, କିଅକ୍' ଆମର ପରିଚିତ । ବସିଥିଲାବେଳେ ଓ ଉଡ଼ୁଥିଲାବେଳେ ଉଭୟ ସମୟରେ ଏହି ଶବ୍ଦ ଉଚ୍ଚାରିତ ହୋଇଥାଏ । ଚନ୍ଦନା ଓ ନାହାକା ଶୁଆ (ପରେ ଦେଖ) ଉଭୟ ପକ୍ଷୀକୁ ଲୋକେ ପଞ୍ଜୁରୀରେ ରଖି ପାଳନ୍ତି ଓ କଥା ଶିଖାନ୍ତି । ସେମାନେ କେତେକ ଶବ୍ଦ ଓ ବାକ୍ୟକୁ ଅସ୍ପଷ୍ଟଭାବେ ଉଚ୍ଚାରଣ କରନ୍ତି । ଶିଖାଇଲେ ସେମାନେ ନାନାପ୍ରକାର କୌତୁକିଆ ଖେଳ ପ୍ରଦର୍ଶନ ମଧ୍ୟ କରିପାରନ୍ତି; ଯଥା—ଖେଳ ତୋପରେ ବାରୁଦ ଭର୍ତ୍ତି କରି ଫୁଟାଇବା । ଚନ୍ଦନା ଥରକେ ଗୃହଟିଙ୍କୁ

ଛଅଟି ଯାଏ ଅଣ୍ଡା ଦିଏ । ଏହା ବିଶୁଦ୍ଧ ଧଳା ଏବଂ ଗୋଲ ଅଣ୍ଡାକାର । ସିନ୍ଦୁର ମୁଣ୍ଡି (Barbet) ବା କାଠହଣା (Woodpecker)ର ପୁରୁଣା ଗର୍ତ୍ତ, ଧ୍ୱଂସ ଚୂଡ଼ାର ଛାଲୁ ଅଂଶର ପଥର ତଳେ ଓ ଅବ୍ୟବହୃତ ଘରର କାନ୍ଥ ଉପରେ ଏମାନେ ଅଣ୍ଡା ଦିଅନ୍ତି । ସଂଘବଦ୍ଧ ଭାବରେ ଅନେକ ପକ୍ଷୀ ଏକ ସ୍ଥାନରେ ଅଲଗା ଭାବେ ଅଣ୍ଡା ଦେଇଥାନ୍ତି ।

**ନାହାକା ଶୁଆକୁ** ସ୍ଥାନ ବିଶେଷରେ ଚନ୍ଦନା, ମେରୁ, ଶୁଆ, ଟିଆ ଓ ମଦନା କୁହାଯାଏ । ଇଂରାଜୀ ନାମ 'ବୃହତ୍ ଭାରତୀୟ ତୋତା' (Large Indian Parakeet) ଓ 'ଆଲେକ୍‌ଜାଣ୍ଡ୍ରିନ ଶୁଆ' (Alexandrine Parakeet) । ବୈଜ୍ଞାନିକ ନାମ 'ସିଟ୍ଟାକୁଲା ଇଉପଟ୍ରିଆ' (Psittacula eupatria) । ହିନ୍ଦି ନାମ ରାଇ ତୋତା, ହୀରାମନ୍ ତୋତା । ଏହାର ଆକାର ବଡ଼, ଥଣ୍ଟ ବଡ଼ ଓ ନାଲି । ଅଣ୍ଡିରା ନାହାକା ଶୁଆର କାନ୍ଧରେ ବାଦାମୀ ଆଭିଆ ଗାଢ଼ ଲାଲ୍ ରଙ୍ଗର ଏକ ଛୋପ ଚିହ୍ନ ଥାଏ ଓ ବେକ ପୃଷ୍ଠପଟେ କଳା-ବାଇଗଣି ରଙ୍ଗର ପଟି ଚିହ୍ନଥାଏ । ମାଈପକ୍ଷୀର କାନ୍ଧ ଓ ବେକ ପୃଷ୍ଠପଟେ ଏପରି ଚିହ୍ନ ସବୁ ନଥାଏ । ନାହାକାଶୁଆ ଅଧିକ ଜଙ୍ଗଲିଆ ଓ ଅଳ୍ପ ସହରିଆ ଅଞ୍ଚଳରେ ବାସ କରନ୍ତି । ଉଭୟ ଚନ୍ଦନା ଓ ନାହାକା ଶୁଆ ଶାବକ ବହୁ ସଂଖ୍ୟାରେ ବିକ୍ରି ହେବା ଲାଗି ପକ୍ଷିବଜାରକୁ ଆସିଥାଏ ।

**କୁକୁଲି ଫରମିସ୍** (Order CUCULIFORMES) ବର୍ଗବିଭିନ୍ନ ଜାତି କୋଇଲି ଏହି ବର୍ଗ ଅନ୍ତର୍ଭୁକ୍ତ । ଏମାନେ ପୃଥିବୀର ପ୍ରାୟ ସର୍ବତ୍ର ଦେଖାଯାନ୍ତି । ପ୍ରାଚୀନ ଗୋଲାର୍ଦ୍ଧ (Old world)ର ଅନେକ ଜାତି କୋକିଳ ସେମାନଙ୍କର ଅଣ୍ଡ ପରଜୀବିତା (brood parasitism) ଅଭ୍ୟାସ ଲାଗି କୁଖ୍ୟାତ । ଅର୍ଥାତ୍ ସେମାନେ ଅନ୍ୟ ପକ୍ଷୀର ନୀଡ଼ରେ ଅଣ୍ଡା ଦେଇ ସେହି ପକ୍ଷୀମାନଙ୍କ ଉପରେ ଅଣ୍ଡା ଉଷୁମାଇବା ଓ ଶାବକ ପାଳନ ଭାର ଗୋପନରେ ଲଦିଦିଅନ୍ତି । ଏପରି ପରଜୀବୀ କୋକିଳମାନଙ୍କ ମଧ୍ୟରେ ସର୍ବୋଚ୍ଚ କୋଟିର ଉଦାହରଣ ହେଲା 'ୟୁରୋପୀୟ ପିକ' (European Cuckoo) । ଏହାର ବୈଜ୍ଞାନିକ ନାମ 'କୁକୁଲସ କାନୋରସ' (Cuculus canorus) କାଶ୍ମୀର ଓ ପଶ୍ଚିମ ହିମାଳୟ ପର୍ଯ୍ୟନ୍ତ ଏହାର ବିସ୍ତୃତି । ଏ ଜାତୀୟ ପିକର ଏକ ପ୍ରଜାତି (race) ଆସାମରେ ସ୍ଥାୟୀ ଅଧିବାସୀରୂପେ ଦେଖିବାକୁ ମିଳେ; ମାତ୍ର ଭାରତୀୟ ଉପ-ମହାଦେଶର ସବୁଠାରୁ ସାଧାରଣ ଏ ଜାତୀୟ ପରଜୀବୀ ପିକ ହେଲା ଆମର ଅତି ପରିଚିତ **କୋଇଲି** (ବର୍ଣ୍ଣଚିତ୍ର 48) । ଏ ପକ୍ଷୀକୁ ଇଂରାଜୀରେ 'କୋଏଲ୍' (Koel) କହନ୍ତି । ଏହାର ବୈଜ୍ଞାନିକ ନାମ 'ଇଉଡାଇନାମିସ ସ୍କୋଲୋପାସିଆ'

(Eudynamys scolopacea) । ହିନ୍ଦି ନାମ—କୋଏଲ, କୋକଲ । ଏହା ଆକାରରେ କାଉ ପରି ହେବ; ମାତ୍ର କାଉ ଅପେକ୍ଷା କ୍ଷୀଣ ଓ ଲମ୍ବା କାଉ ତୁଳନାରେ ବଡ଼ । ଅଣ୍ଡିରି ପକ୍ଷୀର ସମଗ୍ର ଶରୀର ଚକଚକିଆ ଧାତବ କଳା, ଥଣ୍ଟ ସ୍ପଷ୍ଟ ହଳଦିଆ ଆଭିଆ ସବୁଜ ଓ ଆଖି ଗାଢ଼ ନାଲ ବା ରକ୍ତ-ଲୋହିତ । ମାଈ ପକ୍ଷୀର ବର୍ଣ୍ଣ ବାଦାମୀ ଓ ତା' ଉପରେ ଧଳା ରଙ୍ଗର ଟିପିଟିପିଆ ଚିହ୍ନ ଥାଏ । କୋଇଲି ପ୍ରକୃତପକ୍ଷେ ଉଦ୍ୟାନ ଓ ତରୁବୀଥିରେ ଏକ ସାଧାରଣ ପକ୍ଷୀ ହୋଇଥିଲେ ମଧ୍ୟ ତାକୁ କମ୍ ଲୋକ ଦେଖି ଚିହ୍ନିଛନ୍ତି । ବରଂ ତାର ଡାକ ସହିତ ଲୋକେ ବେଶି ପରିଚିତ । ଏହା ପୂର୍ଣ୍ଣପୂରି ବୃକ୍ଷବାସୀ ଓ କେବେହେଲେ ତଳକୁ ଓହ୍ଲାଇ ଭୂମିରେ ଆସି ବସେନାହିଁ । ଶୀତ କାଳରେ ଏହା ନୀରବ । ତେଣୁ ଲୋକେ ତାକୁ ଦେଖି ମଧ୍ୟ ଦେଖନ୍ତିନାହିଁ ଓ ବିଚାରନ୍ତି କୋଇଲି ଶୀତକାଳରେ ଅନ୍ୟ ସ୍ଥାନକୁ ଚାଲିଯାଏ । ଗ୍ରୀଷ୍ମଋତୁ ଓ ତା' ସଙ୍ଗେ ସଙ୍ଗେ ପ୍ରଜନନ ଋତୁ ଆସିଗଲେ ଅଣ୍ଡିରା ପକ୍ଷୀର କଣ୍ଠ ପୁଣି ଫିଟିଯାଏ ଏବଂ ତା'ର ଉଚ୍ଚନାଦିତ ତୀବ୍ରରୁ ତୀବ୍ରତର 'କୁଉ-କୁଉ-କୁଉ' ତାନରେ ଉଦ୍ୟାନ ଅତ୍ୟନ୍ତ ମୁଖରିତ ହୋଇଉଠେ । ପ୍ରଥମେ ଅନୁଚ୍ଚ 'କୁଉ' ଡାକ ପରେ ସେହି ଡାକ ଉଚ୍ଚରୁ ଉଚ୍ଚତର ହୋଇ ସପ୍ତମ ବା ଅଷ୍ଟମ ଡାକବେଳକୁ ଅତି ଉନ୍ନତ ହୋଇଉଠେ ଓ ତା'ପରେ ବନ୍ଦ ହୁଏ । ଅବିଳମ୍ବେ ପୁଣି ସେହିପରି କୁହୁସ୍ୱନ ଆରମ୍ଭ ହୋଇ ସର୍ବୋଚ୍ଚ ତାନ ଯାଏ ଉଠେ, ଏଇପରି ଚାଲିଥାଏ । କୋକିଳର 'ସଙ୍ଗୀତ' ହିନ୍ଦି ସାହିତ୍ୟର ରସମୟ କବିତାରେ (ଓଡ଼ିଆ ସାହିତ୍ୟରେ ମଧ୍ୟ) ଉଚ୍ଚ ପ୍ରଶଂସିତ ହୋଇଅଛି । ପିକର ଧ୍ୱନି ଅଳ୍ପ ଅଳ୍ପ ଶୁଣିବାକୁ ଅବଶ୍ୟ ମଧୁର; ମାତ୍ର ବାରମ୍ବାର ଉଚ୍ଚରୁ ଉଚ୍ଚତର ସେହି ଏକା 'କୁହୁ' ଶବ୍ଦ କ୍ରମେ ଏକଘେରିଆପନ୍ନ (monotonous) ଲାଗେ ଏବଂ ବେଳେ ବେଳେ ଅବିରାମ ଚିରଚିରିଆ କୁହୁତାନ ଅସହନୀୟ ଓ ବିରକ୍ତିକର ହୋଇଉଠେ । ଏହି କାରଣରୁ କୋଇଲିକୁ ଭ୍ରମବଶତଃ 'ମଥାଧରା ପକ୍ଷୀ' (Brainfever bird) ବୋଲି କହିଥାନ୍ତି । ପ୍ରକୃତପକ୍ଷେ ମଥାଧରା ପକ୍ଷୀ ହେଉଛି ପାପିହା ପକ୍ଷୀ । ଏହାକୁ ଇଂରାଜୀରେ 'ବାଜ କୋଇଲି' (Hawk-Cuckoo) ଓ ହିନ୍ଦିରେ ପାପିହା କହନ୍ତି । ମାଈ କୋଇଲିର ସ୍ୱର ନାହିଁ । ଗଛରୁ ଗଛକୁ ଉଡ଼ିଗଲାବେଳେ ବା ଏ ଡାଳରୁ ସେ ଡାଳକୁ ଡେଇଁଲା ବେଳେ ସେ କେବଳ ଏକପ୍ରକାର କର୍କଶ 'କିକ୍-କିକ୍ କିକ୍' ଶବ୍ଦ କରେ । ବର ଓ ଓସ୍ତ ଗଛର ଫଳ, ନାନା ପ୍ରକାର ଭଇଁଚ ଜାତୀୟ କୋଳି ଓ ସଁବାଳୁଆ କୋଇଲିର ପ୍ରଧାନ ଖାଦ୍ୟ । କାଉ ଓ ଡାମରା କାଉ ଯେତେବେଳେ ଅଣ୍ଡା ଦିଅନ୍ତି, କୋଇଲି ସେହି ସମୟରେ ଅଣ୍ଡା ଦିଏ । ଅନ୍ୟ 'ପରଜୀବୀ' କୋଇଲି-

ମାନଙ୍କପରି କୋଇଲି ସାଧାରଣତଃ କାଉ ଓ ଡାମରା କାଉ ବସାରେ ଅଣ୍ଡା ଦେଇ ଚାଲି ଆସେ, ନିଜେ ନୀଡ଼ ରଚନା କରେନାହିଁ । କାଉ ଓ ଡାମରା କାଉଁ କୋଇଲି ଅଣ୍ଡାକୁ ଉଷୁମାନ୍ତି ଓ ଛୁଆଙ୍କୁ ପାଳନ କରନ୍ତି । ମାଈ କୋଇଲି ଗୋଟିଏ କାଉ ବା ଡାମରା କାଉ ବସାରେ ଯାଇ ଅଣ୍ଡା ନ ଦେଇ ଅନେକ ଗୁଡ଼ିଏ ବସାରେ ବାଣ୍ଟିକରି ଅଣ୍ଡା ଦେଇ ଆସେ । ଅଣ୍ଡା ଦେଖିବାକୁ ଫିକା ଧୂସର ସବୁଜ; ତା ଉପରେ ଲାଲ୍-ବାଦାମି ବର୍ଣ୍ଣର ଟିପ୍ ଟିପ୍ ଓ ମୁଣ୍ଡା ମୁଣ୍ଡା ଚିହ୍ନ ଥାଏ । କୋଇଲି ଅଣ୍ଡା ଅନେକ ପରିମାଣରେ କାଉ ଅଣ୍ଡା ପରି ମାତ୍ର କ୍ଷୁଦ୍ରତର । ଏକ ପ୍ରକାର କୋଇଲି ଅଛନ୍ତି, ଯେଉଁମାନେ 'ପରଜୀବୀ' ନୁହନ୍ତି । ଏହି କୋଇଲି ଅନ୍ୟ ପକ୍ଷୀ ବସାରେ ଅଣ୍ଡା ନ ଦେଇ ନିଜେ ବସାକରି, ସେଥିରେ ଅଣ୍ଡା ଦେଇ ଶାବକର ଯତ୍ନ ନିଏ । ତା'ର ଏକ ଉଦାହରଣ ହେଲା **କୁମ୍ଭାଟୁଆ** (ବର୍ଣ୍ଣଚିତ୍ର 49) । ଓଡ଼ିଶାର କେତେକ ସ୍ଥାନରେ ଏହାକୁ କୁମ୍ଭାଟି ବୋଲି ମଧ୍ୟ କହିଥାନ୍ତି । ଇଂରାଜୀ ନାମ 'କାକ-ଫେଜେଣ୍ଟ' (Crow-Pheasant), କୋଉକାଲ (coucal) । ବୈଜ୍ଞାନିକ ନାମ 'ସେଣ୍ଟ୍ରୋପାସ୍ ସାଇନେନ୍‌ସିସ୍' (Centropus sinensis), ହିନ୍ଦି ମୋହୋକା, କୁକା । ଏହାର ଆକାର ପର୍ବତିଆ କାଉର ଆକାର ପରି । ଏହା ଗୋଟିଏ ପରିପାଟୀହୀନ ପକ୍ଷୀ, ଦେଖିବାକୁ କେମିତିକା ଆବୁରୁ ଜାବୁରୁ, ମାତ୍ର ତାର ବର୍ଣ୍ଣ ସ୍ପଷ୍ଟ । ଚକଚକିଆ କଳା, ପକ୍ଷ ଘନ ବାଦାମୀ, ଲାଞ୍ଜ କଳା, ଦୀର୍ଘ, ଓସାରିଆ ଏବଂ ମୂଳ ଓ ଅଗ ଆଡ଼କୁ କ୍ରମଶଃ ସାମାନ୍ୟ ସରୁ । ବୁଦା ଓ ଛୋଟ ଗଛ ଥିବ, ତା' ଭିତରେ ଠାଏ ଠାଏ ଉଚ୍ଚ ଘାସ ଭୂମି ଓ ଚାଷ ଜମି ଥିବ, ଏପରି ଖୋଲା ଅଞ୍ଚଳରେ କୁମ୍ଭାଟୁଆ ରହେ । ଏହା ଅନେକ ସମୟରେ ମନୁଷ୍ୟର ବାସ ନିକଟରେ ଦେଖିବାକୁ ମିଳେ ଓ ଇଚ୍ଛାନୁସାରେ ବଗିଚାରେ ପ୍ରବେଶ କରେ । ଏହା ମୁଖ୍ୟତଃ ଏକ ଭୂମିବାସୀ ପକ୍ଷୀ ଏବଂ ଅଧିକାଂଶ ସମୟ ଭୂମିରେ ଇଚ୍ଛାକରି ଗୁଳି ଗୁଳି ଗୁଳ୍ମ ମଧ୍ୟରେ ଖାଦ୍ୟ ଅନ୍ୱେଷଣରେ ବିତାଏ । ଏ ସମୟରେ ଲାଞ୍ଜ ପ୍ରାୟ ତଳେ ଲାଗି ଘୁଷୁରୁଥାଏ ଏବଂ ଲୁଚି ରହିଥିବା କୀଟ ପତଙ୍ଗମାନଙ୍କୁ ହୁରୁଡ଼ାଇ ପଦାକୁ ବାହାର କରିବା ପାଇଁ ମଧ୍ୟେ ମଧ୍ୟେ ପକ୍ଷ ଖୋଲେ ଓ ବନ୍ଦକରେ । ଖାଦ୍ୟ ଅନ୍ୱେଷଣରେ କୁମ୍ଭାଟିଆ ବୁଦା ଗଛରେ ଚଢ଼େ ଓ ତତ୍ପରତା ସହକାରେ ଏ ଡାଳରୁ ସେ ଡାଳକୁ ଡେଇଁଥାଏ । ଏହାର ରାବ ଏକ ପ୍ରକାର ଗମ୍ଭୀର, ପ୍ରତିଧ୍ୱନିତ 'ଉକ୍' । ନିୟମିତ ବ୍ୟବଧାନରେ ଏହି ସ୍ୱନ ଧୀର ମାତ୍ର ବାରମ୍ବାର ଶୁଣିବାକୁ ମିଳେ । ବିଶେଷକରି ଖରାଦିନେ ଏହି ରାବ ବେଶି ଶୁଣାଯାଏ ଓ ଅନେକ ଦୂରଯାଏ ଶୁଣାଯାଏ । କୁମ୍ଭାଟୁଆ ଏହି ରାବକୁ ଆଉ ପ୍ରକାରେ ମଧ୍ୟ କରିଥାଏ । ତାହା ବାରମ୍ବାର ଉଚ୍ଚାରିତ ବରଂ ସଙ୍ଗୀତ-

ସ୍ୱର 'କୁର୍ର୍-କୁପ୍-କୁପ୍-କୁପ୍' । ଏହି 'କୁପ୍' ସାତଥର ଓ କୋଡ଼ିଏ ଥର ପର୍ଯ୍ୟନ୍ତ ଉଚ୍ଚାରିତ ହୁଏ ଓ ପ୍ରତି ସେକେଣ୍ଡରେ ଦୁଇ ତିନୋଟି 'କୁପ୍' ଉଚ୍ଚାରିତ ହୁଏ । ଏ ପ୍ରକାର ରାବ ପରେ ଦୂରରେ ଥିବା ଅନ୍ୟ ଗୋଟିଏ କୁମ୍ଭାଟୁଆ ତା'ର ଜବାବରେ ସେପରି ଡାକ ଦିଏ । ଅନିୟମିତ ବ୍ୟବଧାନରେ ଦୁଇ ପକ୍ଷୀ ମଧ୍ୟରେ ଏହିପରି ଡାକ ଦିଆଦେଇ ଚାଲିଥାଏ । ଆହୁରି ମଧ୍ୟ କୁମ୍ଭାଟୁଆ ବିଶୃଙ୍ଖଳ ଭାବେ ମିଶ୍ରିତ କର୍କଶ ରାବ ଓ କଳରବ କରେ । ତାହା ଶୁଣିଲେ ଭୀତ ଲାଗେ । ପ୍ରଜନନ ଋତୁରେ ପୁରୁଷ ପକ୍ଷୀ ମାଈ ପକ୍ଷୀ ସମ୍ମୁଖରେ ବିଚିତ୍ର ନୃତ୍ୟ ପ୍ରଦର୍ଶନ କରେ; ଯଥା—ଲାଞ୍ଜ ଦୋହଲାଇବା ଓ ପିଠି ଉପରକୁ ତେରଛା କରି ବଙ୍କାଇବା ଏବଂ ପକ୍ଷକୁ ନତ କରି ସଗର୍ବରେ ପଦଚାରଣା କରିବା । କୁମ୍ଭାଟୁଆର ଉଡ଼୍ଡୟନ କ୍ଷୀଣ ଓ କୃଚ୍ଛ୍ରସିଦ୍ଧ । ଋଥକେ ସେ ଅଳ୍ପଦୂର ମାତ୍ର ଉଡ଼ିପାରେ । ଝିଣ୍ଟିକା ଓ ଅନ୍ୟ ବଡ଼ ବଡ଼ ପତଙ୍ଗ, ପାଦଗଣ୍ଡିକ ବା ସମ୍ବାଳୁଆ, ପତ୍ରିଆ ମୂଷା, ଏଣ୍ଡୁଅ ଆଦି ସରୀସୃପ ଏବଂ ଛୋଟ ଛୋଟ ସାପ ଆଦି କୁମ୍ଭାଟୁଆର ଖାଦ୍ୟ । କ୍ଷୁଦ୍ର କ୍ଷୁଦ୍ର ପକ୍ଷୀମାନଙ୍କର ଅଣ୍ଡା ଓ ଶାବକମାନଙ୍କୁ ସେ ବହୁଳଭାବେ ହତ୍ୟାକରି ଖାଏ ଏବଂ ସେଥିପାଇଁ ସେ ଶୃଙ୍ଖଳିତ ଭାବେ ଭୂମି ଉପରେ ଓ ବୁଦାମାନଙ୍କରେ ଶିକାର କରେ । ଅନାଡ଼ି ବୈଦ୍ୟମାନେ କୁମ୍ଭାଟୁଆର ମାଂସ ଶ୍ୱାସନଳୀ ସମ୍ପର୍କୀୟ ରୋଗରେ ବିଶେଷ ଉପକାରୀ ବୋଲି କହିଥାନ୍ତି । କୁମ୍ଭାଟୁଆ ଗୋଟିଏ ପରଜୀବୀ କୋଇଲି ନୁହେଁ ଏବଂ ନିଜର ଶାବକମାନଙ୍କୁ ପାଳନ କରିଥାଏ; କୋଇଲି ପରି ପର ନୀଡ଼ରେ ଯାଇ ଅଣ୍ଡା ଦେଇଆସେ ନାହିଁ । କଣ୍ଟା ଗଛରେ ଭୂମିଠାରୁ ଅଳ୍ପ ଉଚ୍ଚରେ ସେ କାଠି ପତ୍ରରେ ନୀଡ଼ ରଚନା କରେ । ନୀଡ଼ ଦେଖିବାକୁ ଗୋଲାକାର ଓ ତା'ର ଦ୍ୱାର ମଝିରେ ନଥାଇ କଡ଼ପଟିଆ ଥାଏ । ଥରକେ ତିନୋଟିରୁ ଚାରୋଟି ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଧଳା ଓ ଉପରି ଭାଗ ଚକ୍‌ଚକ୍ ପରି, ତା ଉପରେ କୌଣସି ଚିହ୍ନ ନଥାଏ ।

ଷ୍ଟ୍ରିଜିଫରମିସ୍ ବର୍ଗ (order STRIGIFORMES)—ପେଚା ଏହି ବର୍ଗ ଅନ୍ତର୍ଭୁକ୍ତ । ଷ୍ଟ୍ରିଜିଫରମିସ୍ ବର୍ଗ ଦୁଇଟି ବଂଶ (family)ରେ ବିଭକ୍ତ; ଯଥା—ଟାଇଟୋନିନି (Tytoninae) ଓ ଷ୍ଟ୍ରିଜିଡ଼ି (Strigidae) । ଲକ୍ଷ୍ମୀ ପେଚା (Barn owl) ଟାଇଟୋନିନି ବଂଶର ଏବଂ ପ୍ରକୃତ ପେଚା (True owl) ଷ୍ଟ୍ରିଜିଡ଼ି ବଂଶଭୁକ୍ତ । ଲକ୍ଷ୍ମୀପେଚାର ବୈଜ୍ଞାନିକ ନାମ 'ଟାଇଟୋ ଆଲବା' (Tyto alba) । ଟାଇଟୋ ଜାତି ବଂଶର ପେଚକମାନଙ୍କର ମୁଖ ଚପା, ଅନେକ ପରିମାଣରେ ମାଙ୍କଡ଼ର ମୁହଁପରି । ଏମାନେ ପୃଥିବୀସାରା ଦେଖାଯାନ୍ତି । ପ୍ରକୃତ ପେଚକମାନଙ୍କର ମୁଣ୍ଡ ଗୋଲ, ଆଖି ବଡ଼, ଗୋଲାକାର ଓ ସମ୍ମୁଖକୁ ବିସ୍ତାରିତ ହୋଇରହିଥାଏ । ସେମାନଙ୍କ ମଧ୍ୟରୁ କେତେକ

କାଠ ପେଚକଙ୍କର ଆଖି ଉପରକୁ ଉତ୍ତୋଳନକ୍ଷମ ଶିଙ୍ଗ ପରି ପରିଗୁଚ୍ଛ ଥାଏ । ଆମର ସବୁଠାରୁ ସାଧାରଣ ପେଚାମାନଙ୍କ ମଧ୍ୟରେ ଗୋଟିଏ ହେଲା, **ରାଜପେଚା** (ଚିତ୍ର 50) । ଏହାକୁ ଇଂରାଜୀରେ 'ଟିପ୍‌ଟିପିଆ ପେଚକ' (Spotted owlet) କହନ୍ତି । ବୈଜ୍ଞାନିକ ନାମ 'ଏଥେନେ ବ୍ରମା' (Athene brama) । ହିନ୍ଦି ନାମ— ଖୁସାଟିଆ, ଚୁଗ୍‌ହଡ଼୍ । ଏହାର ଆକାର ବଣି ପରି ମାତ୍ର ଅଧିକ ସ୍ଥୂଳ । ଏହା ଗୋଟିଏ ଛୋଟ ସ୍ଥୂଳ ଓ ବାଙ୍ଗରା ପେଚା । ବର୍ଣ୍ଣ ଧୂସର ବାଦାମୀ ଓ ତା' ଉପରେ ଧଳା ଟିପ୍‌ଟିପିଆ ଚିହ୍ନ ପଡ଼ିଥାଏ । ପ୍ରକୃତ ପେଚାର ଗଢ଼ଣ ପରି ଏହାର ମୁଣ୍ଡ ଗୋଲାକାର, ଆଖି ସମ୍ମୁଖକୁ ପ୍ରସାରିତ ଓ ସେ ଅପଲକ ଦୃଷ୍ଟିରେ ଅନାଇଥିଲା ପରି ମନେହୁଏ । ଏହା ଖୋଲା ସମତଳ ଅଞ୍ଚଳ ଓ ପର୍ବତର ପାଦଦେଶ ଅଞ୍ଚଳରେ ବାସକରେ । ଜନବସତି ମଧ୍ୟରେ ମଧ୍ୟ ରାଜପେଚା ସୁରୁଖୁରୁରେ ବାସ କରିବାର ଦେଖାଯାଏ । ପୁରୁଣା ଆମ୍ବ, ବର ବା ସେହିପରି ଗଛ କୋରଡ଼ରେ ଏମାନେ ରହନ୍ତି । ଗୋଟିଏ ଗଛରେ ଏକ ବା ଦୁଇ ଯୋଡ଼ା ରାଜପେଚା ଥାଆନ୍ତି । ଗଛ ପାଖକୁ ଯାଇ ଗଣ୍ଡିରେ ଠକ୍ ଠକ୍ କଲେ ଖୋଲର ଦ୍ୱାର ମୁହଁରେ ଦୁଇଟି ମୁହଁ ଦେଖାଯାଏ । କୌଣସି ନିଭୃତ ଡାଳ ଉପରେ ଜାକିଜୁକି ହୋଇ ଯୋଡ଼ାଏ ରାଜପେଚା ବସିଥିଲେ, ଏପରି ଠକ୍‌ଠକ୍ ଆଓ୍ୱାଜରେ ଉଡ଼ି ଚାଲିଯାନ୍ତି । ବୃଥାରେ କୋଳାହଳ କରି ଗୋଟିଏ ନିକଟ ଡାଳକୁ ଉଡ଼ିଯାଇ, ସେମାନେ ବିଦୂଷକ ଠାଣିରେ ମୁଣ୍ଡକୁ ଉପରତଳ କରି ଅପଲକ ନେତ୍ରରେ ଅନାହୂତ ପ୍ରବେଶକାରୀଙ୍କୁ ତରାଟି ଅନାନ୍ତି । ଏପରି ତକାଇବାବେଳେ ବେଳେବେଳେ ସେମାନେ ମୁଣ୍ଡକୁ ପେଚପରି ପୂରା ମୋଡ଼ିଦେଇଥାନ୍ତି । ଏହା ମୁଖ୍ୟତଃ କ୍ଷୀଣାଲୋକଚର ଓ ନିଶାଚର । ଦିନବେଳେ ଏମାନେ ଲୁଚି ରହନ୍ତି ଓ ଗୋଧୂଳି ସମୟରେ ପଦାକୁ ବାହାରନ୍ତି । ଗୋଧୂଳି ସମୟରେ ରାଜପେଚା ବାଡ଼ର ଖୁମ୍ବ, ଟେଲିଗ୍ରାଫ୍ ତାର ବା ସେଇପରି ସ୍ଥାନରେ ବସିଥିବାର ଦେଖାଯାନ୍ତି । ଥରକୁଥର ଭୂମି ଉପରେ ଚାଲୁଥିବା କୋଟଳ (beetle) ଓ ଝିଣ୍ଟିକା-ମାନଙ୍କ ଉପରେ ଝାମ୍ପ ମାରି ପୁଣି ଯାଇ ନିଜ ସ୍ଥାନରେ ବସନ୍ତି । ନହେଲେ ନିଃଶବ୍ଦରେ ଗୋଟିଏ ସୁବିଧା ସ୍ଥାନରୁ ଅନ୍ୟ ଏକ ସୁବିଧା ସ୍ଥାନକୁ ଉଡ଼ିଯାନ୍ତି । ବେଳେବେଳେ ରାଜପେଚା ହଠାତ୍ ବାହାରି ଆସି ଭିଜାଭୂମିରୁ ବାହାରୁଥିବା ଝିଙ୍କ୍‌ପୋକ ବା ରାସ୍ତାର ବତିଖୁଣ୍ଟ ଚାରିପଟେ ଉଡ଼ୁଥିବା କୋଟଳ (beetle) ପିଛୁ ଏପଟ ସେପଟ କଦାକାର ଭାବେ ଉଡ଼ି ନଖରେ ଧରି ତା' ବସିବା ସ୍ଥାନକୁ ଫେରିଆସେ । ସେଠାରେ ଶୁଆପରି ଗୋଡ଼କୁ ଅଣ୍ଟ ପାଖକୁ ଉଠାଇ କୀଟଗୁଡ଼ିକୁ ଚୁଆଁଚୁଆଁ କରି ଚିରିପକାଏ । ବେଳେବେଳେ ରାଜପେଚା କୋରୁଟିଆ ବାଜପକ୍ଷୀ (Kestrel) ପରି, ଛପି ଛପି ଯାଉଥିବା ଖାଦ୍ୟ

ପ୍ରାଣୀଙ୍କୁ ଗୋପନରେ ଦେଖିବା ଲାଗି ଉପରେ ଉଡ଼ୁଥିଲେ । କୋଟଲ (beetles) ଓ ଅନ୍ୟାନ୍ୟ କୀଟପତଙ୍ଗ ଏମାନଙ୍କର ପ୍ରଧାନ ଆହାର, ମାତ୍ର ଏଣ୍ଡୁଅ ପରି ସରୀସୃପ, ସାନ ମୂଷା ଓ ପକ୍ଷୀ ମଧ୍ୟ ଖାଆନ୍ତି । ରାଜପେଚା ଶ୍ରେଷ୍ଠ ହେଲେ ମଧ୍ୟ ବେଶି ଶବ୍ଦକରେ । ଏ ସବୁ ନାନା ପ୍ରକାର ସ୍ୱରର କର୍କଶ କଡ଼କଡ଼ିଆ ଚାପା ଶବ୍ଦ । ଅନେକ ସମୟରେ ଦୁଇଟି ପକ୍ଷୀ ଦ୍ୱୈତଗୀତରେ ଯୋଗଦେଇ କର୍ଣ୍ଣକଟୁ ଶବ୍ଦ କରିବାରେ ଲାଗିଯାଆନ୍ତି । ରାଜପେଚା ଥରକେ ତିନୋଟି ବା ଚାରିଟି ଅଣ୍ଡା ଦିଅନ୍ତି । ଭଙ୍ଗା ବା ବ୍ୟବହୃତ କୋଠାଘରର ଗାତ ବା ଖୋଲରେ ଅଳ୍ପ ଘାସ ଓ ପର ଇତ୍ୟାଦିରେ ନୀଡ଼ ରଚିତ ହୋଇଥାଏ । ଅଣ୍ଡା ଧଳା ଓ ଗୋଲ ଅଣ୍ଡାକାର ।

ଆଉ ଗୋଟିଏ ସାଧାରଣ ପେଚା ହେଲା **କାଳପେଚା** (ବର୍ଣ୍ଣଚିତ୍ର 51) । ଓଡ଼ିଆରେ ଏହାକୁ ବାନ୍ଦୁ ଓ ଉଲ୍ଲୁକ ମଧ୍ୟ କହିଥାନ୍ତି । ଇଂରାଜୀ ନାମ 'ବୃହତ୍ ଶିଙ୍ଗବାଲା ପେଚା' (Great horned owl) । ବୈଜ୍ଞାନିକ ନାମ, 'ବୁବୋ ବୁବୋ' (Bubo bubo) । ହିନ୍ଦି ନାମ ଘୁଘୁ । ଏହାର ଆକାର ପ୍ରାୟ ମାଟିଆ ଚିଲପରି; ମାତ୍ର ତା' ଠାରୁ ଅଧିକ ହୃଷ୍ଟପୁଷ୍ଟ । ଏହା ଗୋଟିଏ ବଡ଼, ଓଜନିଆ, ଘନ-ବାଦାମୀ ପେଚା । ଦେହ ଉପରେ କଷା ହଳଦିଆ ବାଦାମୀ, କଳା ରଙ୍ଗର ଦାଗ ଓ ଗାର ଚିହ୍ନ ପଡ଼ିଥାଏ । ମୁଣ୍ଡରେ ଦୁଇଟି କର୍ଣ୍ଣ ସ୍ତବକ (ear tuft) ବା 'ଶିଙ୍ଗ' ରହିଥାଏ । କାଳପେଚାକୁ ସହଜରେ ହୁଁ ହାଁ ପେଚା [ଇଂରାଜୀ ନାମ 'ବାଦାମୀ ମାଛଖିଆ ପେଚା' (Brown fish owl), ବୈଜ୍ଞାନିକ ନାମ 'ବୁବୋ ଜିଲୋନେନ୍‌ସିସ୍' (Bubo zeylonensis)] ବୋଲି ଭ୍ରମ ହୋଇପାରେ; ମାତ୍ର କାଳପେଚାର ବର୍ଣ୍ଣ ସାଧାରଣତଃ କମ୍ ଲାଲ-ବାଦାମୀ ଓ ଅଧିକ ଘନ-ବାଦାମୀ । ଆହୁରି ମଧ୍ୟ କାଳପେଚା ବା ବାନ୍ଦୁର ଗୋଡ଼ ପୂରାପୂରି ପରରେ ଆବୃତ; ଅଥଚ ହୁଁ ହାଁର ଗୋଡ଼ ଅନାବୃତ । ଦିନବେଳେ ବାନ୍ଦୁ ବୃଦାତଳେ ଭୂମିରେ ବିଶ୍ରାମ ନିଏ, ନଚେତ୍ ନଦୀତଟ ବା ଗଭୀର ଫାଙ୍କା ଗିରିପଥରେ ଗୁଇ ଜାଗା ଦେଖି ପଥର ଉପରେ ବସିଥାଏ । ଏହା ହୁଁ ହାଁ ପେଚା ପରି ପୂରାପୂରି କ୍ଷୀଣାଲୋକଚର ଓ ରାତ୍ରିଚର ନୁହେଁ ଏବଂ ଅନେକ ସମୟରେ ଦିନବେଳେ ମଧ୍ୟ ଯାତାୟାତ କରୁଥିବାର ଦେଖିବାକୁ ମିଳେ । ସାଧାରଣତଃ ସୂର୍ଯ୍ୟାସ୍ତ ସମୟରେ କାଳପେଚା ତାର ଦିନବେଳର ଲୁକ୍କାୟିତ ସ୍ଥାନରୁ ବାହାରିଲାବେଳେ ଏକପ୍ରକାର ଗଭୀର, ଗମ୍ଭୀର, ପ୍ରତିଧ୍ୱନିତ ହେଉଥିବା 'ବୁ-ବୋ' ଶବ୍ଦ କରେ । ଏଥିର ଦ୍ୱିତୀୟ ପଦାଂଶ ବହୁତ ବେଶି ପ୍ରଲମ୍ବିତ ଭାବେ ଉଚ୍ଚାରିତ ହୋଇଥାଏ । ଏହି ଡାକ ଯେ ଖୁବ୍ ଉଚ୍ଚନାଦିତ ତା' ନୁହେଁ, ମାତ୍ର ପ୍ରକାରିଆ ତୀକ୍ଷ୍ଣ ଓ ବହୁଦୂରକୁ ଶୁଣାଯାଏ । ସେମାନେ ବାହାରି ଆସି ପ୍ରଥମେ ଗୋଟିଏ

ବୃହତ୍ ଖୋଲକାର ଶିଳାଖଣ୍ଡ ବା ଅନ୍ୟ କୌଣସି ଉନ୍ମୁକ୍ତ ଉଚ୍ଚ ସ୍ଥାନରେ ଆସି ବସନ୍ତି । ସେଠାରୁ ସେମାନେ ଅନାୟାସରେ ଧୀର ସଞ୍ଚରଣରେ ଅଭ୍ୟସ୍ତ ଶିକାର ଭୂମିକୁ ଉଡ଼ିଯାନ୍ତି । ସାଧାରଣ ଭାବ ସାଙ୍ଗକୁ ଉତ୍ତେଜନା ବା ଆବେଗ ପ୍ରକାଶ କରିବା ପାଇଁ ସେମାନଙ୍କର ନାନା କିସମର ରହସ୍ୟମୟ ଗମ୍ଭୀର ଗର୍ଜନ ଓ ସୀତ୍କାର ଶବ୍ଦ ଅଛି । କ୍ଷୁଦ୍ର କ୍ଷୁଦ୍ର ସ୍ତନ୍ୟପାୟୀ ପ୍ରାଣୀ, ପକ୍ଷୀ, ସରୀସୃପ ଅଜାତୀୟ ଓ ଅନ୍ୟାନ୍ୟ ସରୀସୃପ ବାଦୁଡ଼ି ପେଚାମାନଙ୍କର ପ୍ରଧାନ ଆହାର । ତା' ସାଙ୍ଗକୁ ସେମାନେ ବଡ଼ ବଡ଼ କୀଟପତଙ୍ଗ ଏବଂ ବେଳେବେଳେ ମାଛ ଓ କଙ୍କଡ଼ା ମଧ୍ୟ ଖାଇଥାନ୍ତି । କୃଷି ଅଞ୍ଚଳରେ ପଡ଼ିଆ-ମୂଷା ସେମାନଙ୍କର ମୁଖ୍ୟ ଆହାର । ଏହି ବହୁଗର୍ଭଧାରୀ, ଧ୍ୱଂସକାରୀ ଓ ଅନିଷ୍ଟକାରୀ କ୍ଷୁଦ୍ର ଜୀବମାନଙ୍କୁ ଅବିରାମ ଭାବରେ ଦମନ କରୁଥିବାରୁ କାଳପେଚାମାନଙ୍କର ଅର୍ଥନୈତିକ ଗୁରୁତ୍ୱ ଅତ୍ୟନ୍ତ ବେଶି । ତେଣୁ ଏମାନଙ୍କର ଯଥାଯଥ ସଂରକ୍ଷଣ ଆବଶ୍ୟକ । ଏମାନେ ଥରକେ ତିନୋଟିରୁ ଚାରିଟି-ଯାଏ ଅଣ୍ଡା ଦିଅନ୍ତି । ବାଦୁଡ଼ି ନୀଡ଼ ରଚନା କରେ ନାହିଁ; ନଗ୍ନ ଭୂମିରେ ମାଟି ବନ୍ଧର ନିଭୃତ ସ୍ଥାନ ଏବଂ ଶିଳାସ୍ତୂପର ଢାଲୁଅଂଶ ଖୋପ ବା ଥାକରେ ଅଣ୍ଡା ଦିଏ । ସବୁପ୍ରକାର ପେଚକମାନଙ୍କର ଅଣ୍ଡା ପରି ବାଦୁଡ଼ିର ଅଣ୍ଡା ଗୋଲ ଅଣ୍ଡାକାର । ବର୍ଣ୍ଣ ଲହୁଣୀ-ଆସିଆ ଧଳା ।

**କାପ୍ରିମୁଲଗିଫରମସ** (Order CAPRIMULGIFORMES) ବର୍ଗ—ଭାରତୀୟ ଉପଦ୍ୱୀପରେ ଏହି ବର୍ଗ ଅନ୍ତର୍ଭୁକ୍ତ ଦୁଇଟି ବଂଶର ପକ୍ଷୀ ଦେଖାଯାନ୍ତି । ତନ୍ମଧ୍ୟରେ କେବଳ ଗୋଟିଏ ବଂଶର ପକ୍ଷୀ ସହିତ ଆମର ସମ୍ପର୍କ ସବୁଠାରୁ ଅଧିକ । ତାହା ହେଲା କାପ୍ରିମୁଲଗିଡ଼ି ବଂଶ (Caprimulgidae) । ଭୂଇଁ ଚ୍ଛପୁଲ (Night jar) ପକ୍ଷୀ ଏହି ବଂଶର । ଭୂଇଁଚ୍ଛପୁଲ ପକ୍ଷୀମାନଙ୍କୁ ଇଂରାଜୀରେ 'ରାତ୍ରି-ଝୁନ୍‌ଝୁନ୍' (Nightjar) ବ୍ୟତୀତ 'ଛେଳି-ଚୋଷୀ' (Goat-sucker) ବୋଲି ମଧ୍ୟ କହନ୍ତି । ଏମାନେ କ୍ଷୀଣାଲୋକଚର ବା ରାତ୍ରିଚର । ପେଚାପରି ଏମାନଙ୍କର ବର୍ଣ୍ଣ ହାଲୁକା ରଙ୍ଗର ଓ ସେମାନଙ୍କୁ ସଙ୍ଗୋପନଦ୍ୱାରା ଆତ୍ମରକ୍ଷା କରିବାରେ ସାହାଯ୍ୟ କରେ । ଏହାର ଗୋଡ଼ ଖର୍ବ ଓ ଦୁର୍ବଳ । ଏହାର ପାଟିର ଆଁ ପ୍ରଶସ୍ତ ଓ ଉଡ଼ୁଥିବା କୀଟପତଙ୍ଗ-ମାନଙ୍କୁ କ୍ଷୀଣ ଆଲୋକରେ ଧରି ପାରିବା ଉପଯୋଗୀ । ଶକ୍ତ କଣ୍ଟା ପରି ପକ୍ଷ ପାଟି କଡ଼ରୁ ବାହାରିଥିବାରୁ ପତଙ୍ଗ ଶିକାର ପାଇଁ ପରିସରର ବୃଦ୍ଧି ଘଟିଥାଏ । ଅନେକ ଜାତିର ଭୂଇଁଚ୍ଛପୁଲ ଦେଖାଯାନ୍ତି । ସେମାନଙ୍କ ମଧ୍ୟରେ ପ୍ରାୟ ସବୁଠାରୁ ସାଧାରଣ ଓ ବିସ୍ତୃତ **ଭୂଇଁଚ୍ଛାପୁଲ** (ବର୍ଣ୍ଣଚିତ୍ର 52)କୁ ଇଂରାଜୀରେ ଭାରତୀୟ ଭୂଇଁଚ୍ଛପୁଲ (Indian Nightjar) ବୋଲି କହିଥାନ୍ତି । ଏହାର ବୈଜ୍ଞାନିକ ନାମ 'କାପ୍ରିମୁଲଗାସ

ଏସିଆଟିକାସ' (Caprimulgus asiaticus) । ହିନ୍ଦି ନାମ—ଚପକ୍, ଡାବ୍‌ଚରି ।
ଏହା ପ୍ରାୟ ବଣି ଚଢ଼େଇର ଆକାର ହେବ । ଏହାର ଦେହ କୋମଳ ପରଦ୍ବାରା ଆବୃତ; ବର୍ଣ୍ଣ
ଧୂସର, ବାଦାମୀ; କଷା ଓ ହଳଦିଆ-ବାଦାମି । ତା' ଉପରେ ଗୁପଗୁପିଆ ଓ କଳାଗାର
ଯୁକ୍ତ ଚିହ୍ନ ପଡ଼ିଥାଏ । ମୋଟ ଉପରେ ଛଦ୍ମାବରଣ ପାଇଁ ଭୂଇଁ ଗୁପୁଲିର ବର୍ଣ୍ଣ ଜଟିଳ
ଗୁଆର । ଏହାର ପକ୍ଷରେ ଧଳା ଚିହ୍ନ ଅଛି । ଉଡ଼ିଲାବେଳେ ତାହା ସ୍ପଷ୍ଟ ଦେଖାଯାଏ ।
ଦିନବେଳେ ବୁଦାବୁଦିଆ ଜଙ୍ଗଲିଆ ଅଞ୍ଚଳରେ ଭୂମି ଉପରେ ଭୂଇଁଗୁପୁଲି ଏକାକୀ
ଝୁଙ୍କି ବସିଥିବାର ଦେଖିବାକୁ ମିଳେ । ଗୋଧୂଳି ସମୟରେ ଏହା ଉଡ଼ି ଉଡ଼ି ଉଡ଼ନ୍ତା କୀଟ-
ମାନ ପତଙ୍ଗ ଶିକାର କରେ, ନଚେତ୍ କଚ୍ଚା ମାଟି ରାସ୍ତା ଉପରେ ବସିଥାଏ । ଏହାର
ଖାଦ୍ୟ ପୂର୍ଣ୍ଣତଃ କୀଟପତଙ୍ଗ—ଯଥା; କୋଟଲି (beetles), ମଥ୍ (moth) ଇତ୍ୟାଦି ।
ତାର ବଡ଼ ଆଁ ସାହାଯ୍ୟରେ ସେମାନଙ୍କୁ ଉଡ଼ୁଥିବା ଅବସ୍ଥାରେ ସେ ଶିକାର କରେ ।
ଭୂଇଁଗୁପୁଲିମାନଙ୍କର ଉଡ଼ନ୍ତା ଶବ୍ଦହୀନ । ଏହା ତା'ର ଏକ ବୈଶିଷ୍ଟ୍ୟ । ସେ ମଥ୍
ପରି ଇତସ୍ତତଃ ଉଡ଼ିବୁଲି ପତଙ୍ଗ ଶିକାର କରେ । ଶିକାର ପିଛା ଧରିଥିଲାବେଳେ
ସେମାନେ ଉଡ଼ୁଥିବା ଅବସ୍ଥାରେ ମୋଡ଼ରେ ଘୂରିଲା ପରି ଘୂରି ଓ ବାଙ୍କି ପାରନ୍ତି ।
ପ୍ରତିବନ୍ଧକକୁ ଏଡ଼ିବା ପାଇଁ ସେମାନେ ଉଡ଼ିଲାବେଳେ ଆଶ୍ଚର୍ଯ୍ୟଜନକ ଚଞ୍ଚଳତା
ସହକାରେ କେତେବେଳେ ଚକ୍ର ଦିଅନ୍ତି, କେତେବେଳେ ପକ୍ଷରେ ଝାପଟା ମାରନ୍ତି ଓ
କେତେବେଳେ ପାଲଟଣା ନୌକାପରି ଉଡ଼ିପାରନ୍ତି । ରାସ୍ତା ଉପରେ ବସିଥିଲାବେଳେ
ସେମାନଙ୍କର ବଡ଼ ବଡ଼ ଆଖି ଉପରେ ମଟର ଗାଡ଼ିର ହେଡ୍ ଲାଇଟ୍ ପଡ଼ିଲେ ପଦ୍ମରାଗ-
ମଣି (Ruby) ପରି ଚକ୍‌ଚକ୍ କରେ । ମୋଟର ଗାଡ଼ି ଅତି ନିକଟକୁ ଆସି ହେଇ ମାଡ଼ି-
ଗଲାଜାଣ ଅବସ୍ଥା ହେଲା ବେଳକୁ ଭୂଇଁଗୁପୁଲି ବିଚକ୍ଷଣତା ସହକାରେ ଉଡ଼ି ଚାଲିଯାଏ ।
ଏହାର ଡାକ 'ଚୂକ୍-ଚୂକ୍-ଚୂକ୍-ଚକ୍-ର୍-ର୍-ର' ଅନେକ ପରିମାଣରେ ବରଫ ପାଲଟି
ଯାଇଥିବା ପୋଖରୀ ପାଣି ଉପରେ ଗୋଟିଏ ପଥରକୁ ଗଡ଼ାଇଲେ ଯେପରି ହେବ
ସେହିପରି । ଏହି ରାବ ସେ ତଳେ ବସିଥିଲାବେଳେ, ନଚେତ୍ ମୁଣ୍ଡିଆ ବା ଥୁଣ୍ଟା ଗଛ
ଉପରେ ବସି ଗୋଧୂଳି ସମୟରେ ଓ ସାରା ରାତି ଦେଇଥାଏ । ଦୁଇଟି ଭୂଇଁଗୁପୁଲି
ଅନେକ ସମୟରେ ଅଳ୍ପ • ଛଡ଼ାରେ ବସି ଅନେକ ସମୟ ଯାଏ ପରସ୍ପରକୁ ଡକାଡକି
ହୁଅନ୍ତି । ଏମାନେ ପ୍ରଜନନ ଋତୁରେ ବିଶେଷ କରି ଜ୍ୟୋତ୍ସ୍ନାଲୋକିତ ରାତିରେ ବେଶି
ଶବ୍ଦ କରନ୍ତି । ଭୂଇଁଗୁପୁଲି ନୀଡ଼ ରଚନା କରେନାହିଁ । ଅଳ୍ପ ବୁଦାବୁଦିଆ ଜଙ୍ଗଲ
ଭିତରେ ଭୂମି ଉପରେ ଅଣ୍ଡା ଦିଏ ଓ ଥରକେ ସାଧାରଣତଃ ଦୁଇଟି ଅଣ୍ଡା ଦିଏ । ଅଣ୍ଡା
ଲମ୍ବାଳିଆ, ସ୍ତମ୍ଭାକାର ଓ ଡିମ୍ବାକାର । ବର୍ଣ୍ଣ ହାଲୁକା ବାଇଗଣିରୁ ଘନ ଲୋହିତ

ବାଦାମୀ । ତା’ ଉପରେ ନାଲ୍-ବାଦାମୀ ଓ ନୀଳ-ଲୋହିତ ରଙ୍ଗର ଟିପ୍‌ଟିପିଆ ଓ ଗ୍ରୁପ୍‌ଗ୍ରୁପିଆ ଚିହ୍ନ ଥାଏ ।

**ଏପୋଡ଼ିଫରମିସ** ବର୍ଗ (Order APODIFORMES)—ଗୃଡକ (swift) ପକ୍ଷୀ ଏହି ବର୍ଗ ଅନ୍ତର୍ଭୁକ୍ତ । ଏମାନଙ୍କର ଶରୀର ପାତଳ, ଲମ୍ବାଳିଆ, ପକ୍ଷ ଧନୁପରି ଏବଂ ଅତି ଦ୍ରୁତ ଉଡ଼୍‌ଡୟନ ଉପଯୋଗୀ । ଦିନର ଅଧିକାଂଶ ସମୟ ଏମାନେ ଉଡ଼ୁଥାନ୍ତି; ଏବଂ ଏପଟ ସେପଟ ପ୍ରଚଣ୍ଡ ବେଗରେ ଶିକାର ପତଙ୍ଗ; ଯଥା—କ୍ଷୁଦ୍ର କ୍ଷୁଦ୍ର ମାଛିଜାତୀୟ କୀଟ (midges), ଗନ୍ଧପୋକ (bug) ଓ କୋଟଲି (beetle) ମାନଙ୍କ ପିଛୁ ଝପଟ ମାରି ଶିକାର କରୁଥାନ୍ତି । ଏମାନଙ୍କର ତୁଣ୍ଡର ଆଁ ଓସାରିଆ ଓ ପତଙ୍ଗ ଶିକାର ଉପଯୋଗୀ । ଗୃଡକମାନଙ୍କର ଗୋଡ଼ ଅତି ଗ୍ରେଟ ଓ ପାଦର ଗୃରିଟିଯାକ ଅଙ୍ଗୁଳି ସମ୍ମୁଖ ଆଡ଼କୁ ପ୍ରସାରିତ । ଫଳରେ ସେମାନେ ଅବାବିଲ (Swallow) ପକ୍ଷୀ ପରି ଟେଲିଗ୍ରାଫ ତାର ଉପରେ ମଧ୍ୟ ବସିପାରନ୍ତି ନାହିଁ । ସେମାନେ ସେମାନଙ୍କର ଛୁଞ୍ଚି ପରି ମୁନିଆ ଆଙ୍କୁଶୀ ପରି ନଖ ସାହାଯ୍ୟରେ ଭୂଲମ୍ବ (vertical) ବା ଆନତ ବହିର୍ଭାଗ ଉପରେ ଲାଗି ରହି ପାରନ୍ତି । ଏପୋଡ଼ିଡ଼ି ପକ୍ଷୀ ବଂଶ (family Apodidae)ର (ପ୍ରକୃତ ଗୃଡକ, true swifts) ସବୁଠାରୁ ପରିଚିତ ଗୃଡକ ହେଲି **ଗୃହଗୃଡକ** । ଏହାକୁ ଇଂରାଜୀରେ ‘ଘର ଗୃଡକ’ (House swift) କହନ୍ତି । ବୈଜ୍ଞାନିକ ନାମ ‘ଏପାସ ଏଫିନିସ’ (Apus affinis) (ବର୍ଣ୍ଣଚିତ୍ର 53, ତଳଛବି) । ହିନ୍ଦି ନାମ—ବବିଲ, ବତାସି । ଏହା କେତେକ ପରିମାଣରେ ଘରଚଟିଆଠାରୁ ସାନ । ବର୍ଣ୍ଣ ଧୂଆଁଟିଆ କଳା, ବେକ ଧଳା । ପିଚ୍ଛ ଅଂଶ ଧଳା । ଲାଞ୍ଜ ଗ୍ରେଟ ଓ ଚୌରକୋଣିଆ । ପକ୍ଷ ଲମ୍ବା, ଅଣଓସାରିଆ ଓ ଗୋଜିଆ । ପୁରୁଣା ଦୁର୍ଗ, ଭଗ୍ନ ମସଜିଦ୍ ଓ ଅଟ୍ଟାଳିକା ଏବଂ ବ୍ୟବହୃତ ହେଉଥିବା ବାସଗୃହ ନିକଟରେ ଏମାନେ ବାସ କରନ୍ତି । ଏମାନେ ସାରାଦିନ ଦଳବାନ୍ଧି ଉଡ଼ି ବୁଲୁଥାନ୍ତି ଓ ଉଡ଼ୁଥିବା କ୍ଷୁଦ୍ର କ୍ଷୁଦ୍ର ପତଙ୍ଗ ଶିକାର କରନ୍ତି । ସେତେବେଳେ ସେମାନେ ଆନନ୍ଦରେ କିଚିରିମିଚିରି ଶବ୍ଦ କରିଥାନ୍ତି । ଗୃହଗୃଡକ ମାନଙ୍କର ପକ୍ଷ ଲମ୍ବା ଓ ପ୍ରବାହନିରୋଧୀ (streamlined) । ତା’ ସାହାଯ୍ୟରେ ସେମାନେ ପ୍ରାୟ ଅବିରାମ ଭାବରେ ଅତି କ୍ଷିପ୍ରବେଗରେ ଉଡ଼ି ପାରନ୍ତି । ସନ୍ଧ୍ୟାକାଳରେ ବହୁ ସଂଖ୍ୟାରେ ଗୃହଗୃଡକ ବିଶୃଙ୍ଖଳ ଭାବେ ଚକ୍କର ମାରି ଉଡ଼ୁଥିବାର ଓ ନାଟକୀୟ ଭାବେ ଉପର ଆଡ଼କୁ ଉଠୁଥିବାର ଦେଖିବାକୁ ମିଳେ । ସେତେବେଳେ ମଧ୍ୟ ସେମାନେ ଆନନ୍ଦରେ କିଚିରିମିଚିର ଧ୍ୱନି କରନ୍ତି ଏବଂ ଏଭଳି ଉଡ଼ି ଓ ଧ୍ୱନି କରି ସେମାନେ ବେଶ୍ ଆନନ୍ଦ ପାଉଥିବାର ଜଣାପଡ଼େ । ଗୃହଗୃଡକମାନେ କୌଣସି ଏକ ସ୍ଥାନରେ ମନ୍ଦା.

ମନ୍ଦିର କର ନୀଡ଼ ରଚନା କରନ୍ତି । କାନ୍ଥ ବା ଭିତର କୋଣ ସ୍ଥାନରେ ଏଠି ସେଠି ଅବ୍ୟାହତ ଭାବେ ସେଗୁଡ଼ିକ ରଚିତ ହୋଇଥାଏ । ନୀଡ଼ଗୁଡ଼ିକ କୋଠାଘର, ଶିଳ୍ପ ବା ତୋରଣ ଭିତରେ ଏପରିକି ଜନାକୀର୍ଣ୍ଣ ବଜାର ଭିତରେ ଥିବା ଏଇସବୁ ସ୍ଥାନରେ ଦେଖିବାକୁ ମିଳେ । ନୀଡ଼ ଗୋଲାକାର ମାନ୍ଦ ଅମସୃଣ କପ୍ ବା ତାଟିଆ ପରି । ସେଗୁଡ଼ିକ ପୁଆଳ, କୁଟା, ପର ଇତ୍ୟାଦିରେ ତିଆରି ହୋଇଥାଏ ଓ ଗୃହଗୃତକର ଲାଳଦ୍ୱାରା ଏକାଠି ପଳସ୍ତରା ହେଲାପରି ଲାଗିଥାଏ । ଭିତ ଓ ନୀଡ଼ ମଧ୍ୟରେ ଥିବା କ୍ଷୁଦ୍ର ଫାଙ୍କ ପ୍ରବେଶ ଦ୍ୱାରର କାର୍ଯ୍ୟ କରେ । ଏମାନେ ଥରକେ ଦୁଇଟିରୁ ଗୃରିଟି ଯାଏ ଅଣ୍ଡା ଦିଅନ୍ତି । ଅଣ୍ଡା ଲମ୍ବାଳିଆ ଅଣ୍ଡା ଆକାରର ଏବଂ ପୂର୍ଣ୍ଣ ସଫେଦ । କୌଣସି ଏକ ଦଳ ବା 'କଲୋନୀ' ଗୃହଗୃତକ ବର୍ଷ ପରେ ବର୍ଷ ସେଇ ଏକ ସ୍ଥାନରେ ନୀଡ଼ ରଚନା କରି ବାସ କରିଥାନ୍ତି । ଅବଶ୍ୟ ସେମାନଙ୍କୁ ତଡ଼ାଇଲେ ବା ବାଧାଦେଲେ ନଆରି କଥା ।

ବର୍ଗ **କୋରାସିଫରମିସ୍** (order CORACIIFORMES)-ଆଲସିଡ଼ିନିଡ଼ି (Alcedinidae), ମେରୋପିଡ଼ି (meropidae); କୋରାସିଡ଼ି (coraciidae) ଓ ବୁସେରୋଟିଡ଼ି (Bucerotidae) ପକ୍ଷୀ ବଂଶ ଏହି ବର୍ଗ ଅନ୍ତର୍ଭୁକ୍ତ । ମାଛରଙ୍କା (King fisher) ଆଲସିନିଡ଼ି ଶ୍ରେଣୀ, ବାଂଶପାତିଆ (Bee-eater) ମେରୋପିଡ଼ି ଶ୍ରେଣୀ, ଭରଦ୍ୱାଜ ପକ୍ଷୀ (Roller) କୋରାସିଡ଼ି ଶ୍ରେଣୀ ଓ କୋଚିଲଖାଇ (Horn-bill) ଜାତୀୟ ପକ୍ଷୀ ବୁସେରୋଟିଡ଼ି ଶ୍ରେଣୀ ଭିତରେ ଯାଆନ୍ତି ।

**ଗଙ୍ଗେଇଡ଼ୁବ** (ବର୍ଣ୍ଣଚିତ୍ର 54) ଇଂରାଜି ନାମ କ୍ଷୁଦ୍ର ନୀଳ ମାଛରଙ୍କା (Small Blue King fisher) । ବୈଜ୍ଞାନିକ ନାମ 'ଆଲସିଡ଼ୋ ଏଥିସ' (Alcedo atthis) । ହିନ୍ଦି—ଛୋଟା କଲକିଲା, ସରିଫନ୍ । ଏହା ଘରଚଟିଆ ଠାରୁ ସାମାନ୍ୟ ବଡ଼ । ଏହା ଗୋଟିଏ କ୍ଷୁଦ୍ର ସୁନ୍ଦର ନୀଳ-ସବୁଜ ମାଛରଙ୍କା । ପେଟ ପାଖର ବର୍ଣ୍ଣ ଘନ ଲାଲ-ବାଦାମୀ । ଲାଞ୍ଜ ଛୋଟ ଓ ଥଣ୍ଟା । ଥଣ୍ଟ ଲମ୍ବା, ସିଧା ଓ ମୁନିଆଁ । ନଦୀ, ପୋଖରୀ ଓ ଗାଡ଼ିଆ କୂଳରେ ତଳ ଆଡ଼କୁ ଥିବା ତରୁଶାଖାରେ ଗଙ୍ଗେଇଡ଼ୁବ ସାଧାରଣତଃ ବସିଥିବାର ବା ଜଳ ନିକଟରେ ଉପରେ ତୀବ୍ର ବେଗରେ ଉଡ଼ିଯାଉଥିବାର ଦେଖିବାକୁ ମିଳେ । କଦବା କେମିତି ଏହା ପଥୁରିଆ ସମୁଦ୍ର ତୀରରେ ଅଭିଯାନରେ ବାହାରିଥିବାର ମଧ୍ୟ ଦେଖିବାକୁ ମିଳେ ।

ଗଙ୍ଗେଇଡ଼ୁବ ପାଣିର ଅଳ୍ପ ଉଚ୍ଚରେ ରହିଥିବା ତରୁଶାଖାରେ ବସି ଅବିରତ ମୁଣ୍ଡକୁ ଉପର ତଳ, ଏପଟ ସେପଟ କରୁଥାଏ ଏବଂ ଥଣ୍ଟା ଲାଞ୍ଜକୁ ସଞ୍ଚାଳନ କରୁଥାଏ । ଲାଞ୍ଜ ସଂଚାଳନ କଲାବେଳେ ଏକ କ୍ଷୀଣ କ୍ଲିକ୍ ଶବ୍ଦ ହୁଏ । ସବୁବେଳେ ତା'ର ଦୃଷ୍ଟି

ରହିଥାଏ ଜଳ ଉପରେ । ମାଛ ବା ବେଙ୍ଗଫଳ୍ଟିଏ ତଳୁ ଜଳ ଉପର ଆଡ଼କୁ ଉଠୁଥିବାର ଦେଖିଲମାତ୍ରେ ସେ ତା' ଉପରେ ଦୁର୍ଲ କରି ଯାଇ ପଡ଼େ । ଏତେବେଳେ ଥଣ୍ଟ ତଳକୁ ମୁହେଁଇ ରହିଥାଏ । ପାଣି ଛୁଟିକିବା ଯାଙ୍ଗେ ଯାଙ୍ଗେ ଦେଖାଯାଏ, ସେ ଶିକାରକୁ ଲମ୍ବାବାଗରେ ଥଣ୍ଟରେ ଧରିପକାଇଛୁ । ସେ ନିକଟସ୍ଥ ବସିବା ସ୍ଥାନକୁ ପୁଣି ଉଡ଼ି ଆସେ । ସେଠାରେ ଶିକାର ଜୀବକୁ ମାରି ଗିଳି ପକାଏ । ବେଳେ ବେଳେ ଗଙ୍ଗେଇଡ଼ୁବି ଜଳ ଉପରେ ଉଡ଼ି ବୁଲି ଶିକାର ଜୀବ ପିଠୁ ଡୁବିମାରେ । ପାଣି ଉପରେ ଉଡ଼ିବୁଲି ଶିକାର ପିଠୁ ଡୁବିମାରିବା କଳକଳା ମାଛରଙ୍କା (Pied king fisher)ର ବୈଶିଷ୍ଟ୍ୟ ଓ ଏକ ଦେଖିବାର ଜିନିଷ । ଆହାର ସଂଗ୍ରହ ପାଇଁ ଗଙ୍ଗେଇଡ଼ୁବି ଜଳର ଅଳ୍ପ ଉଚ୍ଚରେ ତୀବ୍ରବେଗରେ ଏ ପାଖରୁ ସେ ପାଖ, ସେ ପାଖରୁ ଏ ପାଖ ଉଡ଼ି ଧାଁ ଦଉଡ଼ କରୁଥିଲାବେଳେ ଏକ ପ୍ରକାର ତୀବ୍ର ଚିଁ ଚିଁ ଶବ୍ଦକରେ । ମାଛ ଓ ବେଙ୍ଗଫୁଲ୍ ବ୍ୟତୀତ ସେ ଜଳବାସୀ କୋଟଳ (Water beetle) ଓ ସେମାନଙ୍କର ଲାର୍ଭି ଏବଂ ଅନ୍ୟ ଜଳବାସୀ କୀଟ ମଧ୍ୟ ଭକ୍ଷଣ କରିଥାଏ । ଝରଣା, ପୋଖରୀ ଓ ଖାଲର ମାଟି ବନ୍ଧରେ ସୁଡ଼ଙ୍ଗ ତିଆରି କରି ଗଙ୍ଗେଇଡ଼ୁବି ବସା କରିଥାଏ । ଏହି ସୁଡ଼ଙ୍ଗ ଭୂସମାନ୍ତର ଭାବେ ରହିଥାଏ ଓ ଏକମିଟର ବା ତା' ଠାରୁ ଅଧିକ ଯାଏ ଲମ୍ବ ହୋଇଥାଏ । ତା ଶେଷମୁଣ୍ଡରେ ଗୋଟିଏ ଓସାରିଆ ଅଣ୍ଡା କୋଠରୀ ଥାଏ । କୋଠରୀ ଭିତର ଅଂଶରେ କୁଟା, କାଠି, ପର ଆଦି ଲେସାହୋଇ ନଥାଏ; ମାଛ ଗନ୍ଧ କରୁଥିବା ପରିତ୍ୟକ୍ତ ମାଛ କଣ୍ଟା ଓ କୋଟଳ (beetle) ପକ୍ଷବର୍ମ (elytra) ଏଣେ ତେଣେ ପଡ଼ିଥାଏ । ଥରକେ ଗଙ୍ଗେଇଡ଼ୁବି ସାଧାରଣତଃ ପାଞ୍ଚରୁ ସାତଟି ଯାଏ ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଖାଣ୍ଟି ଧଳା । ଆକାର ଗୋଲ ଅଣ୍ଡାକାର ଓ ଖୁବ୍ ଚକ୍‌ଚକ୍ଣ ।

ଆଉ ଜାତିଏ ମାଛରଙ୍କା ଅଛି, ତାକୁ ଇଂରାଜୀରେ 'ଧଳାଗୁନ୍ତିଆ ମାଛରଙ୍କା' (White breasted king fisher) ବୋଲି କହନ୍ତି । ଏହା ବରଂ ଗଙ୍ଗେଇଡ଼ୁବି ତୁଳନାରେ ଅଧିକ ସାଧାରଣ ଓ ଆମର ପରିଚିତ । ଏହାର ବୈଜ୍ଞାନିକ ନାମ 'ହାଲସିୟନ୍ ସ୍ମାଇରେନ୍‌ସିସ' (Halcyon smyrensis) । ଅନ୍ୟ ଅନେକ ଜାତି ମାଛରଙ୍କାଙ୍କ ତୁଳନାରେ ଏହା ଭରଣ ପୋଷଣ ପାଇଁ ଜଳ ଉପରେ ଅଳ୍ପ ନିର୍ଭର-ଶୀଳ । କାରଣ ଏହାର ଖାଦ୍ୟ ମୁଖ୍ୟତଃ ଭୂମିବାସୀ କୀଟ ପତଙ୍ଗ । ଏହା ଆକାରରେ ପ୍ରାୟ କଣି ପରି ହେବ । ପିଠି ଉପର ଅଧିକଳ ନୀଳମଣି ବର୍ଣ୍ଣର । ମୁଣ୍ଡ, ବେକ ଓ ପେଟ ପାଖ ଘନ ଚକୋଲେଟ୍-ବାଦାମୀ । ଗ୍ରୀବ ଅଂଶରେ ସ୍ପଷ୍ଟ ଦୃଶ୍ୟମାନ ଧଳାବର୍ଣ୍ଣ

[ ଇଂରାଜୀରେ ଏହାକୁ 'କୁର୍ତ୍ତାର ସାମନାପଟ' ('shirt front') ବୋଲି କହୁଥାନ୍ତି]
ଏବଂ ଲମ୍ବା, ନଦା ଓ ଗୋଳିଆ ଲାଲ ଅଣ୍ଟ ଦ୍ୱାରା ଏହାକୁ ଚହ୍ନି ହୁଏ । ଉଡ଼ିଲାବେଳେ ଧଳା ପକ୍ଷରେ ଏକ ବଡ଼ ଧଳା ଗୁଚ୍ଛ ଦେଖାଯାଏ ।

**କଳକଳା** (ବର୍ଣ୍ଣଚିତ୍ର 55)—ଇଂରାଜୀ ନାମ 'ଗୁପଗୁପିଆ ମାଛରଙ୍କା' (Pied king fisher) । ବୈଜ୍ଞାନିକ ନାମ 'ସେରାଇଲ ରୁଡ଼ିସ' (ceryl rudis) । ଅନ୍ୟ ନାମ କୋରସ୍ନାଲ, କଳକଳା, କରେନା । ଏହାକୁ କେହି ନ ଦେଖିଛି ଏପରି ନାହିଁ । ଏହାର ଆକାର ବଣି ଓ ପାରାର ମଝାମଝି । କଳା-ଧଳା ବର୍ଣ୍ଣର ଗୁପିଗୁପିଆ ଓ ଡୋରିଆ ଚିହ୍ନ ଦେହରେ ପଡ଼ିଥାଏ । ଅନ୍ୟ ମାଛରଙ୍କାମାନଙ୍କ ପରି ଏହାର ଅଣ୍ଟ ମଜବୁତ୍ ଓ ତ୍ରେଖା ପରି । ଅଣ୍ଡିରା ପକ୍ଷୀ ଦେଖିବାକୁ ଅନେକ ପରିମାଣରେ ମାଈ ପରି । ମାଈ ପକ୍ଷୀର ଗଳାରେ କଳାବର୍ଣ୍ଣର ଯେଉଁ ହାର ଥାଏ ତାହା ମଝି ଅଂଶରେ ଛିଣ୍ଡିଏ ଭାଙ୍ଗି ଯାଇଥାଏ । (ବର୍ଣ୍ଣଚିତ୍ରରେ ମାଈ କଳକଳାର ଛବି ଦିଆଯାଇଅଛି) । ଅଣ୍ଡିରା ପକ୍ଷୀର ଗଳାରେ ମଧ୍ୟ କଳାରଙ୍ଗର ଗଳାହାର (gorget) ଥାଏ; ମାତ୍ର ତାହା ସମ୍ପୂର୍ଣ୍ଣ, ଭାଙ୍ଗି ଯାଇ ନଥାଏ ଓ ଗୋଟିଏ ହାର ବଦଳରେ ଦୁଇଟି । ଏକ ବା ଯୋଡ଼ି ଯୋଡ଼ି ହୋଇ କଳକଳା ନଦୀ, ଜୋର, ଗାଁ ପୋଖରୀ, ବନ୍ଧ ଓ କୂଆରିଆ ଖାଡ଼ି କୂଳରେ ଏକ ସମାଦୃତ ଖୁଣ୍ଟି ବା ପଥର ଖଣ୍ଡ ଉପରେ ବସିଥାନ୍ତି ଆଉ ଥରକୁଥର ଲାଞ୍ଜକୁ ଉପର ତଳ ଓ ମୁଣ୍ଡକୁ ତଳ ଉପର ଏ ପାଖ ସେ ପାଖ କରୁଥାନ୍ତି । ଉଡ଼ୁଥିଲା ବେଳେ ଏହା ଏକ ତୀକ୍ଷ୍ଣ ଉଲ୍ଲାସକର 'ଚିର୍ ରୁକ୍, ଚିର୍ ରୁକ୍' ରାବକରେ । ଏହା ଯେ ଥରେ ଶୁଣିଛି, ସେ କିଲକିଲା ପକ୍ଷୀକୁ ଭୁଲି ନ ପାରେ । ଏହାର ସବୁଠାରୁ ବିଶେଷତ୍ୱ ହେଉଛି, ଶିକାର ବେଳର ଦର୍ଶନୀୟ ଠାଣି । ପାଣି ଉପରେ ଉଡ଼ିଲା ବେଳେ ତାର ଆଖି ତଳେ କୌଣସି ମୀନ ପାଣି ଉପର ଆଡ଼କୁ ଉଠୁଛି କି ନାହିଁ ସେଥିପ୍ରତି ସର୍ବଦା ନିବଦ୍ଧ ଥାଏ । ମୀନଟିଏ ଦେଖିଲା ମାତ୍ରକେ ଉଡ଼ୁଥିବା କଳକଳା ହଠାତ୍ ସ୍ଥିର ହୋଇଯାଏ, ପବନ ଆଡ଼କୁ ମୁହଁକରି ଦେହକୁ ସିଧା ଭାବରେ ଠିଆ କରିଦିଏ । ଯେପରିକି ସେ ଲାଞ୍ଜ ଉପରେ ଠିଆ ହୋଇଛି । ଏପରି ଅବସ୍ଥାରେ ପକ୍ଷ ସଞ୍ଚାଳନ କରି ସେ ପାଣି ଉପରେ ମଝି ଆକାଶରେ ମୀନ ଉଠୁଥିବା ସ୍ଥାନ ଉପରେ 'ହ୍ୱିଲ ରହେ' ଆଉ ସାନ ମାଛଟିକୁ ଧରିବାକୁ ଅଣ୍ଟ ତିଆର ରଖିଥାଏ । ମୀନ ପାଣି ଭିତରେ ଉପର ଆଡ଼କୁ ଉଠୁଥିଲା ବେଳେ ଓ ଆଘାତ କରିବା ଦୂରତ୍ୱକୁ ଆସିଗଲା ମାତ୍ରେ କଳକଳା ପକ୍ଷ ବନ୍ଦ କରିଦିଏ ଏବଂ ଛ-ଆଠ ମିଟର ଉପରୁ ବଜ୍ର ପରି ତଳକୁ ପୁରାପୁରି ପାଣି ଭିତରକୁ ଖସି ପଡ଼େ । ପରେ ପରେ ସେ ଅଣ୍ଟରେ ଶିକାର ଧରି ଉଠି ପଡ଼େ, ଦେହରୁ ପାଣି ଝାଡ଼ିବା ପାଇଁ

କାନ୍ଧକୁ ଟିକିଏ ଦୋହଲାଇ ଦିଏ ଓ ନିକଟସ୍ଥ ଏକ ବସିବା ସ୍ଥାନକୁ ଉଡ଼ିଯାଏ । ସେଠାରେ ଅଙ୍କୁଡ଼ିରେ ଛଟପଟ ହେଉଥିବା ସାନ ମାଛଟିକୁ ମାରି, ଠିକ ବାଟେ ଧରି ମୁଣ୍ଡ ପଟୁ ଗିଳେ । ମାଛ କଳକଳାର ପ୍ରଧାନ ଖାଦ୍ୟ । ମାତ୍ର ବେଙ୍ଗଫୁଲ, ବେଙ୍ଗ ଓ ଜଳବାସୀ କୀଟ ମଧ୍ୟ ଖାଏ । କଳକଳା ମାଟି ବନ୍ଧ ଭିତରେ ଭୂସମାନ୍ତର ଭାବେ ସୁଡ଼ଙ୍ଗ ତିଆରି କରିଥାନ୍ତି । ସୁଡ଼ଙ୍ଗ ଶେଷରେ ସେମାନଙ୍କର ନୀଡ଼ ରହିଥାଏ । ତା' ଭିତରେ କାଠ ବା ପରି ଦିଆଯାଇ ନଥାଏ; ମାତ୍ର ଖିଆହୋଇ ବଳିଥିବା ଦୁର୍ଗନ୍ଧ ମାଛ ହାଡ଼ ପଡ଼ିଥାଏ । ଥରକେ 5-6ଟି ଅଣ୍ଡା ଦିଏ । ଅଣ୍ଡା ସମ୍ପୂର୍ଣ୍ଣ ଧଳା, ଚକଚକିଆ ଓ ଗୋଲ ଅଣ୍ଡାକାର ।

**ହିମାଳୟ କଳକଳା**—ଏହାକୁ ଇଂରାଜୀରେ 'ହିମାଳୟ କଳକଳା' ( Himalayan pied king-fisher ) କହନ୍ତି । ବୈଜ୍ଞାନିକ ନାମ 'ସେରିଲ ଲୁଗୁବ୍ରିସ' ( Ceryle lugubris ) । ଏହା ସାଧାରଣ କଳକଳା ଠାରୁ ବହୁତ ବଡ଼ ଓ ଏହାର ମୁଣ୍ଡର ଚୂଡ଼ା ସୁସ୍ପଷ୍ଟ । ହିମାଳୟ ଅଞ୍ଚଳରେ ଆମର ସାଧାରଣ କଳକଳା 800 ମିଟର ଉଚ୍ଚତା ପର୍ଯ୍ୟନ୍ତ ଦେଖାଯାଏ । ତାଠୁ ଉପର ଅଞ୍ଚଳରେ ହିମାଳୟ କଳକଳା ଦେଖିବାକୁ ମିଳେ ।

**ଟିନ୍‌ଥିକ**—( ବର୍ଣ୍ଣଚିତ୍ର 56—ଇଂରାଜୀ ନାମ 'କ୍ଷୁଦ୍ର ହରିତ ବାଂଶ ପାତ୍ରୁରି' (Small green Bee-eater ) । ବୈଜ୍ଞାନିକ ନାମ 'ମେରପ୍‌ସ ଓରିଏନ୍‌ଟାଲିସ' ( Merops orientalis ) । ହିନ୍ଦି ନାମ ପତିଙ୍ଗା । ଏହା କୃଶ ଓ ଆକାରରେ ପ୍ରାୟ ଘରଚଟିଆ ପରି ହେବ । ବର୍ଣ୍ଣ ଘାସ ପରି ସବୁଜ । ମୁଣ୍ଡ ଓ ବେକରେ ଲାଲବାଦାମୀ ରଙ୍ଗର ଆଭା ଥାଏ । ଲାଞ୍ଜର ମଝି ପର ଦୁଇଟି ପକ୍ଷ ଆଡ଼କୁ ପ୍ରଲମ୍ବିତ ଓ ମୁଣ୍ଡା ପିନ୍‌କଣ୍ଟା ପରି । ଥଣ୍ଟ କ୍ଷୀଣ, ସାମାନ୍ୟ ବଙ୍କା ଓ କଳା । ବେକରେ ଏକ ସ୍ପଷ୍ଟ କଳା 'ଗଳାହାର' ଥାଏ । ଏସବୁ ଲକ୍ଷଣ ଦ୍ୱାରା ଟିନ୍‌ଥିକକୁ ସହଜରେ ଚହ୍ନି ହୋଇପାରେ । ଏମାନେ ଯୋଡ଼ି ଯୋଡ଼ି ହୋଇ ଅଥବା ଅସମ୍ବନ୍ଧ ଦଳରେ ଖୋଲା ଗ୍ରାମାଞ୍ଚଳରେ ଦେଖାଯାନ୍ତି । ବିଶେଷ କରି ଏମାନେ କୃଷ ଭୂମି, ସଫାକରାଯାଇଥିବା ଜଙ୍ଗଲ ଅଞ୍ଚଳ ଏବଂ ଗ୍ରାମ୍ୟ ଗୋଚ୍ଚରଣ ଭୂମିରେ ଦେଖିବାକୁ ମିଳନ୍ତି । ସାଧାରଣତଃ ଅସମ୍ବନ୍ଧ ଦଳରେ ଟିନ୍‌ଥିକ ଟେଲିଗ୍ରାଫ ତାର, ବାଡ଼ ଖୁଣ୍ଟି ଓ ବୁଦା ଉପରେ ବସିଥାନ୍ତି । ଏଠାରୁ କ୍ଷିପ୍ର ବେଗରେ ବାହାରି ପଡ଼ି ଲଳିତ ଛନ୍ଦରେ ଉଡ଼ୁଥିବା ପତଙ୍ଗ ପିଛା ଧରନ୍ତି ଏବଂ ଶିକାର ଧରିବା ପରେ ପ୍ରସାରିତ ପକ୍ଷକୁ ନିଶ୍ଚଳ ରଖି ଚକ୍‌କରି ମାରି ବସିବା ସ୍ଥାନକୁ ଫେରି ଆସନ୍ତି । ସେଠାରେ ଛଟପଟ ହେଉଥିବା ଶିକାର ପତଙ୍ଗକୁ ପ୍ରଚଣ୍ଡ ବେଗରେ ଆଘାତ କରି ମାରି

ମିଳନ୍ତି । ଉଡ଼ୁଥିବା ବେଳେ ଏମାନେ ଅବିରାମ ଏକ ପ୍ରକାର ପ୍ରୀତିକର ଠୁଣୁଠୁଣିଆ 'ଟିଟ୍ ଟିଟ୍' ବା 'ଟ୍ରି-ଟ୍ରି-ଟ୍ରେ' ଶବ୍ଦ କରନ୍ତି । ସୂର୍ଯ୍ୟ ଅସ୍ତ ହେଲେ ବହୁ ସଂଖ୍ୟାରେ ଚିନ୍ଥିନ ଆବୃତ ଗହଳ ପତ୍ରଥିବା ଗଛରେ ରାତ୍ରି କଟାଇବା ପାଇଁ ଆସି ଜମା ହୁଅନ୍ତି । ଠିକ୍ ଠାକ୍ ହୋଇ ବସିବା ଯାଏ ବହୁତ କୋଳାହଳ ଓ ତତ୍ପରତା ପ୍ରକାଶ ପାଏ । କୌଣସି ସ୍ପଷ୍ଟ କାରଣ ନ ଥାଇ ଗୋଠଟାଯାକ ଚିନ୍ଥିନ କ୍ଷଣକ୍ଷଣକେ ହୁଡହୁଡ୍ କରି ଠେଲାପେଲା ହୋଇ ଉଠିପଡ଼ନ୍ତି ଓ ଉତ୍ତେଜିତ ଭାବେ କମ୍ପିତ ସ୍ୱରରେ ଶବ୍ଦ କରି ଗଛ ଚାରିପଟେ ଚକ୍କର ମାରନ୍ତି । ଆସ୍ତେ ଆସ୍ତେ ସେମାନଙ୍କର ଉତ୍ତେଜନା ଓ କାକଳି ଥମି ଆସେ ଏବଂ ଶେଷରେ ସେମାନେ ଶାନ୍ତ ହୋଇ ବସନ୍ତି । ବୃକ୍ଷ ଡାଳରେ ସେମାନେ ଗ୍ରେଷ୍ଟ ଗ୍ରେଷ୍ଟ ଦଳରେ ଠେସାଠେସି ହୋଇ ବସନ୍ତି । ଏତେବେଳେ ସେମାନେ ଦେହର ପରକୁ ତୁଳା ଭଳିଆ ପରି ଫୁଲାଇ ଦିଅନ୍ତି ଓ ମୁଣ୍ଡକୁ ପକ୍ଷ ତଳେ ଗୁଞ୍ଜି ଦିଅନ୍ତି । ପକ୍ଷୀମାନେ ସାଧାରଣତଃ ବେଳା କରି ଉଠନ୍ତି । ସୂର୍ଯ୍ୟ ଭଲଭାବେ ଉଦୟ ନ ହେଲା ଯାଏ ଚିନ୍ଥିନମାନେ ଶୋଇଥାନ୍ତି । କର୍କଟ ଓ ଅନ୍ୟାନ୍ୟ ଉଡ଼ନ୍ତା ପତଙ୍ଗ ସେମାନଙ୍କର ଆହାର । ବେଳେବେଳେ ସେମାନେ ମହୁମାଛିମାନଙ୍କୁ ଆକ୍ରମଣ କରି ମହୁଗୃହ ନଷ୍ଟ କରନ୍ତି । ଚିନ୍ଥିନ ପକ୍ଷୀମାନେ ଅନେକ ସମୟରେ ଦଳ ଦଳ ହୋଇ ବନ୍ଧମାନଙ୍କରେ ନୀଡ଼ ରଚନା କରନ୍ତି । ବାଲିଆ ମାଟି ଭିତରେ ଆନୁଭୂମିକ ଭାବେ ଏକ ମିଟର ପର୍ଯ୍ୟନ୍ତ ଲମ୍ବର ସୁଡ଼ଙ୍ଗ ତିଆରି ହୋଇଥାଏ । ଢାଲୁ ବନ୍ଧରେ ସୁଡ଼ଙ୍ଗ ତେରଛା ଭାବେ ମଧ୍ୟ କରାଯାଇଥାଏ, ସୁଡ଼ଙ୍ଗ ଶେଷ ଓସାରିଆ ହୋଇଥାଏ । ସେଥିରେ କୁଟାକାଠି ନଥାଏ । ଏଇଠି ସେ ଅଣ୍ଡା ଦିଏ । ଥରକେ ପାଞ୍ଚରୁ ସାତଟିଯାଏ ଅଣ୍ଡା ଦିଏ । ତାହା ଦେଖିବାକୁ ଧଳା ଓ ଆକାର ଗୋଲ୍ ଅଣ୍ଡାକାର ।

**ବଡ଼ ବାଂଶ ପାତୁରି** - ଚିନ୍ଥିନ ପକ୍ଷୀର ଏକ ଜ୍ଞାତି । ଏହାକୁ ଇଂରାଜୀରେ 'ନୀଳଲାଞ୍ଜ ବାଂଶ ପାତୁରି' ( Bluetailed Bee-eater ) ବୋଲି କହନ୍ତି । ବୈଜ୍ଞାନିକ ନାମ 'ମେରପସ୍ ଫିଲିପିନାସ' ( Merops philippinus ) ଏହା ଚିନ୍ଥିନଠାରୁ ଆକାରରେ ବଡ଼ । ଏହାର ଆଖି ଦେଇ ଅର୍ଥାତ୍ ଆଖି ଦୁଇପାଖେ ( ଆଗକୁ ଅଣ୍ଟ ଆଡ଼କୁ ଓ ପଛକୁ ) କଳା ଗାର ଥାଏ । ବେକ ବାଦାମୀ ଓ ଲାଞ୍ଜ ନୀଳବର୍ଣ୍ଣର । ଖୋଲା ଜମିରେ ବଡ଼ ବାଂଶପାତୁରି ଏକ ସାଧାରଣ ପକ୍ଷୀ ଓ ସାଧାରଣତଃ ପୋଖରୀ ଏବଂ ନଦୀର ନିକଟରେ ଦେଖିବାକୁ ମିଳେ । ଏହା ଋତୁ ଅନୁସାରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ସ୍ଥାନାନ୍ତର ଗମନ କରେ; ମାତ୍ର ଏ ସମ୍ପର୍କରେ ପକ୍ଷିତତ୍ତ୍ୱବିତ୍‌ମାନଙ୍କର ଜ୍ଞାନ ସୀମିତ । ସେମାନେ କାହିଁକି ଦେଶ ଭିତରେ

ଋତୁ ଅନୁସାରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଆନ୍ତି—ତାହା ଜଣା ନାହିଁ ।

**କୋରାସିଡ଼ି**—( Coracidae ) ବଂଶ—ଏ ବଂଶର ପକ୍ଷୀ ହେଲା ଆମର ପରିଚିତ **ଭଦଭଦଳିଆ** ( ବର୍ଣ୍ଣଚିତ୍ର 57 ) । ଓଡ଼ିଆରେ ଏହାକୁ ବିଶେଷରେ ଏହାକୁ ଭରଦ୍ୱାଜ; ଚଷା ପକ୍ଷୀ ଓ ଚିହ୍ନାବୋଲ ମଧ୍ୟ କହୁଥାନ୍ତି । ଇଂରାଜୀ ନାମ 'ଭାରତୀୟ ଘୂରଣିଆ' ( Indian Roller ) ଓ 'ନୀଳ ଯେ' ( Blue Jay ) । ବୈଜ୍ଞାନିକ ନାମ 'କୋରାସିଆସ୍ ବେଙ୍ଗାଲେନସିସ' ( Coracias benghalensis ) । ହିନ୍ଦି ନାମ ନୀଳକଣ୍ଠ, ସବଜକ୍ । ଏହା 'ଏକ ମନୋହର ନୀଳପକ୍ଷୀ ଓ ଆକାରରେ ପ୍ରାୟ ପାରି ପରି । ମୁଣ୍ଡ ବଡ଼, ଅଣ୍ଟ ଭରା, ପୃଷ୍ଠର ବର୍ଣ୍ଣ ଲାଲ-ବାଦାମୀ, ଉଦର ଓ ଲାଞ୍ଜ ତଳ ଫିକା ନୀଳ । ପକ୍ଷର ବର୍ଣ୍ଣ କଳା ଓ ନୀଳ । ଉଡ଼ିଲାବେଳେ ଅଧିକ ଉଜ୍ଜ୍ୱଳ ପଟିପରି ସ୍ପଷ୍ଟ ଦେଖାଯାଏ । ଏହା ମୁଖ୍ୟତଃ ଖୋଲା ଅଞ୍ଚଳର ପକ୍ଷୀ ଓ ଘନ ଅରଣ୍ୟରେ ଦେଖାଯାଏ ନାହିଁ । ଭଦଭଦଳିଆ ସାଧାରଣତଃ ଠୁଣ୍ଟା ଗଛ ବା ଟେଲିଗ୍ରାଫ ତାର ଉପରେ ବସିଥାଏ । ଏହା ଫଳରେ ସେ ଚାରିଆଡ଼ ପର୍ଯ୍ୟବେକ୍ଷଣ କରିପାରେ । ସେଠାରୁ ସେ ପୁନଃପୁନଃ ଭୂମିକୁ ଝାମ୍ପଦେଇ ପୋକଟିଏ ଥଣ୍ଟରେ ଧରି ପୁଣି ତାର ବସିବା ସ୍ଥାନକୁ ଫେରିଆସେ, ନଚେତ୍ ଧୀର ମନ୍ଥର ଗତିରେ ଯାଇ ଅନ୍ୟ ପ୍ରାନ୍ତରେ ଅବସ୍ଥିତ ଆଉ ଏକ ସ୍ଥାନରେ ବସେ । ସେଠାରେ ଆହାର ପୋକକୁ ମାରି ଗିଳେ । ଝିଙ୍କାରି ( Cricket ) ଝିଣ୍ଟିକା, କୋଟଲ ( beetle ) ଓ ଅନ୍ୟାନ୍ୟ କୀଟ ଭଦଭଦଳିଆ ପକ୍ଷୀର ପ୍ରଧାନ ଆହାର । ଏମାନେ ଫସଲ ନଷ୍ଟକାରୀ କୀଟପତଙ୍ଗମାନଙ୍କୁ ଆହାର କରି କୃଷକର ପ୍ରଭୂତ ଉପକାର କରନ୍ତି । କେତେବେଳେ କେମିତି ଏଣ୍ଡୁଅ, ମୂଷା ଓ ବେଙ୍ଗ ମଧ୍ୟ ଖାଇଥାନ୍ତି । ଭଦଭଦଳିଆର ସ୍ୱର ଉଚ୍ଚ, କର୍କଶ ଓ ବିଭିନ୍ନ ପ୍ରକାରର । ବିଶେଷ କରି ଅଭିସାର-ବେଳେ ସେ ନାନା ପ୍ରକାର ଖେଳ ପ୍ରଦର୍ଶନ କଲାବେଳେ ତା'ର ରାବ ବେଶ୍ ଉଚ୍ଚ ଓ କର୍କଶ ହୋଇଥାଏ । ଏ ସମୟରେ ସେ ନାନାପ୍ରକାର ଅଦ୍ଭୁତ ଖେଳ ଆକାଶରେ ଦେଖାଏ । ରକେଟ୍ ପରି ଆକାଶକୁ ଉଡ଼ିଯିବା, ଉଡ଼ୁ ଉଡ଼ୁ ଓଲଟି ଯିବା, ମୁହଁକୁ ତଳକୁ କରି ମାଡ଼ିଆସିବା, କଡ଼ ପଟିଆ ଓଲଟିବା ତନ୍ମଧ୍ୟରେ ପ୍ରଧାନ । ତା' ସଙ୍ଗେ ସଙ୍ଗେ ସେ ବିଭିନ୍ନ ପ୍ରକାର କର୍କଶ ଶବ୍ଦ କରେ ଓ ତା' ପକ୍ଷର ଉଜ୍ଜ୍ୱଳ ବର୍ଣ୍ଣ ସୂର୍ଯ୍ୟାଲୋକରେ ଚକ୍‌ଚକ୍ କରି ଉଠେ । ବୃକ୍ଷର ପ୍ରାକୃତିକ ଖୋଲରେ କୁଟା, ପର ଓ ଅନ୍ୟାନ୍ୟ ଆବର୍ଜନା ଦେଇ ଭଦଭଦଳିଆ ନୀଡ଼ ରଚନା କରିଥାଏ । ଥରକେ ଚାରିଟିରୁ ପାଞ୍ଚଟି ଯାଏ ଅଣ୍ଡାଦିଏ । ଅଣ୍ଡା ଚକ୍‌କଣ, ଧୂସର ସଫେଦ ଓ ଗୋଲ ଅଣ୍ଡାକାର ।

ଆଉ ଜାତିଏ ଭଦଭଦଳିଆ ଅଛି, ତାକୁ 'କାଶ୍ମୀର ଭରଦ୍ୱାଜ' (Kashmir

ଚିତ୍ର ନଂ 49

କୁମ୍ଭାଟୁଆ

( Crow-Pheasant or Coucal )

ପୃଷ୍ଠା ନଂ 100 ଦେଖ





ଚିତ୍ର ନଂ 50
ବୁଜ ପେଚ୍ଚ
(Spotted Owlet)
ପୃଷ୍ଠା ନଂ 102 ଦେଖ



ଚିତ୍ର ନଂ 51.
କାଳ ପେଚୁ
(Great Horned Owl)
ପୃଷ୍ଠା ନଂ 103 ଦେଖ



ଚିତ୍ର ନଂ 52
ଭୂଇଁ ଗ୍ରପୁଲ
( Indian Nightjar )

ପୃଷ୍ଠା ନଂ 104 ଦେଖ

ଚିତ୍ର ନଂ 53.

ଗୃହ ସ୍ୱତକ

( House Swift )

ପୃଷ୍ଠା ନଂ 106 ଦେଖ





ଚିତ୍ର ନଂ 55

କଳକଳା

( Pied Kingfisher )

ପୃଷ୍ଠା ନ[illegible] 10[illegible] ଦେଖ



ଚିତ୍ର ନଂ 56

ଡିନଥୁଳ

( Small Green Bee-Eater )

ପୃଷ୍ଠା ନଂ 110 ଦେଖ



ଚିତ୍ର ନଂ 57

ଭଦଭଦଳିଆ

( Indian Roller or Blue Jay )

ପୃଷ୍ଠା ନଂ 112 ଦେଖ



ଚିତ୍ର ନଂ 58

ଣ:ରଗୁଣା

( Hoopoe )

ପୃଷ୍ଠା ନଂ 113 ଦେଖ

ଚିଂ ନଂ '59

ଧୋଚଲିଖାଇ

( Malabar Pied Hornbill )

ପୃଷ୍ଠା ନଂ 114 ଦେଖ






ଚିତ୍ର ନଂ 60
ସିନ୍ଦୂରମୁଣ୍ଡି
(Coppersmith — Crimsonbreasted Barbet)
ପୃଷ୍ଠା ନଂ 116 ଦେଖ



ଚିତ୍ର ନଂ 61

କାଠହଣା

( Mahratta Woodpecker )

ପୃଷ୍ଠା ନଂ 117 ଦେଖ



ଚିତ୍ର ନଂ 63

ଚୂଳିଆ ଭରତପକ୍ଷୀ

( Crested Lark)

ପୃଷ୍ଠା ନଂ 121 ଦେଖ




ଚିତ୍ର ନଂ 64

ଦୂଝି

(Ashycrowned or Blackbellied Finch-Lark)

ପୃଷ୍ଠା ନଂ 122 ଦେଖ

Roller) କହନ୍ତି । ଏହାର ବୈଜ୍ଞାନିକ ନାମ 'କୋରାସିଆସ ଗାରୁଲାସ' (Coracias garrulus) । ଏହା କାଶ୍ମୀର ଅଞ୍ଚଳରେ ଦେଖିବାକୁ ମିଳେ । ଆଫ୍ରିକାକୁ ପ୍ରବାସ ଯାତ୍ରା କଲାବେଳେ ସିନ୍ଧ, କଚ୍, ସୌରାଷ୍ଟ୍ର ଏବଂ ଉତ୍ତର ଗୁଜରାଟ ଅଞ୍ଚଳରେ ସେପ୍‌ଟେମ୍ବର-ଅକ୍ଟୋବର ମାସରେ ଦେଖାଯାଇଥାଏ । ଏହାକୁ ଚିହ୍ନିବା ସହଜ । କାରଣ ଏହାର ପକ୍ଷ କୃଷ୍ଣ-ନୀଳ ( ବର୍ଣ୍ଣଚିତ୍ର 57ର ଉପର କୋଣରେ ଚିତ୍ର ଦେଖ ) । ଏହାର ସାରା ତଳପାଖ ଓ ପିଠି ଫିକା ନୀଳ ।

ଉପୁପିଡ଼ି (Upupidae) ବଂଶ—ଏହି ପକ୍ଷିବଂଶର ଏକମାତ୍ର ପ୍ରତିନିଧ ହେଲା ଶାରଗୁଣା(ବର୍ଣ୍ଣଚିତ୍ର 58) । ଇଂରାଜି ନାମ 'ହୁପୋ' (Hoopoe); ବୈଜ୍ଞାନିକ ନାମ 'ୟୁପୁପା ଇପପସ' (Upupa epops); ହିନ୍ଦି ନାମ ହୁଦ୍‌ହୁଦ୍ । ଏହା ଗୋଟିଏ ମନୋମୁଗ୍ଧକର ହାଲୁକା ହଳଦିଆ-ବାଦାମି ରଙ୍ଗର ପକ୍ଷୀ । ପିଠି, ଡେଣା ଓ ଲାଞ୍ଜରେ ଜେବ୍ରା ଦେହରେ ଗାର ପଡ଼ିଥିଲା ପରି କଳାରଙ୍ଗର ଗାର ପଡ଼ିଥାଏ । ଏହାର ମୁଣ୍ଡରେ ଚୂଡ଼ା ଅଛି । ତାହା ଗୋଲାକାର, ପ୍ରାୟ ଖୋଲା ଯାଇଥିବା ପଙ୍ଖା ପରି ଓ ସଙ୍କୋଚ୍ୟ ଥଣ୍ଟ ଲମ୍ବା, ସୂକ୍ଷ୍ମ ଓ ସାମାନ୍ୟ ବଙ୍କା । ଏସବୁ ଲକ୍ଷଣଦ୍ୱାରା ଶାରଗୁଣା ପକ୍ଷୀକୁ ସହଜରେ ଚିହ୍ନି ହେବ । ଏହାର ଆକାର ପ୍ରାୟ ଶାଳିଆ ପରି । ସାଧାରଣତଃ ଏମାନଙ୍କୁ ଯୋଡ଼ି ଯୋଡ଼ି ବା କ୍ଷୁଦ୍ର କ୍ଷୁଦ୍ର ଦଳରେ ଦେଖିବାକୁ ମିଳେ । ଏହା ତୃଣମୟ ଭୂମି, ବଗିଚା, ନିକୁଞ୍ଜ ଓ ଅଳ୍ପ ଜାଙ୍ଗୁଳିଆ ଖୋଲା ଅଞ୍ଚଳ, ବିଶେଷ କରି ସହର ଓ ଗ୍ରାମ ନିକଟରେ ଥିବା ଏପରି ସ୍ଥାନରେ ବାସ କରିବାକୁ ଭଲପାଏ । ଶାରଗୁଣା ମନ୍ଥର ଗତିରେ ପାଦକୁ ଛାପି ଛାପି ଅନେକଟା ପୁଣ୍ଡୁକ (Quail) ଚଢ଼େଇ ପରି ଭୂମି ଉପରେ ଚାଲେ ବା ଦୌଡ଼େ ଏବଂ ଥଣ୍ଟକୁ ଚିମୁଟା ପରି ନେଇ ଝଡ଼ିପଡ଼ିଥିବା ପତ୍ର ଓ ମାଟି ଖେଳାଇ ଆହାର ଖୋଜେ । ଥଣ୍ଟରେ ଏପରି ପୋକଟିକୁ ହାଣିଲାବେଳେ ମସ୍ତକ ଉପରର ପଙ୍ଖା ପରି ଚୂଡ଼ା ସଙ୍କୁଚିତ ହୋଇ ମୁଣ୍ଡ ଉପରେ ଏକ ଗ୍ରେଟ ଗଇଁଠା ପରି ଦେଖାଯାଏ । ଉତ୍ତେଜିତ ବା ଶଙ୍କିତ ହେଲେ ଚୂଡ଼ା ପଙ୍ଖାପରି ଖୋଲିଯାଏ । ଶାରଗୁଣା ତରଙ୍ଗାୟିତ ଗତିରେ ଅନିଶ୍ଚିତ ଭାବେ କିଛି ବାଟ ଉଡ଼ିଯାଇ ପୁଣି ତଳକୁ ଓହ୍ଲାଇପଡ଼େ ଓ ଚୂଡ଼ା ପୁଣି ବୁଜିଯାଇ ମୁଣ୍ଡ ଉପରେ ଗଇଁଠା ପରି ରହେ । ଏହାର ଡାକ ଏକ ପ୍ରକାର ମୃଦୁ ସଙ୍ଗୀତମୟ 'ହୁ-ପୋ' ବା 'ହୁ-ପୋ-ପୋ' । ଏହା ବାରମ୍ବାର ଉଚ୍ଚାରିତ ହୁଏ ଏବଂ ଏକକାଳୀନ ପ୍ରାୟ ଦଶ ମିନିଟ ଯାଏ ମଝିରେ ମଝିରେ ଛାଡ଼ି ଛାଡ଼ି ଉଚ୍ଚାରିତ ହୁଏ । ଡାକ ଦେଲାବେଳେ ସେ ମୁଣ୍ଡକୁ ବୁଲାଇ ଉପର ତଳ କ୍ଷିପ୍ରଭାବେ ଆନ୍ଦୋଳିତ କରେ; ଫଳରେ ଥଣ୍ଟ ଭୂମିଉପରେ ଆଘାତ କରେ ଯାଏ । ଅନ୍ୟ ସମୟରେ

ସେ ପ୍ରତି ଡାକ ପୂର୍ବରୁ ଭୂକଲପର ମୁଣ୍ଡକୁ ଆଗକୁ ଆନ୍ଦୋଳିତ କରିଥାଏ ଓ ମଧ୍ୟେ ମଧ୍ୟେ ଚଞ୍ଚୁ ଖୋଲେ ଓ ବନ୍ଦ ହୁଏ । 'ହୁ-ପୋ' ଡାକ ବ୍ୟତୀତ ଶାରଗୁଣା ଆଉ କେତେକ ବିଭିନ୍ନ ପ୍ରକାର କର୍କଶ ରବ ଓ ଗୁପ୍ତ ହାସ୍ୟପର ଶବ୍ଦ ମଧ୍ୟ କରେ । କୀଟପତଙ୍ଗ, କୋଟଲି ଶୂକ (grub) ଓ କୀଟର ପ୍ୟୂପା (pupa) ଏମାନଙ୍କର ପ୍ରଧାନ ଆହାର । ଏହି କୀଟମାନଙ୍କ ମଧ୍ୟରୁ ଅଧିକାଂଶ ଆମ ଫସଲର ପ୍ରଧାନ ଶତ୍ରୁ । ଏଣୁ ଶାରଗୁଣା ଆମର ଏକ ଅତି ଉପକାରୀ ପକ୍ଷୀ । ଏହା କାନ୍ଥର ଗର୍ତ୍ତ, ଛାତ, ପକ୍କା ଘରର ଖୋପ ବା ବୃକ୍ଷର ପ୍ରାକୃତିକ ଗହ୍ୱରରେ ନୀଡ଼ ରଚନାକରେ । ମଇଳା କନା, କେଶ, କୁଟା ଓ ଆବର୍ଜନାଦ୍ୱାରା ନୀଡ଼ ରଚିତ ହୁଏ । ଏଣୁ ଏମାନଙ୍କର ନୀଡ଼ ଭୀଷଣ ଗନ୍ଧକରେ । ଶାରଗୁଣା ଥରକେ ପାଞ୍ଚଟିରୁ ସାତଟି ଅଣ୍ଡାଦିଏ । ଅଣ୍ଡା ଧଳା ମାତ୍ର ସାଧାରଣତଃ ଉଷୁମା ହେଉଥିବାବେଳେ ମଇଳା ଲାଗି ଭେସେରା ହୋଇଯାଏ ।

କୋରାସି ଫରମିସ୍ ପକ୍ଷୀବର୍ଗର ଆଉ ଗୋଟିଏ ବଂଶ ହେଲା ବୁସେରୋଟିଡ଼ି । କୋଚଲଖାଇ ଏହି ବଂଶର । ଏମାନେ ବୃହତ୍‌କାୟ, ଫଳଭୋଜୀ ଓ ବୃକ୍ଷବାସୀ ପକ୍ଷୀ । ଏମାନଙ୍କର ଥଣ୍ଟ ଅତି ବଡ଼ । **କୋଚଲଖାଇ** ବା ଧନେଶ (ବର୍ଣ୍ଣଚିତ୍ର 59)—ଏହାର ଇଂରାଜୀ ନାମ 'ଚିତ୍ରିତ ମାଲବାର କୋଚଲ ଖାଇ'(Malabar Pied Hornbill)। ବୈଜ୍ଞାନିକ ନାମ 'ଏନ୍ଥ୍ରାକୋସେରସ୍ କରୋନେଟାସ' (Anthracocerus Coronatus) । ହିନ୍ଦୀ ନାମ ଧନଚିଡ଼ି । ଏହା ଆକାରରେ ମାଟିଆ ଚିଲ ଅପେକ୍ଷା ଅଳ୍ପ ବଡ଼ । ଏହାର ବର୍ଣ୍ଣ ମୁଖ୍ୟତଃ କଳା ଓ ଧଳା । ଲାଞ୍ଜ ଲମ୍ବା, ଓସାରିଆ ଓ କଳା । ଲାଞ୍ଜର ବାହାରଆଡ଼କୁ ଥିବା ପର ସମ୍ପୂର୍ଣ୍ଣ ଧଳା । କୋଚଲଖାଇର ପ୍ରଧାନ ଲକ୍ଷଣ ହେଉଛି ତା'ର ଥଣ୍ଟ । ତା'ର ଆକାର ଶିଙ୍ଗା-ବାଦ୍ୟ ପରି । ଆଉ ତା' ଉପରେ ଦୁଇ କଡ଼ରୁ ଚେପ୍‌ଟା, ଆଗକୁ ଗୋଳିଆ କଣ୍ଟା (Casque) ରହିଥାଏ । ଥଣ୍ଟର ବର୍ଣ୍ଣ ଘନ ହଳଦିଆ ନାଲି । ଆଉ ଜାତିଏ କୋଚଲ ଖାଇ ଅଛି, ତା'ର ଇଂରାଜୀ ନାମ '**ବଡ଼ ଚିତ୍ରିତ କୋଚଲ ଖାଇ**' (Large Pied Hornbill) । ଏହାର ବୈଜ୍ଞାନିକ ନାମ 'ଏନ୍ଥ୍ରାକୋସେରସ ମାଲବାରିକାସ' (Anthracoceros malabaricus) । ଦ୍ୱିତୀୟ ଜାତି କୋଚଲଖାଇର ଲାଞ୍ଜର ବାହାର ପାଖର ପର କଳା ଓ ଅଗ୍ରଭାଗରେ ଧଳା ଚିହ୍ନ ଥାଏ । ଆହୁରି ମଧ୍ୟ ଥଣ୍ଟ ଉପର କଣ୍ଟା ଦୁଇ କଡ଼ରୁ ଚେପ୍‌ଟା ନ ହୋଇ କୁବ୍‌ଜ (Convex) । ଏହା ଉତ୍ତରାଞ୍ଚଳରେ—କୁମାଓନ୍‌ରୁ ଆସାମ-ଅଞ୍ଚଳରେ ଦେଖିବାକୁ ମିଳେ । ଧନେଶର ମାଈ ଅଣ୍ଡିରାଠାରୁ ଅଳ୍ପ ପୃଥକ ବର୍ଣ୍ଣ ଚିତ୍ରରେ ଅଣ୍ଡିରା ଧନେଶର ଚିତ୍ର ଦିଆଯାଇଛି । ମାଈ ପକ୍ଷୀର ଆଖି ଗୁଣ୍ଡପଟେ

ଥିବା ପରିଷ୍କାର ଚର୍ମ ଥାଏ ।

ସବୁଜ କୋଇଲିଖାଇ ପକ୍ଷୀମାନଙ୍କର ଆଚରଣ ଗୁଣ ଅଧିକେ ଏକାପରି । ସେମାନେ ସାଧାରଣତଃ ଜଙ୍ଗଲ, ବିଶେଷ କରି ଯେଉଁଠି ବିକ୍ଷିପ୍ତ ଭାବେ ବର, ଓସ୍ତ ଓ ଅନ୍ୟାନ୍ୟ ଡମିର ଜାତୀୟ ବୃକ୍ଷ ଥାଏ, ସେଠାରେ ରହନ୍ତି । ଏହିସବୁ ଗଛର ଫଳ ସେମାନଙ୍କର ପ୍ରଧାନ ଖାଦ୍ୟ । ବେଳେବେଳେ ଏଣ୍ଡୁଅ, ପକ୍ଷିଶାବକ ଓ ମୂଷା ମଧ୍ୟ ଖାଇଥାନ୍ତି । କୋଇଲିଖାଇ ପକ୍ଷୀ ଛୋଟ ଛୋଟ ଦଳରେ ଦେଖାଯାନ୍ତି । ସେମାନେ 'ମୋ ଦଳ ପତିକୁ ଅନୁସରଣ କର' ଖେଳରେ ଗୋଟିକ ପରେ ଗୋଟିଏ ଏକ ବୃକ୍ଷରୁ ଅନ୍ୟ ବୃକ୍ଷକୁ ଉଡ଼ନ୍ତି । ଏତେବେଳେ ସେମାନେ କଳରବ କରନ୍ତି ଓ ବୈଶିଷ୍ଟ୍ୟପୂର୍ଣ୍ଣ ତରଙ୍ଗାୟିତ ଗତିରେ ଉଡ଼ନ୍ତି । ତାହା ହେଉଛି କ୍ଷିପ୍ରବେଗରେ ପକ୍ଷକୁ ଉପର ତଳ ଆନ୍ଦୋଳ ପରି କେତୋଟି ଥର ମାରି ତା' ପରେ ବୁଡ଼ିଲା ପରି ଧୀରେ ଧୀରେ ପ୍ରବାହିତ ହେବା (glide) । ଗ୍ଲାଇଡ୍ କରିବା ସମୟରେ ମୁଖ୍ୟ ପକ୍ଷିଗୁଡ଼ିକ (Primaries) ଅର୍ଥାତ୍ ପକ୍ଷରେ ବାହାର ଆଡ଼କୁ ଥିବା ପର ସବୁ ଉପର ଆଡ଼କୁ ବଙ୍କାଇ ହୋଇ ରହିଥାଏ । ସେମାନେ ଉଚ୍ଚସ୍ୱରରେ ବହୁ ବିଭିନ୍ନ ପ୍ରକାର ଗର୍ଜନ, ଚିରଚିରିଆ ଓ ଦୀର୍ଘକ୍ଷଣସ୍ଥାୟୀ କର୍କଶ ଚିତ୍କାରଧ୍ୱନି କରିପାରନ୍ତି । ସେମାନଙ୍କର ନୀଡ଼ ରଚନା ମଧ୍ୟ ବୈଶିଷ୍ଟ୍ୟପୂର୍ଣ୍ଣ । ବୃକ୍ଷରେ ଥିବା ପ୍ରାକୃତିକ ଗହ୍ୱରଟିଏ ବାଛି କୋଇଲିଖାଇ ପକ୍ଷୀ ସେଥିରେ ନିଜର ମଳ ଲେସି ଘର ତିଆରିକରେ । ଏହି କାର୍ଯ୍ୟରେ ଅଣ୍ଡି କରଣୀର କାର୍ଯ୍ୟ କରେ । ଗହ୍ୱରର ମୁହଁ ବୁଜି ହୋଇଯାଏ ଓ କେବଳ ବାହାରକୁ ଗୋଟିଏ ଜଳା ରହେ । ମାଈ ଅଣ୍ଡା ଉଷୁମାଇବା କାଳତକ ନିଜେ ତିଆରି କରିଥିବା ନୀଡ଼ ଭିତରେ ବନ୍ଦିନୀ ଭାବେ କଟାଏ । ସେ ସମୟରେ ଅଣ୍ଡିରି ପକ୍ଷୀ ମାଈକୁ ଜଳାବାଟେ ଖାଦ୍ୟ ଆଣି ଦିଏ । ଅଣ୍ଡାରୁ ଛୁଆ ଫୁଟିଲେ ନୀଡ଼ର କାନ୍ଥ ଭାଙ୍ଗି ମାଈ ପକ୍ଷୀ ବାହାରି ଆସେ । ତା' ପରେ ଅଣ୍ଡିରି ଓ ମାଈ କୋଇଲିଖାଇ ଉଭୟ ଆହାର ସଂଗ୍ରହ କରି ଆଣି ଶାବକଙ୍କୁ ଖୁଆନ୍ତି । ଧନେଶ ଅନ୍ୟ କୋଇଲିଖାଇ ପକ୍ଷୀମାନଙ୍କ ପରି ପ୍ରଧାନତଃ ମାର୍ଚ୍ଚରୁ ଜୁନ୍ ମାସ ମଧ୍ୟରେ, ମୌସୁମୀ ବର୍ଷା ପୂର୍ବରୁ ନୀଡ଼ ରଚନା କରିଥାଏ । ଥରକେ ମାଈ ଧନେଶ ଦୁଇଟିରୁ ଚାରିଟି ଅଣ୍ଡା ଦିଏ । ସଦ୍ୟ ଦିଆଯାଇଥିବା ଅଣ୍ଡା ଧଳା; ମାତ୍ର ଉଷୁମ ହେବା ଭିତରେ ମଇଳା ହୋଇଯାଏ ।

ପିସିଫରମସ୍ (PICIFORMIS) ବର୍ଗ-କାପିଟୋନିଡ଼ି (Capitonidae) ଓ ପିସିଡ଼ି (Picidae) ପକ୍ଷୀ ବଂଶ ଏହି ବର୍ଗ ଅନ୍ତର୍ଭୁକ୍ତ । ସିନ୍ଦୂର ମୁଣ୍ଡି (Burbets) କାପିଟୋନିଡ଼ି ବଂଶର ଓ କାଠହଣା (Wood Pecker) ପିସିଡ଼ି ବଂଶଭୁକ୍ତ ।

ସିନ୍ଦୂର ମୁଣ୍ଡି ପକ୍ଷୀ ମୁଖ୍ୟତଃ ଉଜ୍ଜ୍ୱଳବର୍ଣ୍ଣର ହେଲେ ମଧ୍ୟ ବରଂ କେତେକିଟା ମୋଟା ଗେଡ଼ା ଓ ସୌନ୍ଦର୍ଯ୍ୟହୀନ । ଏମାନେ ବୃକ୍ଷବାସୀ ଓ ଫଳଭକ୍ଷୀ । ଏମାନଙ୍କର ଥଣ୍ଟ ବଡ଼, ଓଜନିଆ ଓ ଥଣ୍ଟ ମୂଳରେ ଲମ୍ବା କଠିନ ଦୃଢ଼ରୋମ ରହିଥାଏ । ଆମର ପରିଚିତ **ସିନ୍ଦୂରମୁଣ୍ଡି**ର (ବର୍ଣ୍ଣଚିତ୍ର 60) ସାଧାରଣ ଇଂରାଜୀ ନାମ 'ତାମ୍ର ଧାତୁକାର' (copper smith) ବା 'ଗାଢ଼ ଲାଲ୍ ଛାତିଆ ସିନ୍ଦୂରମୁଣ୍ଡି' (crimson breasted barbet) ; ବୈଜ୍ଞାନିକ ନାମ 'ମେଗାଲଇମା ହିମାସେଫାଲା' (Megalaima Haemacephala) ହିନ୍ଦି ନାମ, ଛୋଟ ବସନ୍ତ । ଆକାରରେ ଚଟିଆଠାରୁ ଅଳ୍ପ ବଡ଼ ଓ ମୋଟା ।

ଏହାର ବର୍ଣ୍ଣ ଘାସପରି ସବୁଜ; ଛାତି ଓ କପାଳ ଗାଢ଼ ଲାଲ ବର୍ଣ୍ଣ, ତଣ୍ଟି ହଳଦିଆ, ପେଟ ପାଖ ହଳଦିଆ ଓ ସେଥିରେ ସବୁଜବର୍ଣ୍ଣର କ୍ଷୁଦ୍ର ଗାର ଥାଏ । ଥଣ୍ଟ ଓଜନିଆ । ଲାଞ୍ଜ ଛୋଟ ଓ ତା'ର ଅଗ୍ରଭାଗ କର୍ତ୍ତିତ ହୋଇଥିଲାପରି ମନେହୁଏ । ଉଡ଼ୁଥିଲା ବେଳେ ଏହା ସ୍ପଷ୍ଟଭାବେ ତ୍ରିଭୁଜାକାର ମନେହୁଏ । ଖାଦ୍ୟ ବର, ଓସ୍ତ ଓ ଡିମିରି ଜାତୀୟ ଫଳ । ଏ ଗଛସବୁ କୋଳାହଳମୟ ନଗର ବା ଜଙ୍ଗଲ କଡ଼ରେ ଥାଉ ପଛକେ ସେଠି ସିନ୍ଦୂରମୁଣ୍ଡି ଦେଖିବାକୁ ମିଳିବ । ଏସବୁ ଗଛରେ ସିନ୍ଦୂରମୁଣ୍ଡି ଫଳ ଖାଇବା ପାଇଁ ବହୁ ସଂଖ୍ୟାରେ ଦେଖାଯାନ୍ତି । ତାଙ୍କ ସହିତ ମଧ୍ୟ ନାନାଜାତି ଫଳଭୋଜୀ ପକ୍ଷୀ; ଯଥା—ବଣି (Myna), ଗୋବରି ଚଢ଼େଇ (Bulbul), ହରଡ଼ ଚଢ଼େଇ (Green pigeon) ଓ କୋଚିଲଖାଇ (Hornbill) ଆଦି ବହୁ ସଂଖ୍ୟାରେ ଠୁଳହୁଅନ୍ତି । ସିନ୍ଦୂରମୁଣ୍ଡି ବେଳେବେଳେ ଉଡ଼ୁଥିବା ଝିଣ୍ଡିପୋକ ଓ ମଥ୍ (moth) ଶିଛାନେଇ ସେ ସବୁକୁ ଆହାରକରେ । ସିନ୍ଦୂରମୁଣ୍ଡି ଗଛ ଡାଳରୁ ବାହାରି ଆସି ଉଡ଼ୁଥିବା ପୋକ ଶିକାର କଲାବେଳର ଠାଣି ଦେଖିଲେ ହସ ଲାଗେ; କାରଣ ମନେ ହୁଏ ସେ ଯେପରିକି ପ୍ରହସନ କରୁଛୁ । ସିନ୍ଦୂରମୁଣ୍ଡି ପକ୍ଷୀ ପୂରାପୂରି ବୃକ୍ଷବାସୀ ଓ କେବେହେଲେ ତଳକୁ ଓହ୍ଲାନ୍ତି ନାହିଁ । ଏମାନଙ୍କର ଡାକ ଉଚ୍ଚ ଓ ଏକସୁରିଆ 'ଟୁକ୍...ଟୁକ୍...ଟୁକ୍' । ପ୍ରତି ଦୁଇ ସେକେଣ୍ଡ ବା ତହିଁରୁ ବ୍ୟବଧାନରେ ଲଗାତାର ସେ ଅବିରାମ ଭାବେ ଏଇପରି ରବ କରୁଥାଏ । ଦୂରରେ କଂସାରି ଲଗାତାର କଂସା ପିଟୁଥିବା ସହିତ ତୁଳନା କରି ଇଂରାଜରେ ଏହାକୁ 'ତାମ୍ର ଧାତୁକାର' (Coppersmith) ନାମ ଦିଆଯାଇଛି । ଗ୍ରାମାଞ୍ଚଳରେ ଯେତେ ପକ୍ଷୀମାନଙ୍କର ଡାକ ସାଧାରଣତଃ ଶୁଣିବାକୁ ମିଳେ, ତନ୍ମଧ୍ୟରୁ ସିନ୍ଦୂରମୁଣ୍ଡି ଗୋଟିଏ । ପାଖରେ ଥାଇ କୌଶଳରେ ଶବ୍ଦକଲେ ଦୂରରୁ ଶବ୍ଦ ଆସୁଛି ବୋଲି ମନେ

ହୋଇପାରେ । ସିନ୍ଦୂରମୁଣ୍ଡି ଡାକ ଦେଲାବେଳେ ମୁଣ୍ଡକୁ ଏକଡ଼ରୁ ସେକଡ଼କୁ ଦୋହଲାଇ ଏପରଭାବେ ଶବ୍ଦକରେ, ମନେହୁଏ ଯେପରିକି ଶବ୍ଦ ଦୂରରୁ ଆସୁଛି । ସଜନା ବା ପାଲଧୂଆ (Coral tree) ଗଛ ପରି ନରମ କାଠର ଗଛଡାଳରେ ସଢ଼ି ଯାଇଥିବା ଅଂଶକୁ ଖୋଳି ତାକୁ ଏହି ପକ୍ଷୀମାନେ ନାଡ଼ଭାବେ ବ୍ୟବହାର କରନ୍ତି । ନାଡ଼ ଭୂମିଠାରୁ ଅନେକ ଉଚ୍ଚରେ ରହିଥାଏ । ତା' ଭିତରେ କୁଟା କାଠି ଇତ୍ୟାଦି ଦିଆଯାଇନଥାଏ । ମାଈ ସିନ୍ଦୂରମୁଣ୍ଡି ଥରକେ ସାଧାରଣତଃ ତିନୋଟି ଅଣ୍ଡାଦିଏ । ତାହା ଧଳା, ଚକ୍‌କଣ ନୁହେଁ ଓ ତା' ଉପରେ କୌଣସି ପ୍ରକାର ଚିହ୍ନ ପଡ଼ିନଥାଏ ।

ଆଉ ଗୋଟିଏ ସିନ୍ଦୂରମୁଣ୍ଡି ପକ୍ଷୀ ଅଛି, ତାକୁ ଇଂରାଜୀରେ 'ବଡ଼ ସବୁଜ ସିନ୍ଦୂର ମୁଣ୍ଡି' (Large Green Barbet) କହନ୍ତି । ଏହାର ବୈଜ୍ଞାନିକ ନାମ 'ମେଗାଲଇମା ଜିଲାନିକା' (Megalaima Zeylanica) । ଏହା ବିସ୍ତୃତ ଅଞ୍ଚଳରେ ଦେଖିବାକୁ ମିଳେ । ଏହା ଅରଣ୍ୟବାସୀ । ଏହାର ବର୍ଣ୍ଣ ସବୁଜ ହୋଇଥିବାରୁ ପତ୍ର ଆଢ଼ୁଆଳରେ ଲୁଚିଯାଏ । ତେଣୁ ଆମେ ତାକୁ କମ୍ ଦେଖୁ ; ମାତ୍ର ତା'ର ସ୍ୱନ ବେଶି ଶୁଣିବାକୁ ପାଉ । ଏହାର ଆକାର ପ୍ରାୟ ବଣି ଚଢ଼େଇ ପରି । ବର୍ଣ୍ଣ ମୁଖ୍ୟତଃ ଘାସ ପରି ସବୁଜ । ମୁଣ୍ଡ ଓ ବେକ ବାଦାମୀ । ଆଖି ଚାରିପାଖରେ ଥିବା ପରହୀନ ଚର୍ମ କମଳା ଲେମ୍ବୁର ରଙ୍ଗ ପରି । ଏହାର ସ୍ୱନ ଉଚ୍ଚ 'କୁଟ୍ରୁ, କୁଟ୍ରୁ' ପରି । ଅରଣ୍ୟରେ ଏହି ସ୍ୱନ ଅବିରାମ ପ୍ରତିଧ୍ୱନିତ ହେଉଥାଏ ।

ଭାରତୀୟ ଉପଦ୍ୱୀପରେ ବିଭିନ୍ନ ଜାତିର କାଠହଣା (woodpecker) ଦେଖାଯାନ୍ତି । ବନ ରକ୍ଷଣ କାର୍ଯ୍ୟରେ ଏହି ପକ୍ଷୀମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି; କାରଣ ଗଛରେ ରନ୍ଧ୍ର କରି ନଷ୍ଟ କରିପକାଉଥିବା କୋଟକି (wood boring beetle) ସବୁର ଶୂକ (grub) ଓ ଅନ୍ୟ ଅନିଷ୍ଟକାରୀ କୀଟପତଙ୍ଗ ଏମାନଙ୍କର ଆହାର । କାଠହଣା ଚଢ଼େଇର ଥଣ୍ଟ ବଟାଳି ପରି । ତା' ଜିଭ କୃମିପରି, ଜିଭ ଆଗରେ କଣ୍ଟକ ଥାଏ ଓ ସର୍ମ୍ପ ସାରଣଶୀଳ । ପ୍ରସାରିତ ହେଲେ ତାହା ଥଣ୍ଟର ବହୁତ ଆଗକୁ ବାହାରି ପଡ଼ିପାରେ । କାଠହଣା ତା'ର ବଟାଳିରୂପୀ ଥଣ୍ଟ ଓ ସର୍ମ୍ପ ସାରଣଶୀଳ ଜିଭ ସାହାଯ୍ୟରେ ବୃକ୍ଷ ଗଣ୍ଡି ଓ ଶାଖାରେ, ଗଣ୍ଡି ଭିତରେ ରହିଥିବା କୀଟ, ଶୂକ ଓ ପିଉମ୍ପିଙ୍କୁ ଧରି ଖାଇଥାଏ । ଆମର ସବୁଠାରୁ ସାଧାରଣ କାଠହଣାକୁ ଇଂରାଜୀରେ 'ମହରଟ୍ଟା କାଠହଣା' (Mahratta woodpecker) କହନ୍ତି । ଏହାର ବୈଜ୍ଞାନିକ ନାମ 'ପିକୋଇଡ଼େସ ମହରାଟେନସିସ୍' (picoides mahrattensis) (ବର୍ଣ୍ଣଚିତ୍ର 61); ଭିନ୍ନ ନାମ କାଠଫୋଡ଼ା । ଅବଶ୍ୟ ସବୁଜାତିର କାଠହଣାକୁ ଓଡ଼ିଆରେ

କାଠହଣା ଓ ହୁଦ୍‌ହୁଦରେ କାଠଫୋଗ୍ କହନ୍ତି । ମହୁରଞ୍ଜା କାଠହଣା ଗୋଷ୍ଠୀର ଶ୍ରେଷ୍ଠ ପକ୍ଷୀ । ଏହାର ଆକାର ପ୍ରାୟ ଗୋବର୍ ଚଢ଼େଇ ଆକାର ହେବ । ଥଣ୍ଟ ଲମ୍ବ, ଛନ୍ଦା ଓ ଗୋଜିଆ । ଲାଞ୍ଜ ଦୃଢ଼ ଓ କଳା ଆକାରର । ପିଠି ଉପରେ କଳା-ଧଳା ଛୁପି ଛୁପିଆ ଚିହ୍ନ ଥାଏ । ସେ ସବୁ କୌଣସି କ୍ରମ ବା ନିୟମ ଅନୁସାରେ ସଜ୍ଜିତ ହୋଇ ନ ଥାଏ । ମସ୍ତକର ଅଗ୍ରାଂଶ ହଳଦିଆ-ବାଦାମୀ ଓ ଚୂଡ଼ା ଉଜ୍ଜ୍ୱଳ ରକ୍ତବର୍ଣ୍ଣ । ତଳ ପାଖ ଧଳା; ତା' ଉପରେ ଭ୍ରୁତ ଅଂଶରେ ଓ କଡ଼କୁ ବାଦାମୀ ଡୋରିଆ ଦାଗ ପଡ଼ିଥାଏ । ଉଦର ଓ ଲାଞ୍ଜ ତଳେ ଗାଢ଼ ଲାଲ୍ ରଙ୍ଗର ଡାଳ ପରି ଚିହ୍ନ ଥାଏ । ମାଈ ପକ୍ଷୀର ମସ୍ତକ ଚୂଡ଼ାରେ ଉଜ୍ଜ୍ୱଳ ଲାଲବାଦାମୀ ଚିହ୍ନ ନ ଥାଏ । ପ୍ରତିବର୍ଷ ପତ୍ରଝଡ଼ା ଦେଉଥିବା ଅଳ୍ପ ଘଞ୍ଚ ଜଙ୍ଗଲ, ଆମ୍ର କୁଞ୍ଜ, ଏପରିକି ଅଳ୍ପ ବୁଦା ଗଛ ଓ ଖର୍ବବୃକ୍ଷ ଥିବା ଅର୍ଦ୍ଧ ମରୁଭୂମି ଅଞ୍ଚଳରେ ଏ ଜାତି କାଠହଣା ବାସକରେ । ଏମାନେ ଯୋଡ଼ି ଯୋଡ଼ି ହୋଇ ଗଛରୁ ଗଛକୁ ଉଡ଼ି ଗଛ ଗଣ୍ଡିରେ ପୋକ ଅନ୍ୱେଷଣ କରନ୍ତି । ସେମାନେ ବୃକ୍ଷ ଗଣ୍ଡିର ବେଶ୍ ତଳ ଅଂଶକୁ ଓହ୍ଲାଇ କ୍ରମେ ଗଣ୍ଡିର ଉପର ଆଡ଼କୁ ଧକେଇ ଚକେଇ ଖଣ୍ଡି ଉଡ଼ା ଦେଇ ଦେଇ ସିଧା ବା ଘୂରିଣିଆ ଭାବେ ଚକ୍ରାକାରରେ ଉଠନ୍ତି । ଏପରି ଓହ୍ଲାଇ ଓ ଉଡ଼ି ଗଣ୍ଡିର ଉପର ଆଡ଼କୁ ଉଠୁଥିଲାବେଳେ ମଧ୍ୟେ ମଧ୍ୟେ ସେମାନେ ଥଣ୍ଟ ଠକ୍‌ଠକ୍ କରି ବାଡ଼େଇ କୀଟଙ୍କୁ ପଦାକୁ ବାହାର କରି ଧରି ଖାଆନ୍ତି ବା ଗର୍ତ୍ତମଧ୍ୟରେ ଲୁଚିଥିବା କୀଟ ମାନଙ୍କୁ ଠାବକରନ୍ତି । କାଠହଣା ତା'ର କଡ଼ା ଗୋଜିଆ ଲାଞ୍ଜକୁ ଗଣ୍ଡି ଦେହକୁ ଘୃପି ରଖିବା ଫଳରେ ତାହା ତିନଗୋଡ଼ିଆ ବୈଠକୀ ରୂପେ କାର୍ଯ୍ୟ କରେ ଓ ସେ ବସି କୀଟ ଶିକାର କରୁଥିଲାବେଳେ ଖସିପଡ଼େ ନାହିଁ । କୋଟଲ ଶୂକ (grub) ଓ ପିମ୍ପୁଡ଼ି ସେମାନଙ୍କର ପ୍ରଧାନ ଆହାର । ଏସବୁକୁ କାଠହଣା ତା'ର ପ୍ରସାରଣଶୀଳ ଅଗରେ କଣ୍ଟାଥିବା ଜିଭ ସାହାଯ୍ୟରେ ଧରିଥାଏ । ସାଧାରଣ କାଠହଣା ପକ୍ଷୀର ସ୍ୱର କର୍କଶ ଓ 'କ୍ଲିକ୍, କ୍ଲିକ୍' ବା 'କ୍ଲକ୍ ରର-ରର-ରର' । ଏହାର ଉଡ୍‌ଡୟନ ଅନ୍ୟ ସମସ୍ତ ଜାତିର କାଠହଣା ପରି । ଏହା ତରଙ୍ଗାୟିତ ଗତିରେ କ୍ଷିପ୍ରବେଗରେ ଉଡ଼େ । ପର୍ଯ୍ୟାୟକ୍ରମେ କେତେ ଥର ପକ୍ଷ ଆନ୍ଦୋଳିତ କରି ତା' ପରେ ଅଳ୍ପକ୍ଷଣ ପାଇଁ ଅଟିବା ଫଳରେ ଏଭଳି ଉଡ୍‌ଡୟନ ସମ୍ଭବ ହୁଏ । ଭୂମିଠାରୁ ଅଳ୍ପ ଉଚ୍ଚରେ ସଢ଼ି ଯାଇଥିବା ତରୁଶାଖାରେ ଗାତ କରି କାଠହଣା ଅଣ୍ଡା ଦିଏ । ତରୁଶାଖା ଯଦି ଭୂ-ସମାନ୍ତର ଭାବେ ଥାଏ, ତେବେ ବର୍ଷା ଛାଟରୁ ରକ୍ଷାକରିବା ପାଇଁ ପ୍ରବେଶଦ୍ୱାର ତଳଆଡ଼କୁ ରହିଥାଏ । ନିଡ଼ ଗହ୍ୱର ଭିତରେ ସାଧାରଣତଃ କୁଟା କାଠି ଦିଆ ଯାଇ ନ ଥାଏ । ଥରକେ ମାଈ କାଠହଣା ତିନୋଟି ଅଣ୍ଡା ଦିଏ । ଅଣ୍ଡା ଚକଚକିଆ ଧଳା ଓ ପ୍ରାୟ ଗୋଲାକାର ।

ମହରଛା କାଠହଣା ପରି ଆଉ ଏକ କାଠହଣା ସାଧାରଣତଃ ଦେଖିବାକୁ ମିଳେ ? ତାକୁ ଇଂରାଜୀରେ 'ସୁନା ପିଠିଆ କାଠହଣା' (Goldenbaked wood pecker) କହନ୍ତି । ଏହାର ବୈଜ୍ଞାନିକ ନାମ 'ଡିନୋପିଡ଼ିୟମ ବେଙ୍ଗାଲେନ୍‌ସ' (Dinapodium benghalense)। ଏହା ମହରଛା କାଠହଣାଠାରୁ ବଡ଼ । ଏହାର ପିଠି ପକ୍ଷର ବର୍ଣ୍ଣ ସ୍ୱର୍ଣ୍ଣାଭ ଓ କଳା । ତଳପାଖ ଈଷତ୍ ପୀତାଭ ଧଳା ଓ ସେଥିରେ କଳାରେଖା ପଡ଼ିଥାଏ । ଅର୍ଣ୍ଣିଗ୍ର ପକ୍ଷୀର ମୁଣ୍ଡର ମୁକୁଟ ଅଂଶ ଓ ପଶ୍ଚାତ୍ କପାଳ ଗାଢ଼ ଲାଲ୍ ରଙ୍ଗର ; ମାଈର କେବଳ କାନ୍ଥଟା ଅଂଶ ଗାଢ଼ ଲାଲ୍ । ଏ ଜାତି କାଠହଣା ଗ୍ରାମାଞ୍ଚଳର କୁଞ୍ଜମାନଙ୍କରେ, ବଗିଚାରେ ଓ ଅଳ୍ପ ଘଞ୍ଚ ଜଙ୍ଗଲ ଅଞ୍ଚଳରେ ଦେଖାଯାଏ ।

**ପାସାରଫରମିସ** ବର୍ଗ (Order PASSERIFORMES)—ଭାରତରେ ଯେତେ ଜାତିର ପକ୍ଷୀ ଦେଖାଯାନ୍ତି, ତନ୍ମଧ୍ୟରୁ ଏକ ତୃତୀୟାଂଶ ଏହି ପକ୍ଷିବର୍ଗ ଅନ୍ତର୍ଭୁକ୍ତ । ଏହି ବର୍ଗର ପକ୍ଷୀମାନଙ୍କୁ ସାଧାରଣତଃ ବସାଳି ପକ୍ଷୀ (Perching birds) ବା ଗାୟକ ପକ୍ଷୀ (Sing birds) ବୋଲାଯାଏ । ଅନେକଗୁଡ଼ିଏ ପକ୍ଷି ବଂଶ ପାସାରଫରମିସ୍ ବର୍ଗ ଅନ୍ତର୍ଭୁକ୍ତ । ବାହାରୁ ବାହାରୁ ଦେଖିବାକୁ ଗଲେ ଏ ବର୍ଗର ଏକ ବଂଶର ପକ୍ଷୀ ଅନେକଠାରୁ ଭିନ୍ନ; ମାତ୍ର ସେ ସମସ୍ତ ମଧ୍ୟରେ ଶରୀରଗତ କେତେକ ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟରେ ମେଳ ଦେଖାଯାଏ ; ଯଥା-ଗୋଡ଼ ଓ ପାଦର ପେଶୀ ରଜ୍ଜୁ (tendon), କରୋଟି (Skull) ଓ ତାଳୁ ଏବଂ ଶବ୍ଦିନୀ (Syrinx) ମାଂସପେଶୀ । ପକ୍ଷୀମାନଙ୍କର ଶ୍ୱାସନଳୀ (trachea) ର ନିମ୍ନାଂଶରେ ସ୍ୱରଜାତ ହୁଏ ତାକୁ ଶବ୍ଦିନୀ କହନ୍ତି । ପାସାରଫରମିସ ପକ୍ଷିବର୍ଗରେ କେବଳ ଅଳ୍ପ କେତୋଟି ବଂଶର ଅଧିକ ପରିଚିତ ପକ୍ଷୀମାନଙ୍କ ସମ୍ବନ୍ଧରେ ଏଠାରେ ସଂକ୍ଷିପ୍ତ ବିବରଣୀ ଦିଆଯାଉ ଅଛି ।

**ପିଟିଡ଼ି** (Pittidae) ବଂଶ—ନବରଙ୍ଗୀ ପକ୍ଷୀ (Pitta ବା Ant thrush) ଏହି ବଂଶର । ଏମାନେ ଜଙ୍ଗଲବାସୀ, ଉଜ୍ଜ୍ୱଳବର୍ଣ୍ଣର ଓ ଭୂମି ଉପରେ ଖାଦ୍ୟ ଅନ୍ୱେଷଣ କରନ୍ତି । ଏମାନଙ୍କର ଥଣ୍ଟ ମଜଭୁତ୍ । ଜଙ୍ଗଲର ଆର୍ଦ୍ର ଭୂମି ଓ ଅର୍ଦ୍ଧଗଳା ଭିତରେ ଥଣ୍ଟ ଗୁଞ୍ଜି ସେମାନେ କୀଟ ଓ କୋଟଳ ଶୂକ (grub) ବାହାର କରି ଖାଆନ୍ତି । ଏସବୁ ସେମାନଙ୍କର ପ୍ରଧାନ ଆହାର । ନବରଙ୍ଗୀମାନଙ୍କର ଗୋଡ଼ ମଜଭୁତ୍ ଓ ଲମ୍ବା । କସ୍ତୁରୀ (Thrush) ପକ୍ଷୀପରି ସେମାନେ ଡେଇଁ ଡେଇଁ ଚାଲନ୍ତି ଓ କ୍ୱଚିତ୍ ଉଡ଼ନ୍ତି । ବିଚଳିତ ହେଲେ ସେମାନେ ଖଣ୍ଡି ଉଡ଼ା ଦେଇ ଅଳ୍ପ ବାଟ ଉଡ଼ିଯାନ୍ତି ।

ଅବଶ୍ୟ କେତେକ ଜାତି ନବରଙ୍ଗୀ ଦୂର ଦୂରାନ୍ତରକୁ ପରିବ୍ରଜନରେ ଯାଇଥାନ୍ତି ।

**ନବରଙ୍ଗୀ** ( ବର୍ଣ୍ଣଚିତ୍ର 62 )—ଏହାର ଇଂରାଜୀ ନାମ 'ଭାରତୀୟ ନବରଙ୍ଗୀ' ( Indian Pitta ), ବୈଜ୍ଞାନିକ ନାମ 'ପିଟ୍ଟା ବ୍ରାକିଉରା' (Pitta brachyura), ହିନ୍ଦି ନାମ—ନଓ୍ୱରଙ୍ଗ୍ । ଏହାର ଆକାର ବଣି ଚଢ଼େଇ ପରି । ବର୍ଣ୍ଣ ବେଶ୍ ଜାକ-ଜମକିଆ । ଏହା ଦେହରେ ବହୁରଙ୍ଗର ସମାହାର ଦେଖିବାକୁ ମିଳେ । ଯଥା—ସବୁଜ, ନୀଳ, ଘନ ହଳଦିଆ, କଳା ଓ ଧଳା । ତା' ଯାଙ୍ଗକୁ ପେଟ ଓ ଲାଞ୍ଜ ତଳର ବର୍ଣ୍ଣ ଗାଢ଼ ଲାଲ । ଲାଞ୍ଜ ଅଣ୍ଟା ପରି । ପକ୍ଷର ଅଗ ନିକଟରେ ଗୋଟିଏ ଗୋଲ ଧଳା ଅଂଶ ଉଡ଼ିଲା ବେଳେ ସ୍ପଷ୍ଟ ଦେଖାଯାଏ । ବୁଦାବୁଦିକିଆ ଜଙ୍ଗଲ ଓ ବେଶି ଗୁଳ୍ମ ଥିବା ସ୍ଥାନରେ ଶୁଖିଲା ନାଳ ଓ ଗଭୀର ସଙ୍କୀର୍ଣ୍ଣ ଗିରିପଥ ଅଞ୍ଚଳରେ ନବରଙ୍ଗୀ ପକ୍ଷୀ ବାସକରେ । ଏହା ମନୁଷ୍ୟ ବସତି ନିକଟରେ ଓ ଦୂରରେ ଉଭୟତ୍ର ଦେଖାଯାଏ । ମୁଖ୍ୟତଃ ଭୂମିଗୃଧ୍ନୀ ହୋଇଥିଲେ ମଧ୍ୟ ଏହା ବୃକ୍ଷ ଡାଳରେ ବସି ରାତି ଯାପନ କରେ । କସ୍ତୁରୀ ପକ୍ଷୀ ପରି ଲମ୍ବା ଲମ୍ବା ଡିଆଁ ମାରି ସେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଗତିକରେ ଏବଂ ଥଣ୍ଟରେ ପତ୍ର ଆଉଡ଼ାଇ ଖାଦ୍ୟ ଅନ୍ୱେଷଣ କରେ । ଥଣ୍ଟା ଲାଞ୍ଜ ଅବିରତ ଧୀରେ ଓ ଇଚ୍ଛାମତେ ଉପର ତଳ ଆନ୍ଦୋଳିତ ହେଉଥାଏ । ଶାନ୍ତିଭଙ୍ଗ ହେଲେ ନବରଙ୍ଗୀ ଉଡ଼ିଯାଇ ଗୋଟିଏ ନିମ୍ନ ତରୁଶାଖାରେ ବସେ । ଗୋଲମାଲର କାରଣ ଅନ୍ତର୍ହିତ ହେଲେ ତଳକୁ ଓହ୍ଲାଇ ଆସି ପୁଣି ଖାଦ୍ୟ ଅନ୍ୱେଷଣରେ ବ୍ୟାପୃତ ହୁଏ । ଏହାର ସାଧାରଣ ଡାକ ଉଚ୍ଚ, ସ୍ପଷ୍ଟ ଓ ଦି-ବାର ସୁସ୍ୱର ପରି ଓ 'ହୁଇଟ୍-ଟିଉ' ପରି ଶୁଭେ । ପ୍ରଦୋଷ ଓ ଗୋଧୂଳି ସମୟରେ ଏପରି ଡାକ ଦିଏ । ମେଘ ଛାଇଥିଲେ ଅନ୍ୟ ସମୟରେ ମଧ୍ୟ ଏପରି ଡାକ ଦେଇଥାଏ । ବୃକ୍ଷ ଡାଳରେ ଓ ତଳେ ବସିଥିବାବେଳେ ଉଭୟତ୍ର ସେ ଡାକ ଦେଇଥାଏ । ପ୍ରତି ଦଶ ସେକେଣ୍ଡରେ ସେ ତିନି ଚାରିଥର ରାବିଥାରେ । ଏପରି ରାବ ସେ ଏକାଦିକ୍ରମେ ପାଞ୍ଚମିନିଟ ଯାଏ କରିପାରେ । ରାବକରିବା ସମୟରେ ନବରଙ୍ଗୀ ସିଧା ଉପରଆଡ଼କୁ ନିଜକୁ ଉତ୍ତୋଳିତ କରେ / ଓ ପାଣି ପିଇବା ଠାଣିରେ ମୁଣ୍ଡକୁ ପଛ ଆଡ଼କୁ ଦୋଳାଏ । ବିଭିନ୍ନ ଦିଗରୁ ତିନି ଚାରୋଟି ପକ୍ଷୀ ପରସ୍ପର ଡାକର ଜବାବ ଦେଇଥାନ୍ତି । ନବରଙ୍ଗୀର ନୀଡ଼ ବଡ଼ ଓ ଗୋଲକାର । ଏହା ସରୁ କାଠି, ଘାସ ଚେର ଓ ଶୁଖିଲା ପତ୍ର ଇତ୍ୟାଦିରେ ତିଆରି ହୋଇଥାଏ । ନୀଡ଼ର ଗୋଟିଏ କଡ଼କୁ ଗୋଲକାର ପ୍ରବେଶ ପଥ ରହିଥାଏ । ଛୋଟ ଗଛର ଦୁଇଟି ନିମ୍ନ ଶାଖାର ମଧ୍ୟବର୍ତ୍ତୀ ସ୍ଥାନରେ ନୀଡ଼ ରଚିତ ହୁଏ । ବେଳେ-ବେଳେ ନବରଙ୍ଗୀ ବୁଦାମୂଳେ ଭୂମିରେ ମଧ୍ୟ ଅଣ୍ଡା ଦେଇଥାଏ । ଥରକେ ଚାରିଟିରୁ ଛଅଟି ଅଣ୍ଡା ଦିଏ । ତାହା ଦେଖିବାକୁ ଚକ୍‌ଚକିଆ ଧଳା । ତା' ଉପରେ ମସିଆ ବାଇଗଣି

ରଙ୍ଗର ଦାଗ, ଛିଟା ଓ ସୂକ୍ଷ୍ମଗାର ପଡ଼ିଥାଏ ।

**ଏଲଉଡ଼ିଡ**—( Alaudidae ) ବଂଶ—ଭରତ ପକ୍ଷୀ ( Lark ) ଏହି ବଂଶର । ଏମାନେ ଭୂମିଚର ଓ ଅନେକ ସମୟରେ ଏକାଠି ଦଳବାନ୍ଧି ବାସକରନ୍ତି । ସେମାନଙ୍କର ପର ବାଦାମୀ, ଧୂସର, ବାଲିରଙ୍ଗ, କଳା ଓ ଧଳା । ନାନା ପ୍ରକାର ରଙ୍ଗରେ ଏପରି ଭାବେ ରଞ୍ଜିତ ଯେ ଗୁହପାଖର ବର୍ଣ୍ଣ ସହିତ ସେମାନଙ୍କର ବର୍ଣ୍ଣ ମିଳିଯାଏ ଓ ସେମାନେ ସହଜରେ ଲକ୍ଷିତ ହୋଇପାରନ୍ତିନାହିଁ । କେତେକ ଜାତିର ଭରତ ପକ୍ଷୀଙ୍କ ମୁଣ୍ଡରେ ଚୂଳ ଥାଏ । ସେମାନେ ଅନାବୃତ ଖୋଲାଭୂମି ଓ ଗୋଚାରଣ ଭୂମିରେ ବାସ କରନ୍ତି । କେତେକ ଜାତି ଭରତ ପକ୍ଷୀ ଏ ଦେଶର ସ୍ଥାୟୀ ବାସିନ୍ଦା ଓ କେତେକ ପରିବ୍ରାଜୀ । ଅନେକେ ଭାରି ସୁନ୍ଦର ଗାନ କରିପାରନ୍ତି । ସାଧାରଣତଃ ଊର୍ଦ୍ଧ୍ୱକୁ ଉଡ଼ିଲା-ବେଳେ ବା ଉପରେ ଚକ୍‌କର ଦେଇ ଉଡ଼ିଲାବେଳେ ସେମାନେ ଗାନ କରିଥାନ୍ତି ।

**ଚୂଳିଆ ଭରତ ପକ୍ଷୀ**—( ବର୍ଣ୍ଣଚିତ୍ର 63 )—ଇଂରାଜୀ ନାମ 'ଚୂଳିଆ ଭରତ ପକ୍ଷୀ' (Crested lark), ବୈଜ୍ଞାନିକ ନାମ 'ଗାଲେରିଡ଼ା କ୍ରିଷ୍ଟାଟା' ( Galerida cristata ); ହିନ୍ଦୀ – ଚଣ୍ଡୁ (ଉ) ଲ । ଏହା ଆକାରରେ ଘରଚଟିଆଠାରୁ ସାମାନ୍ୟ ବଡ଼ । ମୁଣ୍ଡରେ ଗୋଜିଆ ହୋଇ ଉପର ଆଡ଼କୁ ଚୂଳ ଉଠିଥାଏ ଓ ସ୍ପଷ୍ଟ ଦେଖାଯାଏ । ପିଠିପାଖ ଧୂସରିଆ, ମାଟିଆ ବାଦାମୀ ଓ ତା' ଉପରେ କଳା ରଙ୍ଗର କ୍ଷୁଦ୍ର କ୍ଷୁଦ୍ର ରେଖା ଚିହ୍ନଥାଏ । ପେଟ ପାଖର ବର୍ଣ୍ଣ ନାଲି ରଙ୍ଗର । ଛାତି ଅଂଶରେ ତା' ଉପରେ ବାଦାମୀ ରଙ୍ଗର ଟିପ୍‌ଟିପିଆ ଦାଗ ଥାଏ । ଏମାନେ ଯୋଡ଼ି ଯୋଡ଼ି ହୋଇ ବା ଚାରି ପାଞ୍ଚଟି କରି ପାରିବାରିକ ଦଳରେ ଗୋଠ ବାନ୍ଧି ଖୋଲା ଅର୍ଦ୍ଧ-ମରୁଭୂମି ଅଞ୍ଚଳରେ ଖାଦ୍ୟ ଅନ୍ୱେଷଣ କରୁଥିବାର ଦେଖାଯାଏ । ଘାସ ଓ ଅଗଛାର ବୀଜ, କ୍ଷୁଦ୍ର କ୍ଷୁଦ୍ର କୋଟଳି (beetle) ଓ ଆଉ ଆଉ କୀଟ ଏମାନଙ୍କର ଆହାର । ମଧ୍ୟେ ମଧ୍ୟେ ଚୂଳିଆ ଭରତ ପକ୍ଷୀ ଢେଲା ବା ପଥର ଉପରକୁ ଉଠିଯାଇ ତରଳିଆ ସୁସ୍ୱର ସ୍ୱରରେ ଡାକ ଦିଏ । ତାର ସାଧାରଣ ଡାକ ପ୍ରୀତିକର ଓ ଶୁଣିବାକୁ 'ଟି-ଉର' । ପ୍ରଜନନ ଋତୁରେ ଅଣ୍ଡିରା ପକ୍ଷୀ ଉଡ଼ଉଡ଼ ନୃତ୍ୟଗୀତ ପ୍ରଦର୍ଶନ କରେ । ସେ ଧୀରମନ୍ଥର ଗତିରେ ପକ୍ଷ ଦୋହଲାଇ-ଦୋହଲାଇ ତଳୁ ଉପରକୁ ଅଳ୍ପ କେଇ ମିଟର ଉଡ଼ିଯାଏ; ତା'ପରେ ସୀମିତ ଅଞ୍ଚଳରେ ଉଦ୍ଦେଶ୍ୟହୀନ ଭାବେ ଉଡ଼ିବୁଲେ । ଏହାର ଭିତରେ ଅଳ୍ପ ଛାଡ଼ି ଛାଡ଼ି ତା'ର ମନମତାଣିଆ ସ୍ୱରରେ ଗୀତ ଗାଉଥାଏ । ତା'ପରେ ଦ୍ରୁତଭାବେ ପକ୍ଷ ବିସ୍ତାରକରି ପକ୍ଷକୁ ଅଳ୍ପ ଆନ୍ଦୋଳିତ କରି ତଳକୁ ଉଡ଼ିଆସି ଢେଲା ବା ପଥରଟିଏ ଉପରେ ବସିପଡ଼େ । ଭରତ ପକ୍ଷୀ ( Skylark ) ର ସଜୀବ ଓ ଦୀର୍ଘ ସମୟ ଧରି ପୁଲକିତ ସ୍ୱନ ତୁଳନାରେ

ଚୂଳିଆ ଭରତ ପକ୍ଷୀର ଡାକ ଅଳ୍ପ ସମୟ ବ୍ୟାପୀ ଓ ବହୁତ ନିକୃଷ୍ଟ । ତା’ ହେଲେ ମଧ୍ୟ ଚୂଳିଆ ଭରତ ପକ୍ଷୀ ଜନପ୍ରିୟ ଓ ଲୋକେ ତାକୁ ପିଞ୍ଜରାରେ ରଖି ପାଳନକରନ୍ତି । ପିଞ୍ଜରାରେ ବନ୍ଦୀ ଅବସ୍ଥାରେ ଏହା ବହୁଦିନ ବଞ୍ଚେ । ଏହାର ନୀଡ଼ ଗୋଟିଏ ଅଗଭୀର କପ୍ ପରି । ତାହା ଘାସରେ ତିଆରି ହୋଇଥାଏ ଏବଂ ଭିତରେ କେଶ ଓ ଅନ୍ୟାନ୍ୟ ସୂକ୍ଷ୍ମ ପଦାର୍ଥ ଦିଆଥାଏ । ଖୋଲା ଭୂମିରେ ସାମାନ୍ୟ ନିମ୍ନସ୍ଥାନରେ ଘାସବୁଦା ବା ମାଟି ଢେଲା ଆଢୁଆଳରେ ନୀଡ଼ ଥାଏ । ଚୂଳିଆ ଭରତ ପକ୍ଷୀ ଥରକେ ସାଧାରଣତଃ ତିନି ଗୁରିଟି ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ମସିଆ ହଳଦିଆ, ଧଳା । ତା’ ଉପରେ ବାଦାମୀ ଓ ବାଇଗଣି ରଙ୍ଗର ଗୁପିଗୁପିଆ ଚିହ୍ନ ଥାଏ ।

ଭାରତୀୟ ଉପଦ୍ୱୀପ ଅଞ୍ଚଳରେ ଆଉ ଦୁଇଟି କ୍ଷୁଦ୍ରତର ଚୂଳଥିବା ଭରତ ପକ୍ଷୀ ଦେଖାଯାନ୍ତି । ସେମାନଙ୍କର ବର୍ଣ୍ଣ ଚୂଳିଆ ଭରତପକ୍ଷୀ ଅପେକ୍ଷା ଅଧିକ ଘନ ଲାଲ୍-ବାଦାମୀଆସିଆ । ଗୋଟିକୁ ଇଂରାଜୀରେ **‘ସାଇକ ଚୂଳିଆ ଭରତ ପକ୍ଷୀ’** (Syke’s Crested Lark) କହନ୍ତି । ଏହାର ବୈଜ୍ଞାନିକ ନାମ ‘ଗାଲେରିଡ଼ା ଦେବ’ (Gallerida deva) । ଏହାର ଛାତିରେ ସୂକ୍ଷ୍ମଗାର ପଡ଼ିଥାଏ । ଅନ୍ୟ ଗୋଟିଏ ଚୂଳଥିବା ଭରତ ପକ୍ଷୀକୁ ଇଂରାଜୀରେ **‘ମାଲବାର ଚୂଳିଆ ଭରତ ପକ୍ଷୀ’** (Malabar Crested Lark) କହନ୍ତି । ଏହାର ବୈଜ୍ଞାନିକ **ନାମ** ‘ଗାଲେରିଡ଼ା ମାଲ୍‌ବାରିକା’ (Gallerida malabarica) । ଏହାର ବକ୍ଷ ଅଞ୍ଚଳରେ ଥିବା ରେଖା ଅଧିକ ସଂଖ୍ୟକ ଓ ଓସାରିଆ ।

**ଦୂରୀ** (ବର୍ଣ୍ଣଚିତ୍ର 64)—ଏହାକୁ ଇଂରାଜୀରେ ‘ପାଉଁସିଆ ମୁଣ୍ଡି ଫିନ୍‌ଚ୍ ଭରତପକ୍ଷୀ’ (Ashycrowned Finch-Lark) ଓ ‘କଳା ପେଟିଆ ଫିନଚ୍ ଭରତ ପକ୍ଷୀ’ (Black-bellied Finch-Lark) କହନ୍ତି । ବୈଜ୍ଞାନିକ ନାମ ‘ଏରେମ୍-ଅପ୍‌ଟେରକ୍ସ ଗ୍ରିସିଆ’ (Eremopterox grisea) । ହିନ୍ଦି ନାମ—ଦୟୋରା, ଦୁରୀ ଓ ଫୋର୍ଦୋଲୀ । ଏହା ଆକାରରେ ଚଟିଆଠାରୁ ସାନ ଓ ଅନେକ ପରିମାଣରେ ଆପି ବସିଥିବା ଫିନ୍‌ଚ ପକ୍ଷୀ (୧) ପରି । ଅଣ୍ଡିରା ପକ୍ଷୀର ପିଠି ପାଖର ବର୍ଣ୍ଣ ବାଲିପରି ବାଦାମୀ; ତଳପାଖ କଳା । ଏହାର ମସ୍ତକ ପାଉଁଶିଆ ଏବଂ ଗଣ୍ଡଦେଶ ଧଳା ଓ ସୁସ୍ପଷ୍ଟ । ମାଈପକ୍ଷୀର ଉପର ତଳ ସାରାଦେହ ବାଲିପରି ବାଦାମୀ । କର୍ଷିତ ଓ ପଡ଼ିଆ ଜମି ଥିବା ଶୁଷ୍କ ଖୋଲା ଗ୍ରାମାଞ୍ଚଳରେ ସାଧାରଣତଃ ଏମାନେ ଅଳ୍ପ ବିକ୍ଷିପ୍ତ ଭାବେ ଯୋଡ଼ ଯୋଡ଼ ହୋଇ ଅଥବା କ୍ଷୁଦ୍ର କ୍ଷୁଦ୍ର ଦଳରେ ଦେଖିବାକୁ ମିଳନ୍ତି । ଏମାନଙ୍କର ବର୍ଣ୍ଣ ଅଳ୍ପ

(୧) ଫିନଚ୍ (Finch) ପକ୍ଷୀ ଆମେରିକାରେ ଦେଖାଯାନ୍ତି । ଏମାନେ ଫ୍ରିନ୍‌ଜିଲିଡ଼ି (Fringillidae) ପକ୍ଷୀ ବଂଶ ଅନ୍ତର୍ଭୁକ୍ତ ।

ସୁନ୍ଦର ଭାବେ ମାଟି ସହିତ ମିଶିଯାଏ । ଏମାନେ ଉଦ୍ୟମ ସହକାରେ ଖଣ୍ଡି ଉଡ଼ା ଦେଇ ଦେଇ ବିଶୃଂଖଳ ଭାବେ ଏପଟ ସେପଟ ଅଙ୍କାବଙ୍କା ପଥରେ ଆହାର ଖୋଜି ଲାଗିଥାନ୍ତି । ଘାସବୀଜ, ଶସ୍ୟ ଓ କୀଟ ଦୁଇ ପକ୍ଷୀମାନଙ୍କର ଆହାର । ଏହା ଦ୍ରୁତ ବେଗରେ ଡେଣା ଝାଡ଼ି ଝାଡ଼ି ଓ ମଝେ ମଝେ ପକ୍ଷ ସଞ୍ଚାଳନ ନ କରି ଉଡ଼ୁଥାଏ । ଅଣ୍ଡିରି ପକ୍ଷୀର ସ୍ୱନ ଅତି ମନୋମୁଗ୍ଧକର କ୍ଷୁଦ୍ର ସଙ୍ଗୀତ । ଏହି ଗାନ କମ୍ପିତସ୍ୱରରେ ଗଳା ଥରାଇ ଗାଇବା ଓ ଟଣା 'ହୁଇଚଙ୍ଗ' (Whuching) ସ୍ୱରର ଏକ ପ୍ରକାର ମିଶ୍ରଣ । ଅଣ୍ଡିରି-ପକ୍ଷୀ ତଳେ ବସିଥିଲାବେଳେ ଓ ଆକାଶରେ ଅତି ଆକର୍ଷଣୀୟ କ୍ରୀଡ଼ା ଖେଳ ଦେଖାଉ-ଥିଲାବେଳେ ଏପରି କୂଜନ କରିଥାଏ । ପକ୍ଷକୁ କମ୍ପିତ କରି କରି ସେ ସିଧା ଉପର ଆଡ଼କୁ ବନ୍ଧୁକରୁ ଗୁଳି ବାହାରି ଗଲା ପରି ପ୍ରାୟ ତିରିଶ ମିଟର ଯାଏ ଉଡ଼ିଯାଏ । ତା'ପରେ ପକ୍ଷକୁ କଡ଼କୁ ଟାଣିଆଣି ପାହାଡ଼ିଆ ଢାଲୁ ଅଂଶରେ ଗଡ଼ିଲା ପରି କଚ୍ଛବାଟ ଉଡ଼ାଜାହାଜ 'ନାକଡ଼ୁବା' (nose-dirve) ମାରିଲା ପରି ତଳକୁ ଓହ୍ଲାଇ ଆସେ । ସଂବେଗ (Momentum)ର ସୁଯୋଗ ନେଇ ସେ ହଠାତ୍ ବୁଲିପଡ଼ି ଆକାଶ ଆଡ଼କୁ ମୁହଁ କରେ, ତା' କେତେଥର ଦ୍ରୁତ ବେଗରେ ପକ୍ଷ ସଂଚାଳନ କରେ, ତା'ପରେ ଡେଣା ବୁଜିଦେଇ ସେ ପୁଣି ଉପରଆଡ଼କୁ କଚ୍ଛବାଟ ବନ୍ଧୁକର ଗୁଳି ବାହାରିଗଲା ପରି ଉଠିଯାଏ । ଏହି ପ୍ରବାହର ଚୂଡ଼ାନ୍ତ ଅବସ୍ଥାବେଳେ ସେ ଭ୍ରାମ୍ୟତ ଭାବେ ବୁଲିପଡ଼ି ପୁଣି 'ନାକ ଡୁବା' ଦିଏ । ଏଇପରି ସେ ବାରମ୍ବାର ନାକଡୁବା ଖେଳ ଦେଖାଇ ଦେଖାଇ ଉପରୁ 'ପାହାଚ ପାହାଚ' ଓହ୍ଲାଇ ଆସେ । ଏଇପରି ଭାବେ ଆସି ଆସି ଶେଷରେ ଅଣନିଃଶ୍ୱାସୀ ହୋଇ ଭୂମିରେ ଧକ୍କା ଖାଇଯିବ ମନେହେଲାବେଳକୁ ସେ ଚଟେଇ ଯାଇ ନମନୀୟ ଭାବେ ବାହାରି ଆସି କୁନ୍ଦ ବା ପଥର ଉପରେ ଆସି ବିଶ୍ରାମ ନିଏ । ପ୍ରତିଥର ଡୁବା ଉଡ଼ାବେଳେ ସେ ତା'ର ମୁଗ୍ଧକର 'ହୁଇଚଙ୍ଗ୍' ଧ୍ୱନି କରେ । ଅବିଳମ୍ବେ ପୁଣି ଏହି ପ୍ରଦର୍ଶନ ପୁନର୍ବାର ଅଭିନୀତ ହୁଏ । ଦୁଇ ଅଣ୍ଡିରି ପକ୍ଷୀ ଏହି ଆକାଶ ଖେଳ ଅତିରିକ୍ତ ଭାବେ ଲଳିତ୍ୟ ଓ ଉଦ୍ଦୀପନା ସହିତ ପ୍ରଦର୍ଶନ କରୁଥିବାରୁ ତାହା ଲକ୍ଷ୍ୟ କରିବାକୁ ଗଭୀର ଆଗ୍ରହ ହୁଏ । ଏହି କ୍ଷୁଦ୍ର ନିରୀହ-ପକ୍ଷୀ ଖୋଲା ଅଞ୍ଚଳରେ କୁନ୍ଦ ବା ଛୋଟ ବୁଦା ଆଢ଼ୁଆଳରେ ଭୂମି ଉପରେ ସାମାନ୍ୟ ନୀଚ ଥାଳିଆ ଆକାର ଗାତରେ ସୂକ୍ଷ୍ମ ଘାସ, କେଶ, ପର ଦେଇ ନୀଡ଼ ରଚନାକରେ । ଅନେକ ସମୟରେ ଗାତରେ ଛୋଟ ଛୋଟ କଙ୍କର ବିଛାହୋଇ ତା' ଉପରେ ସେ ସବୁ ଦିଆଯାଏ । ଥରକେ ମାଈ ଦୁଇ ଦୁଇଟିରୁ ତିନୋଟି ଯାଏ ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଫିକା ହଳଦିଆ ବା ଧୂସରିଆ ଧଳା । ତା' ଉପରେ ବାଦାମୀ ଓ ଫିକା ନୀଳରଙ୍ଗର

ଥିବା ଓ ଗୁଣ୍ଡୁପଗୁଣ୍ଡିଆ ଦାଗ ଥାଏ ।

**ହିରୁନ୍‌ଡିନିଡ଼** ବଂଶ (Family Hirundinidae)—ମାର୍ଟିନ (Martin) ବା ଚଟିଆ-ବାଦୁଇ ପକ୍ଷୀ ଓ ଅବାବିଲ ବା ବାଦୁଇ ପକ୍ଷୀ (Swallow) ଏହି ବଂଶ ଅନ୍ତର୍ଭୁକ୍ତ । ଏହି ପକ୍ଷୀମାନେ ଗୋଠ ବାନ୍ଧି ବୁଲନ୍ତି ଓ ଉପରଠାଉରିଆ ଭାବେ ଲକ୍ଷ୍ୟ କଲେ ଗୃଢକ (Swift) ପକ୍ଷୀପରି ଦେଖାଯାନ୍ତି । ଏଣୁ ଓଡ଼ିଶାର ଅନେକ ସ୍ଥାନରେ ଏହାକୁ ଲୋକେ ଭ୍ରମବଶତଃ ଗୃଢକ ବୋଲି କହିଥାନ୍ତି । ଏମାନେ ଅଧିକାଂଶ ସମୟ ଉଡ଼ି ଥାନ୍ତି ଓ କ୍ଷୁଦ୍ର ପତଙ୍ଗମାନଙ୍କୁ ଓସାରିଆ ଥଣ୍ଟ ମେଲାଇ ଧରି ଖାନ୍ତି । ଏମାନଙ୍କର ଡେଣା ଲମ୍ବା ଓ ଗୋଜିଆ ; ମାତ୍ର ଗୃଢକମାନଙ୍କ ଅପେକ୍ଷା ଓସାରିଆ । ଗୃଢକର ଡେଣା ଅନେକ ପରିମାଣରେ ଧନୁ ପରି; ମାତ୍ର ମାର୍ଟିନ ଓ ବାଦୁଇ ପକ୍ଷୀମାନଙ୍କର ଡେଣା ଏତେଟା ଧନୁପରି ନୁହେଁ । ହିରୁନ୍‌ଡିନିଡ଼ ପକ୍ଷୀ ବଂଶର ଅନେକ ପକ୍ଷୀଙ୍କର ଲାଞ୍ଜ ଦୁଫାଳିଆ । ସେମାନଙ୍କର ଉଡ଼ନ୍ତ୍ୟଭଙ୍ଗୀ ଚଞ୍ଚଳ ଓ ମନୋହର । ଏହି ବଂଶର କେତେକ ପକ୍ଷୀ ଆମ ଦେଶରେ ପ୍ରଜନନ କରନ୍ତି । ଆଉ କେତେକ ପରିବ୍ରାଜୀ । ସେମାନେ ପେଲି-ଆରକ୍‌ଟିକ୍ (Palaearctic Rigion) ଅଞ୍ଚଳରୁ ଆସିଥାଆନ୍ତି । ଆମ ଦେଶରେ ସବୁଠାରୁ ସାଧାରଣ ଅଧିବାସୀ ବାଦୁଇ ପକ୍ଷୀ ହେଲି **ଲାଲ-ନିତମ୍ବ ବାଦୁଇ** (ବର୍ଣ୍ଣଚିତ୍ର 65) । ଏହାକୁ ଇଂରାଜିରେ 'ଲାଲ-ନିତମ୍ବ ବାଦୁଇ' (Redrumped Swallow) କହନ୍ତି । ବୈଜ୍ଞାନିକ ନାମ 'ହିରୁଣ୍ଡୋ ଡଉରିକା'' (Hirundo daurica) । ହିନ୍ଦି ନାମ, ମସଜିଦ୍ ଅବାବିଲ । ଏହାର ଆକାର ପ୍ରାୟ ଚଟିଆ ପରି । ଲାଞ୍ଜ ଅତ୍ୟନ୍ତ ଦୁଫାଳିଆ । ଦେହ ଉପର ବର୍ଣ୍ଣ ଚକଚକିଆ ଘନ ନୀଳ-ବାଦାମୀ । ପେଟ ପାଖ ଫିକା ହଳଦିଆ-ଧଳା; ତା' ଉପରେ ସୂକ୍ଷ୍ମ ଘନ-ବାଦାମୀ ରଙ୍ଗର ଗାର ପଡ଼ିଥାଏ । ବେକର ପଛ ପାଖରେ ବାଦାମୀ ରଙ୍ଗର ଏକ ଚ୍ଛେଟ ପଟି ଥାଏ ଏବଂ ପିଚ୍ଛ ବାଦାମୀ ରଙ୍ଗର । ଏ ଦୁଇଟି ଲକ୍ଷଣରୁ ଲାଲ-ନିତମ୍ବ ବାଦୁଇ ପକ୍ଷୀକୁ ଅନ୍ୟ ବାଦୁଇ ପକ୍ଷୀମାନଙ୍କଠାରୁ ପୃଥକ୍ କରିଯାଇ ପାରେ । ଉଡ଼ିଲାବେଳେ ଲାଲ ପିଚ୍ଛ ସ୍ପଷ୍ଟ ଦେଖାଯାଏ । ଏକାଧିକ ପ୍ରଜାତି ବା ବର୍ଣ୍ଣ (race)ର ଲାଲ ନିତମ୍ବ ବାଦୁଇ ପକ୍ଷୀ ଅଛନ୍ତି । ଆମ ଦେଶର ଅଧିବାସୀ ଲାଲ ନିତମ୍ବ ବାଦୁଇ ପକ୍ଷୀ ତନ୍ମଧ୍ୟରୁ ଗୋଟିଏ । ଶୀତକାଳରେ ଆମ ଦେଶକୁ ଆଉ ଏକ ପ୍ରଜାତିର ଲାଲ୍ ନିତମ୍ବ ବାଦୁଇ ପକ୍ଷୀ ଆସନ୍ତି । ବହୁଦୂର ବ୍ୟାପୀ ଟେଲିଗ୍ରାଫ୍ ତାର ଉପରେ ଏମାନେ ହଜାର ହଜାର ସଂଖ୍ୟାରେ ପାଖକୁ ପାଖ ବସିଥିବାର ଦେଖାଯାଏ । ଏହି ପକ୍ଷୀର ପେଟ ପାଖରେ ପଡ଼ିଥିବା ଗାର ସ୍ପଷ୍ଟଭାବେ ଓସାରିଆ ଓ ପିଚ୍ଛର ଲାଲ ରଙ୍ଗ ବହୁତ ଫିକା ।

ବାବୁଇ ପକ୍ଷୀ ଦିନର ଅଧିକାଂଶ ସମୟ ଉଚ୍ଚାକାଶରେ ବା ଭୂମି ନିକଟରେ ଉଡ଼ନ୍ତୀୟମାନ କ୍ଷୁଦ୍ର କ୍ଷୁଦ୍ର କୀଟ ଶିକାର କରିବାରେ କଟାନ୍ତି । ପ୍ରଜନନ ଋତୁକୁ ଛାଡ଼ି ଦେଲେ ଅନ୍ୟ ସମୟରେ ଏମାନେ ସମାଜ ଜୀବନ ଯାପନ କରନ୍ତି । ଅନେକ ସମୟରେ ଏମାନେ ବହୁ ସଂଖ୍ୟାରେ ଏକାଠି ହୋଇ ଶିକାର କରନ୍ତି । ସ୍ୱାଙ୍କ ସହିତ ଗୃଡକ (Swift) ଓ ଚୁଟିଆ ବାବୁଇ (Martin) ପକ୍ଷୀ ମଧ୍ୟ ଯୋଗ ଦେବାର ଦେଖାଯାଏ । ସେମାନେ ବହୁ ସଂଖ୍ୟାରେ ନଳବଣରେ ବା ଆଖୁକ୍ଷିଆରିରେ ବିଶେଷ କରି ଜଳ ମାଡ଼ିଥିବା ନଳବଣ ବା ଆଖୁକିଆରିରେ ରାତ୍ରି ଯାପନକରନ୍ତି । ସେମାନଙ୍କର ଉଡ଼ୟନ ଦ୍ରୁତ ଓ ସୁଦୃଶ୍ୟ । ଲାଞ୍ଜ ଖୁବ୍ ବେଶି ଦିଫାଳ ହୋଇଥିବାରୁ ସେମାନେ ଶିକାର କୀଟ ପତଙ୍ଗ ପିଛା ଉଡ଼ିଲାବେଳେ ଘୂରିବା ମୋଡ଼ିବାରେ ତାହା ବିଶେଷ ସହାୟକ ହୁଏ । ଉଡ଼ିଲାବେଳେ ବାବୁଇ ପକ୍ଷୀ ପ୍ରଥମେ ଦ୍ରୁତବେଗରେ କେତେବାର ପକ୍ଷ ସଞ୍ଚାଳନ ପରେ ଭସି ଭସି (Glide) ଗତିକରେ । ପ୍ରଜନନ କାଳରେ ସେମାନଙ୍କର କିଚିରି ମିଚିରି ରବ ଶୁଣିବାକୁ ଭଲ ଲାଗେ । ଲାଲ-ନିତମ୍ବ ବାବୁଇ ପକ୍ଷୀର ନୀଡ଼ ବକ ଯନ୍ତ୍ର ଆକୃତିର (Retort-shaped) । ଏଥିରେ କାଦୁଅ ଲେପା ହୋଇଥାଏ । ନୀଡ଼ର ମୁଖ ସଂକୀର୍ଣ୍ଣ ଓ ନଳାକାର । ପଥର ଗୁହା, ବାସଗୃହ ବା ରାସ୍ତା ପୋଲ (Culvert)ର ଛାତ ଭିତର ପଟରେ ନୀଡ଼ ମୁଖ ଲାଗି ରହିଥାଏ । ଗୋଲକାର ଅଣ୍ଡ-କୋଠରୀ ଭିତରେ ପର ଦିଆଯାଇଥାଏ । ସେମାନେ ଥରକେ ତିନୋଟି ବା ଚାରିଟି ଅଣ୍ଡା ଦିଅନ୍ତି । ଅଣ୍ଡାର ବର୍ଣ୍ଣ ସମ୍ପୂର୍ଣ୍ଣ ସଫେଦ । ଆଉ ଜାତିଏ ବାବୁଇ ପକ୍ଷୀ ଲାଲ-ନିତମ୍ବ ବାବୁଇ ପକ୍ଷୀ ସହିତ ଶୀତଦିନେ ସାଧାରଣତଃ ଦେଖାଯାନ୍ତି । ଏହା ଗୋଟିଏ ପରିବ୍ରାଜୀ ପକ୍ଷୀ ଓ ୟୁରୋପରୁ ଆସେ । ଏହାକୁ ଇଂରାଜୀରେ **'ସାଧାରଣ ବାବୁଇ ପକ୍ଷୀ'** (Common Swallow) ବୋଲି କହିଥାନ୍ତି । ଏହାର ବୈଜ୍ଞାନିକ ନାମ 'ହିରୁଣ୍ଡୋରାଷ୍ଟିକ' (Hirundo rustica) । ଏହାର ପିଠି ପାଖର ବର୍ଣ୍ଣ ଚକ୍‌ଚକିଆ ଇସ୍ପାତ୍ ବା ବାଇଗଣି-ନୀଳ; ପେଟ ପାଖ ଫିକା ପାଟଳ ଧଳା । କପାଳ ଓ ତଣ୍ଟି ବାଦାମୀ । ତଣ୍ଟିରେ ଥିବା ଚିହ୍ନକୁ ବେଢ଼ି ବକ୍ଷଆଡ଼କୁ ଏକ ଓସାରିଆ ଚକ୍‌ଚକିଆ କଳା ପଟି ରହିଥାଏ । ଏହି ପକ୍ଷୀର ଲାଞ୍ଜ ମଧ୍ୟ ବହୁତ ବେଶି ଦିଫାଳିଆ ।

ଲଟୋରା ପକ୍ଷୀ ଲାନିଡ଼ି (Laniidae) ପକ୍ଷିବଂଶ ଅନ୍ତର୍ଭୁକ୍ତ । ଏମାନଙ୍କୁ ଇଂରାଜୀରେ 'ସ୍ରାଇକ' (shrike) ବା 'ଘାତକ ପକ୍ଷୀ' (Butcher bird) ବୋଲି କୁହାଯାଏ । ଏ ବଂଶର ପକ୍ଷୀମାନଙ୍କର ଆକାର ସାଧାରଣତଃ ଗୋବରା ଚଢ଼େଇ ଓ ବଣି ଚଢ଼େଇ ମଝାମଝି ହେବ । ଏମାନଙ୍କର ମୁଣ୍ଡ ବଡ଼; ଥଣ୍ଟ ମଜବୁତ୍, ହିଦା ଓ

ଆଙ୍କୁଶୀ ପରି ମୁନିଆଁ । ନଖ ତୀକ୍ଷ୍ଣ । ଏ ସବୁ ଶ୍ରେଷ୍ଠ ବାଜପକ୍ଷୀର ଲକ୍ଷଣ କହିଲେ ଚଳେ । ଲାଞ୍ଜ କ୍ରମଚିହ୍ନିତ ( graduated ) ଅର୍ଥାତ୍ ଧାପେ ଧାପେ ସରୁ । ମାଈ ଅଣ୍ଡିରି ଏକାପରି । ଏହି ପକ୍ଷୀ ବଂଶର ଅନେକ ପକ୍ଷୀଙ୍କର ସ୍ୱଭାବ ହେଲା, ଶିକାର କରି ଖାଇବା, ଯେତେ ଖାଇ ପାରିବେ ତା'ଠାରୁ ଅଧିକ ମାରିବା ଓ ବଳକା ଶିକାରକୁ ପରେ ସୁବିଧା ଅନୁସାରେ ଖାଇବା ଲାଗି କଣ୍ଟାରେ ଝୁଲାଇ ରଖିବା । ଏଥିପାଇଁ ଏମାନଙ୍କୁ 'ଘାତକ ପକ୍ଷୀ' ଆଖ୍ୟା ଦିଆଯାଏ । ଆମର ସବୁଠାରୁ ସାଧାରଣ ଲଟୋରି ପକ୍ଷୀ ହେଲା **ଧଳା ଲଟୋରା** । ଏହାକୁ ଇଂରାଜୀରେ 'ପାଉଁଶିଆ ଲଟୋରି' (Grey shrike ) ବୋଲି କୁହାଯାଏ ( ବର୍ଣ୍ଣଚିତ୍ର 66 ) । ବୈଜ୍ଞାନିକ ନାମ 'ଲାନିୟାସ ଏକ୍ସକୁବିଟାର' ( Lanius excubitor ) । ହିନ୍ଦି ନାମ, ସଫେଦ୍ ଲଟୋରା । ଆମର ଲଟୋରା ପକ୍ଷୀମାନଙ୍କ ମଧ୍ୟରେ ଏହା ବୃହତ୍ତମ । ଆକାର ବଣି ଚଢ଼େଇର ଆକାର ହେବ । ବର୍ଣ୍ଣ ଦୃଷ୍ଟି ଆକର୍ଷକାରୀ ରୂପେଲି-ଧୂସର । ଲାଞ୍ଜ ଲମ୍ବା ଓ ତାର ବର୍ଣ୍ଣ କଳା-ଧଳା । ଥଣ୍ଟରୁ ପଛ ଆଡ଼କୁ ଆଖି ଦେଇ ଏକ ଓସାରିଆ କଳାପଟି ପରି ରେଖା ପଡ଼ିଥାଏ । ପକ୍ଷ କଳା । ମାତ୍ର ଉଡ଼ିଲାବେଳେ ଧଳା ଚିହ୍ନ ବା 'ଦର୍ପଣ' ( mirror ) ପ୍ରତିଭାତ ହୁଏ । ମୁଣ୍ଡ ବଡ଼ । ଥଣ୍ଟ ଓଜନିଆ; ଜିଦା ଓ ଆଙ୍କୁଶୀ ପରି ବଙ୍କା ହୋଇଥିବାରୁ ଏହା ଦେଖିବାକୁ ବାଜପକ୍ଷୀ ପରି ଭୟଙ୍କର । ଧଳା ଲଟୋରା ଖୋଲା ଶୁଷ୍କଭୂମିରେ ଏକୁଟିଆ ବାସ-କରିବାର ଦେଖାଯାଏ । ଶିକାର ପାଇଁ ଚାରିଆଡ଼କୁ ତୀକ୍ଷ୍ଣ ଦୃଷ୍ଟି ରଖି ସେ କୌଣସି ଖୋଲା ବୁଦା ଉପରେ ବସିଥାଏ । ମଧ୍ୟେ ମଧ୍ୟେ ଭୂମିଆଡ଼କୁ ଝପଟି ଆସି ଶିକାର ଉପରେ ଚଢ଼ାଉ କରେ ଓ ତାକୁ ଧରି ଫେରିଯାଏ । ବସିବା ସ୍ଥାନକୁ ଯାଇ ଶିକାର ବସ୍ତୁକୁ ଗୋଡ଼ତଳେ ଚିପିଧରେ ଓ ତୀକ୍ଷ୍ଣ ଆଙ୍କୁଶୀ ପରି ବଙ୍କା ଥଣ୍ଟରେ ଖଣ୍ଡ ଖଣ୍ଡ କରି ଛିଣ୍ଡାଇ ଗିଳେ । ପ୍ରତ୍ୟେକ ଧଳା ଲଟୋରା ପକ୍ଷୀର ଏକ ନିର୍ଦ୍ଦିଷ୍ଟ ସ୍ୱୀକୃତ ଶିକାର ବା ଖାଦ୍ୟ ସଂଗ୍ରହ ଅଞ୍ଚଳ ଥାଏ । ସେଠାରେ ସେ ଦିନ ପରେ ଦିନ ଆସି ଶିକାର କରେ ଓ କେହି ଯେପରି ସେ ଅଞ୍ଚଳରେ ଅନଧିକାର ପ୍ରବେଶ ନ କରନ୍ତି, ସେଥିପ୍ରତି ଦୃଷ୍ଟି ରଖେ । ଟିଙ୍କି, ଝିଙ୍କିକା, ଝିଲ୍ଲୀ କୀଟ ( cricket ) ଓ ଅନ୍ୟ ବଡ଼ ବଡ଼ ପତଙ୍ଗ, କୃକଳାସ ( Lizards ), ମୂଷା, ପକ୍ଷିଶାବକ ଓ ଦୁର୍ବଳିଆ ପକ୍ଷୀ ଏମାନଙ୍କର ଆହାର । ବେଳେ ବେଳେ ସେମାନଙ୍କଠାରୁ ଅନେକ ବଡ଼ ପକ୍ଷୀଙ୍କୁ ମଧ୍ୟ ଧଳା ଲଟୋରା ଶିକାର କରେ । ଏହାର ସାଧାରଣ ଡାକ କର୍କଶ ଓ ବିରକ୍ତିକର; ମାତ୍ର ପ୍ରଜନନ ଋତୁରେ ଏହାର ଠୁଣଠୁଣିଆ ସ୍ୱନ ଅତ୍ୟନ୍ତ ପ୍ରୀତିକର । ତାର ଏହି ସ୍ୱନ ସହିତ ଅନ୍ୟ ଅନେକ ଜାତି ପକ୍ଷୀମାନଙ୍କର ସ୍ୱନ ମଧ୍ୟ ମିଶି ରହିଥାଏ । ଏହାର କାରଣ ଏହି ଯେ ଲଟୋରା ପକ୍ଷୀ ଅନ୍ୟ

ପକ୍ଷୀମାନଙ୍କର ସ୍ୱରକୁ ଚମତ୍କାର ଭାବେ ନକଲ କରିପାରେ । ମଧ୍ୟଭଳି ଉଚ୍ଚତାରେ କର୍ଣ୍ଣା ବୁଦାରେ ଏମାନେ କଣ୍ଟା, କାଠିରେ ଗଛାଇଆ କପ୍ ଭଳି ଘନ ସନ୍ନିବିଷ୍ଟ ନୀଡ଼ ରଚନାକରନ୍ତି । ଭିତରେ ଛୁଣ୍ଡା କନା ଝୁଟୁରୁ, ଲୋମ, ପକ୍ଷ ଇତ୍ୟାଦି କୋମଳ ପଦାର୍ଥ ଦିଆଯାଏ । ଥରକେ ତିନୋଟିରୁ ଛଅଟିଯାଏ ଅଣ୍ଡା ଦିଅନ୍ତି । ଅଣ୍ଡାର ବର୍ଣ୍ଣରେ ବହୁତ ପ୍ରଭେଦ ଦେଖାଯାଏ । ସାଧାରଣତଃ ଅଣ୍ଡାର ବର୍ଣ୍ଣ ଫିକା ସବୁଜ ଧଳା; ତା' ଉପରେ ବାଇଗଣି-ବାଦାମୀ ରଙ୍ଗର ଛିଟା ଓ ଦାଗ ଘନଭାବେ ଥାଏ ।

ଆମ ଭାରତରେ ଆହୁରି ଅନେକ ଜାତିର ଲଟୋରି ପକ୍ଷୀ ଦେଖାଯାନ୍ତି । ସେମାନଙ୍କ ମଧ୍ୟରେ ଗୋଟିଏ ଅତି ସାଧାରଣ ପକ୍ଷୀ ହେଲା **କସରା ଲଟୋରା** । ଏହାକୁ ଇଂରାଜୀରେ 'ଲାଲ-ବାଦାମୀ ପିଠିଆ ଲଟୋରି' ( Rufous backed shrike ) କହନ୍ତି । ବୈଜ୍ଞାନିକ ନାମ 'ଲାନିଅସ ସାଚ୍' ( Lanius schach ) । ଏହା ଧଳା ଲଟୋରିଠାରୁ ଟିକିଏ ସାନ । ପିଠିର ନିମ୍ନଭାଗ ଓ ପିଚ୍ଛ ଉଜ୍ଜ୍ୱଳ ଲାଲ-ବାଦାମୀ । ପେଟପାଖ ସେହି ବର୍ଣ୍ଣରେ ବୁଡ଼ା ହୋଇଥିଲା ପରି ମନେହୁଏ । ଏହା ଅଳ୍ପ ଶୁଷ୍କ, ଅଧିକ ଜଙ୍ଗଲିଆ ଓ ଅଧିକ ଜଳଥିବା ଅଞ୍ଚଳରେ ବାସକରେ ।

ହଳଦିବସନ୍ତ ଓରିଓଲିଡ଼ି ( Oriolidae ) ବଂଶଭୁକ୍ତ ପକ୍ଷୀ । ଆମର ଅତି ପରିଚିତ **ହଳଦି ବସନ୍ତ** ( Oriole ) ( ବର୍ଣ୍ଣଚିତ୍ର 67 ) କୁ ଇଂରାଜୀରେ 'କଳାମୁଣ୍ଡିଆ ହଳଦିବସନ୍ତ' ( Black headed Oriole ) ବୋଲି କହନ୍ତି । ଏହାର ବୈଜ୍ଞାନିକ ନାମ 'ଓରିଓଲସ ଜାନ୍ଥୋରନାସ' ( Oriolus xanthornus ) । ହିନ୍ଦୀନାମ ପୀ(ଇ)ଲକ୍ । ଏହା ଆକାରରେ ବଣି ଚଢ଼େଇ ପରି ହେବ । ହଳଦି ବସନ୍ତ ବୃକ୍ଷବାସୀ । ଦେହର ବର୍ଣ୍ଣ ଉଜ୍ଜ୍ୱଳ ସୁନା ପରି ହଳଦିଆ । ମୁଣ୍ଡ, ତଣ୍ଟି ବା ଗ୍ରୀବାର ଉପର ଅଂଶ ନିପଟ କଳା । ପକ୍ଷ ଓ ଲାଞ୍ଜରେ ମଧ୍ୟ କଳା ଅଂଶ ଥାଏ । ଥଣ୍ଟ ଉଜ୍ଜ୍ୱଳ ପାଟଳ ବର୍ଣ୍ଣ ଓ ଆଖି ଗାଢ଼ ଲାଲବର୍ଣ୍ଣ । ମାଈ ହଳଦି ବସନ୍ତର ମୁଣ୍ଡ ଫିକାସିଆ କଳା । ପକ୍ଷିଶାବକମାନଙ୍କର ଲଲାଟ ହଳଦିଆ ଓ ମୁଣ୍ଡରେ ହଳଦିଆ ଡୋରିଆ ଦାଗ ଥାଏ । ବନାଚ୍ଛନ୍ନ ଅଞ୍ଚଳରେ ହଳଦିବସନ୍ତ ଗୋଟିକିଆ ହୋଇ ଦେଖିବାକୁ ମିଳେ । ଏହା ସ୍ୱଭାବତଃ ଲାଜୁକ ଓ ଅପସୃତ (retiring) ପ୍ରକୃତିର । ହେଲେହେଁ ଗ୍ରାମ ନିକଟ ଓ ଭିତରେ, ଏପରିକି ବଡ଼ ସହରର ଘୋଘା ଭିତରେ ଥିବା ଉଦ୍ୟାନର ଗହଳ ପତ୍ର ଭିତରେ ଏହା ଦେଖିବାକୁ ମିଳେ । ପତ୍ର ଭିତରେ ଦ୍ରୁତବେଗରେ ଉଡ଼ିଗଲାବେଳେ ମନେହୁଏ ଯେପରି ହଳଦିଆ ସୁବର୍ଣ୍ଣର ରେଖାଟିଏ ଭାସିଗଲା । ଏହାର ସାଧାରଣ ଡାକ ହେଲା ପ୍ରଥମେ କର୍କଶ 'ଚିଆହ୍ୱା' ବା 'କ୍ୟାକ୍' ଓ

ତା'ପରେ ଗ୍ରୀଷ୍ମମଧୁର ସୁସ୍ୱର ପରି 'ପିଲୋ' ବା 'ପିଲୋଲୋ' । ଏହି ସ୍ୱନ ପଲ୍ଲୀ ଅଞ୍ଚଳରେ ପକ୍ଷୀ ପର୍ଯ୍ୟବେକ୍ଷଣ କରୁଥିବା ବ୍ୟକ୍ତିମାନଙ୍କ ମନରେ ଆହ୍ଲାଦ ଆଣିଦିଏ । ଫଳ ଓ ଭିନ୍ନ ଜାତୀୟ କୀଟ ଏମାନଙ୍କର ପ୍ରଧାନ ଆହାର । ଏମାନେ ମୁଖ୍ୟତଃ ବର, ଓସ୍ତ ଓ ନାଗଫେଣ ଗଛର ଫଳ ଖାଇଥାନ୍ତି । ହଳଦିବସନ୍ତ ବିଭିନ୍ନ କୀଟପତଙ୍ଗ ମଧ୍ୟ ଖାଇଥାଏ । ପାଲଧୁଆ (Erythrina) ଓ ଶିମୁଳି (Salmalia) ଗଛରେ ଫୁଲ ଫୁଟିଲେ ସେଥିରୁ ସେମାନେ ମଧୁ ଶୋଷି ଖାଆନ୍ତି । ହଳଦିବସନ୍ତର ନୀଡ଼ କପ୍ ପରି ଓ ବେଶ ଗଭୀର । ଏହା ସୁଦୃଢ଼ ଭାବେ ଗଛର ବକଳ ତନ୍ତୁରେ ବୁଣାହୋଇଥାଏ । ଏଥିରେ ଭଲଭାବେ ମାକଡ଼ସା ଜାଲର ପ୍ରଲେପ ଦିଆଯାଇ ଥିବାରୁ ନୀଡ଼ଦେଶ ନିରୁଜ ହୋଇଥାଏ । ଭୂମିଠାରୁ 4ରୁ 10 ମିଟର ଉଚ୍ଚରେ ଗହଳ ପତ୍ରଥିବା ଦୁଇଶାଖା ବିଶିଷ୍ଟ ବାହାରକୁ ବାହାରିଥିବା ଡାଳର ଦୁଇ ଅଗରୁ ହଳଦିବସନ୍ତର ନୀଡ଼ ଝୁଲୁଥାଏ । ନାବିକମାନଙ୍କର ଦୋଦୁଲ୍ୟମାନ ଶଯ୍ୟା ଯେପରି ଝୁଲି ରହିଥାଏ, ନୀଡ଼ ସେହିପରି ଡାଳର ଦୁଇ ଅଗରୁ ଝୁଲୁଥାଏ । ହଳଦିବସନ୍ତ ଥରକେ ଦୁଇ ବା ତିନୋଟି ଅଣ୍ଡାଦିଏ । ତା'ର ବର୍ଣ୍ଣ ପାଟଳଧଳା । ତା' ଉପରେ କଳା ବା ଲାଲ-ବାଦାମୀ ରଙ୍ଗର ଚିହ୍ନ ଥାଏ । କାଉ ଓ ଅନ୍ୟାନ୍ୟ ଲୁଣ୍ଠନକାରୀ ପକ୍ଷୀମାନଙ୍କଠାରୁ ରକ୍ଷାପାଇବା ପାଇଁ, ଯେଉଁ ଗଛରେ ଦାମ୍ଭିକ କଜ୍ଜ୍ୱଳପାତି ପକ୍ଷୀ ବସା କରିଥାଏ ସେଇ ଗଛରେ ଯାଇ ହଳଦୀବସନ୍ତ ନୀଡ଼ ରଚନାକରେ । ଆଉ ଜାତିଏ ହଳଦିବସନ୍ତ ଚଢ଼େଇ ସାଧାରଣ ହଳଦିବସନ୍ତ ସହିତ ସାଧାରଣତଃ ଦେଖିବାକୁ ମିଳେ । ଏହାକୁ ଇଂରାଜୀରେ **'ସ୍ୱର୍ଣ୍ଣାଭ ହଳଦି ବସନ୍ତ'** (Golden Oriole) କହନ୍ତି । ଏହାର ବୈଜ୍ଞାନିକ ନାମ 'ଓରିଓଲସ ଓରିଓଲସ' (Oriolus oriolus) । ଆକାର ସାଧାରଣ ହଳଦିବସନ୍ତର ଆକାର ପରି ଓ ତା' ପରି ଉଜ୍ଜ୍ୱଳ ହଳଦିବର୍ଣ୍ଣର; ମାତ୍ର ଏହାର ମୁଣ୍ଡ କଳା ପରିବର୍ତ୍ତେ ହଳଦିଆ । କେବଳ ଆଖି ଦେଇ ଯାଇଥିବା ଏକ ସ୍ପଷ୍ଟ କଳା ରେଖା ଥାଏ । ସ୍ୱର୍ଣ୍ଣାଭ ହଳଦି-ବସନ୍ତ ପ୍ରଚୁର ଭାବେ କାଶ୍ମୀର ଓ ହିମାଳୟ ପର୍ବତମାଳାର ନିମ୍ନାଞ୍ଚଳରେ ନୀଡ଼ ରଚନା କରିବାର ଦେଖାଯାଏ । ଭାରତର ଅନ୍ୟ ସମସ୍ତ ଅଞ୍ଚଳରେ ଏହା ଏକ ଆଗନ୍ତୁକ ପକ୍ଷୀ ।

କଜ୍ଜ୍ୱଳପାତି ପକ୍ଷୀ ଡାଇକ୍ରୁରିଡ଼ି (Dicruridae) ପକ୍ଷୀ ବଂଶ ଅନ୍ତର୍ଭୁକ୍ତ । ଏମାନେ କୃଶ ଓ ବୃକ୍ଷବାସୀ । ଆକାର ଗୋବରା ଚଢ଼େଇ ଓ ବଣି ଆକାରର ମଝାମଝି ହେବ । ବର୍ଣ୍ଣ ସାଧାରଣତଃ ଚକ୍‌ଚକ୍ କଳା । ଲାଞ୍ଜ ଲମ୍ବା ଏବଂ ଖୁବ୍ ବେଶି ଦିଫାଳିଆ, କେତେକ୍ର ଲାଞ୍ଜର ବାହାର ଆଡ଼କୁ ଥିବା ପରର ଅଗ୍ରଭାଗ ଉପରଆଡ଼କୁ ମୋଡ଼ି

ଚିତ୍ର ନଂ 65

ଲାଲ୍ ନିତମ୍ବ ବାଘୁଡ଼ି

( Redrumped Swallow )

ପୃଷ୍ଠା ନଂ 124 ଦେଖ





ଚିତ୍ର ନଂ 66
ଧଳା ଲଟୋରା
( Grey Shrike )
ପୃଷ୍ଠା·ନଂ 126 ଦେଖ

ଚିତ୍ର ନଂ 67
ହଳଦ ବସନ୍ତ
( Black stet headed Oriole )
ପୃଷ୍ଠା ନଂ 127 ଦେଖ





ଚିତ୍ର ନଂ 68

କଜଳପାତି

( Black Drongo )

ପୃଷ୍ଠା ନଂ 129 ଦେଖ

ଚିତ୍ର ନଂ 69

ବଣି ଚଢ଼େଇ

( Common Myna )

ପୃଷ୍ଠା ନଂ 131 ଦେଖ





ଚିତ୍ର ନଂ 70

ଘୂକାଳକା

( Pied Myna )

ପୃଷ୍ଠା ନଂ 132 ଦେଖ

ଚିତ୍ର ନଂ 71
କାଉ
( House Crow )
ପୃଷ୍ଠା ନଂ 133 ଦେଖ






ଚିତ୍ର ନଂ 72
କଟକେଇ
( Tree Pie )
ପୃଷ୍ଠା ନଂ 135 ଦେଖ

ଚିତ୍ର ନଂ 73

ଜଙ୍ଗଲ ସୁନ୍ଦରୀ

(Scarlet Minivet)

ପୃଷ୍ଠା ନଂ 136 ଦେଖ





ଚିତ୍ର ନଂ 74
ସୌଭାଗୀ ଚଢ଼େଇ
( Common Iora )
ପୃଷ୍ଠା ନଂ 138 ଦେଖ




ଚିତ୍ର ନଂ 75

କନକ ଚମ୍ପା

( Jerdon's Chloropsis )

ପୃଷ୍ଠା ନଂ 139 ଦେଖ



ଚିତ୍ର ନଂ 76
ଚୂଳିଆ ବା ଡାଳଟଙ୍କା
( Redwhiskered Bulbul )
ପୃଷ୍ଠା ନଂ 141 ଦେଖ



ଚିତ୍ର ନଂ 77

ଚମ୍ପା ବା ଗୋବର

( Redvented Bulbul )

ପୃଷ୍ଠା ନଂ 142 ଦେଖ




ଚତ୍ର ନଂ 86

ଶାମା

( Shama )

ପୃଷ୍ଠା ନଂ 155 ଦେଖ

ଚିତ୍ର ନଂ 78

ନାଚୁଣୀ ପକ୍ଷୀ

(Whitespotted Fantail Flycatcher )

ପୃଷ୍ଠା ନଂ 143 ଦେଖ





ଚିତ୍ର ନଂ 79

କନକ ଚଢ଼େଇ

( Paradise Flycatcher )

ପୃଷ୍ଠା ନଂ 145 ଦେଖ



ଚିତ୍ର ନଂ 80
ହଳଦ-ଆଖିଆ କୁଣ୍ଡାଖାଇ
( Yellow-eyed Babbler )
ପୃଷ୍ଠା ନଂ 147 ଦେଖ



ଚିତ୍ର ନଂ 81

ସାତଭଉଣୀ ବା କୁଣ୍ଡାଖାଇ

( Jungle Babbler )

ପୃଷ୍ଠା ନଂ 148 ଦେଖ

ଚତ୍ର ନଂ 82

ଚିଲ୍‌ଚଲ

( Common Babbler )

ପୃଷ୍ଠା ନଂ 149 ଦେଖ





ଚିତ୍ର ନଂ 83
ଛିଙ୍କ ଚଢ଼େଇ
( Ashy Wren-Warbler )
ପୃଷ୍ଠା ନଂ 151 ଦେଖ

ହୋଇଥାଏ । କେତେକ ଜାତ କଜ୍ଜ୍ୱଳପାତ ପକ୍ଷୀର ଲାଞ୍ଜର ବାହାର ଆଡ଼କୁ ଥିବା ପର ପଛ ଆଡ଼କୁ ଅନାବୃତ ଶରପର ପ୍ରସାରିତ ହୋଇଥାଏ ଓ ତାର ଶେଷାଂଶ ବାଡ଼ମିଣ୍ଟନ ର୍‌ୟାକେଟ ପର ଓହାରିଆ ହୋଇଯାଇଥାଏ । ଆମର ସବୁଠାରୁ ପରିଚିତ କଜଳପାତ (ବର୍ଣ୍ଣଚିତ୍ର 63)କୁ ଇଂରାଜୀରେ 'କଳା କଜଳପାତ' (Black Drungo) କହନ୍ତି । ଏହାର ବୈଜ୍ଞାନିକ ନାମ' 'ଡାଇକ୍ରୁରାସ ଏଡ୍‌ସିମିଲିସ' (Dicrurus adsimilis), ହିନ୍ଦି ନାମ—ଭୀମରାଜ, କୋତଓ୍ୱାଲ୍ । ଆମ ଓଡ଼ିଶାରେ ସ୍ଥାନ ବିଶେଷରେ କଜଳପାତ କଜ୍ଜ୍ୱଳପାତ, ଗୁହ୍ଲିଆ, କାଉଚିଆ ଓ ଠେଙ୍ଗା ନାମରେ ପରିଚିତ । ଏହା ଗୋଟିଏ ଲୀଣ ମାତ୍ର ଚଞ୍ଚଳ ପ୍ରକୃତିର ପକ୍ଷୀ । ଦେହ ଚକଚକିଆ ନିଖୁଣ କୃଷ୍ଣବର୍ଣ୍ଣ । ଆକାର ଗୋବରା ଚଢ଼େଇ ଆକାର ହେବ । ଲାଞ୍ଜ ଅତ୍ୟନ୍ତ ଦୁଫାଳିଆ । ଏହା ସାଧାରଣତଃ ଖୋଲା ଭୂମି ଓ କୃଷି ଭୂମି ଅଞ୍ଚଳରେ ବାଡ଼ ଖୁଣ୍ଟି, ବୁଦା ଉପରେ ବା ଟେଲିଗ୍ରାଫ ତାର ଉପରେ ବସି ଥିବାର ଦେଖାଯାଏ । ଏ ସମୟରେ ଭୂମି ଉପରେ କୌଣସି ଅସତର୍କ ଝିଣ୍ଟିକା ଉପରେ ନଜର ପଡ଼ିଲାମାତ୍ରେ ତଳକୁ ଉଡ଼ି ଝାମ୍ପ ମାରେ । ତଳେ ସେଇଠି ତାକୁ ଖାଏ, ନଚେତ୍ ଗୋଡ଼ରେ ଧରି ବସିବା ସ୍ଥାନକୁ ଫେରିଆସେ । ସେଠାରେ ତାର ଆଙ୍କୁଶୀ ପରି ତୀକ୍ଷଣ ଥଣ୍ଟରେ ଭାଙ୍ଗି ଗିଳେ । କଜଳପାତ ମଧ୍ୟ (ପ୍ରଜାପତିମାନଙ୍କର ଜାତ) କର୍କଟ ଓ ଝିଣ୍ଟିପୋକ ଉଡ଼ୁଥିଲାବେଳେ କନକ ଚଢ଼େଇ (Fly catcher) ପରି ତାଙ୍କ ପିଛୁ ଗୋଡ଼େଇ ଗୋଡ଼େଇ ଧରେ । ଅନେକ ସମୟରେ ଏମାନେ ଲକ୍ଷ୍ମୀହୀନ ଦସ୍ୟୁବୃତ୍ତିଦ୍ୱାରା ଜୀବନ ଯାପନ କରନ୍ତି । କଜଳପାତ ଅନ୍ୟ ପକ୍ଷୀ, ଏପରିକି ସମୟ ସମୟରେ ତା'ଠାରୁ ଆକାରରେ ବଡ଼ ହୋଇଥିବା ପକ୍ଷୀକୁ କ୍ଷିପ୍ରବେଗରେ ଓ ନିର୍ଭୟରେ-ବନ୍ଧା ଭାବେ ଗୋଡ଼ାଇ ଗୋଡାଇ ଘଉଡ଼ାଏ । ଫଳରେ ସେମାନେ ଆହାରକୁ ପକାଇ ଦେଇ ପଳାଇଯାନ୍ତି ଓ କଜଳପାତ ଗୁଣ୍ଡାଗିରିଦ୍ୱାରା ସେମାନଙ୍କୁ ସେମାନଙ୍କର ନ୍ୟାଯ୍ୟ ଖାଦ୍ୟରୁ ବଞ୍ଚିତକରି ନିଜ ଖାଦ୍ୟ ସଂଗ୍ରହକରେ । ଅନେକ ସମୟରେ କଜଳପାତ ଗୋ-ମହିଷାଦି ଗୃହପାଳିତ ତୃଣଭୋଜୀ ପଶୁ ଚରୁଥିଲାବେଳେ ତାଙ୍କ ପିଠି ଉପରେ ବସେ । ସେମାନେ ଚାଲିଗଲାବେଳେ ପତଙ୍ଗମାନେ ଏଣେ ତେଣେ ଡେଇଁ ବା ଉଡ଼ି ପଳାଇଯାନ୍ତି । କଜଳପାତ ହଠାତ୍ ପଶୁମାନଙ୍କର ପିଠି ଉପରୁ ଉଡ଼ି-ଯାଇ ସେମାନଙ୍କୁ ଧରିଥାଏ । ଜଙ୍ଗଲ ଓ ଘାସରେ ନିଆଁ ଲାଗିଲେ କଜଳପାତ ଚଢ଼େଇମାନେ ବହୁ ସଂଖ୍ୟାରେ ଜୁଟନ୍ତି ହୁଅନ୍ତି ଓ ପ୍ରାଣବିକଳରେ ପଳାଇ ଯାଉଥିବା ଶରଣାର୍ଥୀମାନଙ୍କୁ ଧରି ଖାଆନ୍ତି । ମୋଟାମୋଟି କହିବାକୁଗଲେ ସେମାନେ ବହୁ ସଂଖ୍ୟାରେ କ୍ଷତିକାରକ କୀଟପତଙ୍ଗମାନଙ୍କୁ ଖାଇଥାନ୍ତି ଓ କୃଷକର ଅନେକ ଉପକାର

ଅଛନ୍ତି । ଏହି ପକ୍ଷୀମାନଙ୍କର ଅନେକ ପ୍ରକାରର କର୍କଶ ଉଚ୍ଚ ବା ଭର୍ତ୍ସନା କଲାପରି ଡାକ ଅଛି । କେତେ କେତେବେଳେ ସେମାନଙ୍କର ଡାକ ଅନେକ ପରିମାଣରେ ସିକ୍ରା ବାଜ (Shikra Hawk)ର ଡାକପରି ଶୁଣାଯାଏ । ପ୍ରଜନନ ଋତୁରେ କଜଳପାତିମାନେ ବେଶି କଲରବ କରନ୍ତି । ଏମାନଙ୍କର ନୀଡ଼ କପ୍ ଆକାରର । ନୀଡ଼ର ତଳ ଅଗଭୀର । ଏହା ସୂକ୍ଷ୍ମ କାଠି ଓ ଘାସରେ ବୁଢ଼ିଆଣୀ ଜାଲଦ୍ୱାରା ଯୋଡ଼ା ହୋଇଥାଏ । ସାଧାରଣତଃ ଗୃଷ ଜମିରେ କୌଣସି ବଡ଼ ଗଛରେ ପିଣ୍ଡାକୁ ବାହାର ରହିଥିବା ଦୁଇ ଶାଖାବିଶିଷ୍ଟ ଡାଳରେ ବସା ତିଆରି ହୋଇଥାଏ । ପୁଣି ଯେଉଁଠି ଶାଖା ଦୁଇଟି ବେଶି ଆଗକୁ ବଢ଼ି ନଥାଏ, ସେପରି ଶାଖା ଦୁଇଟିର ମଧ୍ୟବର୍ତ୍ତୀ ସ୍ଥାନରେ ନୀଡ଼ ରଚିତ ହୋଇଥାଏ । ଏହାର କାରଣ ଏହି ଯେ ସେଠାରୁ ଚାରିଆଡ଼କୁ ନଜର ଦେଇହେବ । ଥରକେ କଜଳପାତି ତିନିଟିରୁ ପାଞ୍ଚଟି ଯାଏ ଅଣ୍ଡା ଦିଏ । ଅଣ୍ଡା ଧଳା ଓ ତା' ଉପରେ ବାଦାମୀ-ଲାଲ ରଙ୍ଗର ଛିଟା ପଡ଼ିଥାଏ । ନୀଡ଼କୁ ଜଗିଥିବା ସମୟରେ କଜଳପାତିମାନେ ଅତ୍ୟନ୍ତ ଦାମ୍ଭିକତା ପ୍ରଦର୍ଶନ କରନ୍ତି । ନୀଡ଼ ଥିବା ଗଛ ନିକଟକୁ ଆସିଲେ କଜଳପାତି ଚିଲ ଓ କାଉ ପ୍ରଭୃତି ବଡ଼ ବଡ଼ ପକ୍ଷୀଙ୍କୁ ମଧ୍ୟ ଆକ୍ରମଣକରି ଘଉଡ଼ାଇ ଦିଏ । ଏ ପ୍ରକାରେ ଆଶ୍ରୟ ମିଳୁଥିବାରୁ କପୋତ ଓ ହଳଦି-ବସନ୍ତପରି ଅନେକ ନରମ ସ୍ୱଭାବର ପକ୍ଷୀ ଅନେକ ସମୟରେ କଜଳପାତି ବସା କରିଥିବା ଗଛରେ ବସା ବାନ୍ଧନ୍ତି ।

ଆଉ ଦୁଇଟି ଜାତି କଜଳପାତି ଅଛନ୍ତି, ସେମାନଙ୍କ ବିଷୟ ଉଲ୍ଲେଖଯୋଗ୍ୟ । ସେମାନଙ୍କୁ ଇଂରାଜୀରେ **'ପାଉଁଶିଆ କଜଳପାତି'** (A shy drongo) ଓ **'ଧଳାପେଟିଆ କଜଳପାତି'** (white breasted drongo) କୁହାଯାଏ । ପ୍ରଥମଟିର ବୈଜ୍ଞାନିକ ନାମ 'ଡାଇକ୍ରୁରସ' 'ଲିଉକୋଫେଇଆସ' (Dicrurus leucophaeus) ଓ ଦ୍ୱିତୀୟଟିର ବୈଜ୍ଞାନିକ ନାମ 'ଡାଇକ୍ରୁରାସ କେରୁଲେସେନସ' (Dicrurus caerulescens) । ପାଉଁଶିଆ କଜଳପାତିର ବର୍ଣ୍ଣ ଶିଲଟପରି ପାଉଁଶିଆ କଳା । ଏହାର ଆଖି ପଦ୍ମରାଗ ମଣି (Ruby) ପରି ଲୋହିତ । ଖୋଲା ଜାଗା ପରିବର୍ତ୍ତେ ଏହାକୁ ସାଧାରଣତଃ ଜଙ୍ଗଲରେ ଦେଖିବାକୁ ମିଳେ । ଧଳାପେଟିଆ କଜଳପାତି ଆକାରରେ ଅପେକ୍ଷାକୃତ କ୍ଷୁଦ୍ର । ଏହାର ପିଠିପାଖର ବର୍ଣ୍ଣ ଉଜ୍ଜ୍ୱଳ ନୀଳ-ଧୂସର । ପେଟର ବର୍ଣ୍ଣ ଧଳା । ଏହା ମଧ୍ୟ ପ୍ରତିବର୍ଷ ପତ୍ରଝଡ଼ା ଦେଉଥିବା ଜଙ୍ଗଲା-ଞ୍ଚଳରେ ବିଶେଷ କରି ବାଉଁଶ ଜଙ୍ଗଲ ମିଶି ରହିଥିବା ଜଙ୍ଗଲାଞ୍ଚଳରେ ଦେଖିବାକୁ ମିଳେ ।

ଗୋଲ୍‌ପି ମଇନା (Starling) ଓ ବଣି (Myna) ଷ୍ଟୁରନିଡ୍ (Sturnidae) ବଂଶ ଅନ୍ତର୍ଭୁକ୍ତ । ଏହି ବଂଶର ସାଧାରଣ ପକ୍ଷୀ ହେଲି ବଣିଚଢ଼େଇ । ଏହାକୁ ରାଜବଣି ଓ ରାଜ ମଇନା ବୋଲି ମଧ୍ୟ କହନ୍ତି । ଇଂରାଜି ନାମ 'ସାଧାରଣ ମଇନା' (Common Myna) (ବର୍ଣ୍ଣଚିତ୍ର 69) । ବୈଜ୍ଞାନିକ ନାମ 'ଏକ୍ରିଡ଼ୋଥେରସ ଟ୍ରିସ୍‌ଟିସ' (Acridotheres tristis) । ହିନ୍ଦି ଦେଶୀ ମୈନା । ଏହାର ଆକାର ଗୋବରା ଚଢ଼େଇ ଓ ପାରା ମଝାମଝି ହେବ । ଲମ୍ବ ପ୍ରାୟ 23 ସେ. ମି. । ବଣି ଆମର ଏକ ଅତି ପରିଚିତ ପକ୍ଷୀ । ଦେଖିବାକୁ ଫଟଫାଟ, ଡଉଲ-ଡାଉଲ, ତାଜା ଚଢ଼େଇଟିଏ । ରଙ୍ଗ ବାଦାମୀ, ମୁଣ୍ଡ କଳା; ଗୋଡ଼, ଥଣ୍ଟ ଓ ଆଖି ଚାରିପଟେ ଥିବା ନଗ୍ନ ଚର୍ମ ଉଜ୍ଜ୍ୱଳ ହଳଦୀ ବର୍ଣ୍ଣ । ଉଡ଼ିଲାବେଳେ ପକ୍ଷରେ ଧଳା ଚିହ୍ନ ସ୍ପଷ୍ଟ ଦେଖାଯାଏ । ଘରଚଟିଆ, କାଉ ଓ ପାରା ପରି ବଣି ଚଢ଼େଇ ଜନବସତି ମଧ୍ୟରେ ନିର୍ଭୟରେ ବାସ କରେ । ଜନାକୀର୍ଣ୍ଣ ଧୂମ୍‌ଧାମ ନଗର ଅବା ପଲ୍ଲୀ ଅଞ୍ଚଳର ଭିହବାଡ଼ି ହେଉ ସେଥିରେ ତା'ର କିଛି ଯାଏଆସେ ନାହିଁ । ଏହା ସ୍ୱଭାବତଃ ସାମାଜିକ ଓ ପୂରାପୂରି ସର୍ବଭକ୍ଷୀ । ମନୁଷ୍ୟ ସହିତ ବାସକରିବା ପାଇଁ ଏ ଦୁଇଟି ଗୁଣ ଅତ୍ୟନ୍ତ ଉପଯୋଗୀ । ସାଧାରଣତଃ ଏକ ବା ଦୁଇ ଯୋଡ଼ା ବଣି ଗୋଟିଏ ଘର ବା ଘରଭିହକୁ ନିଜର ବୋଲି ଗ୍ରହଣ କରି ନେଇ ଅନ୍ୟ ଅନାହୂତ ପ୍ରବେଶକାରୀ ବଣିମାନଙ୍କ ସହିତ ଘମାଘୋଟ ଲଢ଼େଇ କରନ୍ତି; ମାତ୍ର ବଗିଚାରେ ସଦ୍ୟ ପାଣି ଦିଆଯାଇଥିଲେ ଜିଆଖାଇବା ପାଇଁ ବର୍ଷାସିକ୍ତ ମାଟିରୁ ଝିଡ଼ପୋକ ବାହାରୁଥିବା ସମୟରେ ଅଥବା ବର ଓସ୍ତ ଗଛରେ ଫଳ ଧରିଥିବା ବେଳେ ସେମାନେ ବହୁ ସଂଖ୍ୟାରେ ମେଳ ବାନ୍ଧି ଖାଦ୍ୟ ସଂଗ୍ରହ କରନ୍ତି । ବଣିମାନେ ସାଧାରଣତଃ ପୋକଜୋକ ଖାଇବା ପାଇଁ ଚରୁଥିବା ଗୋମହିଷାଦି ପ୍ରାଣୀଙ୍କ ପିଛା ନେଇଥାନ୍ତି ଓ ଜଙ୍ଗଲରେ ଗୃଷ ହେଲାବେଳେ ପଛେ ପଛେ ଯାନ୍ତି । ଗୃହପାଳିତ ପଶୁ ଚରୁ ଚରୁ ଗଲାବେଳେ ଝିଲ୍ଲୀ କୀଟ ଓ ଝିଣ୍ଟିକା ଏଣେତେଣେ ଡେଇଁ ପଳାନ୍ତି ଓ ବଣି ସେମାନଙ୍କୁ ଧରି ଖାଆନ୍ତି । ସେ ସମୟରେ ବଣି ଗାଈ, ବଳଦ କଡ଼େ କଡ଼େ ବାହ୍ୟାଡ଼ମ୍ବର ସହକାରେ ଲୁଚି ଛପି କେତେବେଳେ କଡ଼ ପଟିଆ ଡେଇଁ କେତେବେଳେ ଉପର ଆଡ଼କୁ ଖଣ୍ଡି ଉଡ଼ାଦେଇ ପଳାୟମାନ ଶିକାରକୁ ଧରିବାର ଦୃଶ୍ୟ ସମସ୍ତେ ଅବଶ୍ୟ ଦେଖିଥିବେ । ସେହିପରି ଜଙ୍ଗଲ ବୁଲାହେଲାବେଳେ ପୋକ ଜୋକ, କୋଟଲି ଶୂକ (grub) ଆଦି ବାହାରି ପଡ଼ନ୍ତି ଓ ବଣି ସେ ସବୁକୁ ସଂଗ୍ରହକରି ଆହାର କରେ । ବଣିମାନେ ଦଳବାନ୍ଧି ବୃକ୍ଷଶାଖାରେ ଶୁଆ ଓ କାଉମାନଙ୍କ ସହିତ ରାତ୍ରି ଯାପନ କରନ୍ତି । ବଣି ଉଚ୍ଚସ୍ୱରରେ ନାନାଦି କିସମର ତୀକ୍ଷ୍ଣ କିଚିରିମିଚିରି ଶବ୍ଦ କରେ ।

ଗୋଟିଏ ପରିଚିତ ଗାଳିକରିବାପରି ଶବ୍ଦ ହେଲା 'ଚ୍ରିଡ଼ିଓ-ଚ୍ରିଡ଼ିଓ-ଚ୍ରିଡ଼ିଓ' । ମଧ୍ୟାହ୍ନ ଉତ୍ତାପ ସମୟରେ ଛାଇ ଜାଗାରେ ବିଶ୍ରାମ ନେଉଥିବା ସମୟରେ ଅଣ୍ଡିରା ବଣି ଦେହର ପରକୁ ରୁକ୍ଷଭାବେ ଫୁଲାଇ ହାସ୍ୟକରଭାବେ ମାଈବଣି ଆଡ଼କୁ ମୁଣ୍ଡ ଉପର ତଳ କରି 'କିକ-କିକ୍-କିକ୍, କୋକ୍-କୋକ୍-କୋକ୍-କୋକ୍, ଚୂର୍ ରି-ଚୂର୍ ର୍' ଇତ୍ୟାଦି ଶବ୍ଦ-କରେ । ଗଛର ଗର୍ତ୍ତ, ବ୍ୟବହୃତ ଓ ଅବ୍ୟବହୃତ ଘର କାନ୍ଥର ଗର୍ତ୍ତ ଓ ଛାତରେ ବଣି, କୁଟା, କାଗଜ ଟୁକୁରା ଓ ଅନ୍ୟାନ୍ୟ ଅଳିଆ ଭର୍ତ୍ତିକରି ନିଡ଼ ରଚନାକରେ । ମାଈ ବଣି ଥରକେ ୪।୫ଟି ଅଣ୍ଡା ଦିଏ । ଅଣ୍ଡା ଦେଖିବାକୁ ସୁନ୍ଦର ଚକ୍ ଚକ୍ ନୀଳ । ତା ଉପରେ କୌଣସି ଚିହ୍ନ ନଥାଏ ।

ରାଜବଣି ପରି ଆଉ କାଉଁଏ ସାମାନ୍ୟ ଛୋଟ ବଣି ଅଛି, ତାକୁ **ଦେଶୀ ବଣି** ବୋଲି କହନ୍ତି । ଏହାର ଇଂରାଜି ନାମ 'କୂଲିବଣି' (Bank Myna) । ବୈଜ୍ଞାନିକ ନାମ 'ଏକ୍ରିଡ଼ୋଥେରିସ ଜିନଜିନିଆନାସ' (Acridotheres ginginianus) । ଏହି ପକ୍ଷୀ ପାକିସ୍ଥାନ ଏବଂ ଭାରତର ଉତ୍ତର ଓ ଉତ୍ତର ପଶ୍ଚିମ ଅଞ୍ଚଳ ଯଥା ଗୁଜୁରାଟ ଓ ରାଜସ୍ଥାନ ଇତ୍ୟାଦିରେ ଏକ ସାଧାରଣ ପକ୍ଷୀ । ମୁଖ୍ୟତଃ ଏହା ରେଲଷ୍ଟେସନ-ମାନଙ୍କରେ ଦେଖାଯାଏ । ଏହାର ବର୍ଣ୍ଣ ବାଦାମୀ ପରିବର୍ତ୍ତେ ଫିକା ନୀଳ ଧୂସର । ଆଖି ଚାରିପଟେ ଥିବା ପରହୀନ ଚମଡ଼ା ଅଂଶର ବର୍ଣ୍ଣ ହଳଦିଆ ନ ହୋଇ ଇଟାପରି ଲାଲ । ଆଉ ଗୋଟିଏ ସାଧାରଣ ମଇନା ହେଲା ଘୁଙ୍କାଳିକା (ବର୍ଣ୍ଣ ଚିତ୍ର 70) । ବିଶେଷ କରି ଉତ୍ତର ଓ ପୂର୍ବ ଭାରତରେ ଏହା ଏକ ସାଧାରଣ ପକ୍ଷୀ । ଏହାକୁ ଇଂରାଜିରେ 'ଚିତ୍ର ବିଚିତ୍ର ମଇନା ପକ୍ଷୀ' (Pied Myna) ବୋଲି କହନ୍ତି । ବୈଜ୍ଞାନିକ ନାମ 'ଷ୍ଟୁରନାସ କନ୍ଟ୍ରା' (Sturnus Contra) । ହିନ୍ଦି ନାମ ଅବଲକ୍ ମଇନା, ସିରୋଲି ମଇନା । ଏହା ରାଜବଣିଠାରୁ ଅଳ୍ପ ଛୋଟ । ଦେଖିବାକୁ ପରିଚ୍ଛନ୍ନ, ବର୍ଣ୍ଣ ଧଳା ଓ କଳା । ଆଖି ଚାରିପଟେ ଥିବା ପରହୀନ ଅନାବୃତ ଚମଡ଼ା କମଳା ପରି ହଳଦିଆ । ଥଣ୍ଟ ଗାଢ଼ ବର୍ଣ୍ଣ, କମଳା ପରି ଗାଢ଼ ହଳଦିଆ । ଏମାନେ ଦଳ ଦଳ ହୋଇ ଗ୍ରାମ ଓ ଚାଷ ଜମିମାନଙ୍କରେ ଦେଖାଯାନ୍ତି । ହିଡ଼ା ଓ ବଗିଚାରେ ବିଶେଷ କରି ପାଣି ଦିଆ ହୋଇଥିବା ବଗିଚାକୁ ଆସି ଜିଆ ଖୋଳି ଓ ଝିଣ୍ଟିକା ଧରି ଖାନ୍ତି । ଆହୁରି ମଧ୍ୟ ବଡ଼ ବଡ଼ ପତ୍ରଥିବା ଗଛତଳେ ବିଶ୍ରାମ ନିଅନ୍ତି । ହେଲେ ହେଁ ଏମାନେ ରାଜବଣି ପରି ମନୁଷ୍ୟ ଉପରେ ସେତେ ନିର୍ଭରଶୀଳ ନୁହନ୍ତି ଓ ବାସଗୃହରେ ନୀଡ଼ ରଚନା କରନ୍ତିନାହିଁ । ରାଜବଣି ପରି ଘୁଙ୍କାଳିକା ସର୍ବଭୁକ୍ ନୁହେଁ ଏବଂ ରାଜବଣିଠାରୁ ଅଧିକ କୀଟ ଖାନ୍ତି ଓ ଫଳ ଖାଏ । ଏମାନେ ବଣି ବଣ୍ଡୁଲମାନଙ୍କ ସହିତ ଦଳବାନ୍ଧି

ସହର ଓ ନଗର ବାହାରେ ମଇଳା ଗଦାମାନଙ୍କରେ ଖାଦ୍ୟ ସଂଗ୍ରହ କରନ୍ତି । ଗାଁ ପୋଖରୀ କୂଳରେ ଓଦାମାଟିରେ ହୋଇଥିବା ଘାସକୁ ଗାଈ ଚରିବା ସମୟରେ ଘୂକାଳିକା ତାଙ୍କ ପିଛାନେଇ ପତଙ୍ଗ ଖାଇଥାନ୍ତି । ଏମାନେ ଉଚ୍ଚ ସ୍ୱରରେ ନାନାବିଧ ପ୍ରକାର କଳରବ କରନ୍ତି । ଏହି ଶବ୍ଦରୁ କେତୋଟି ଦୂଷି (Black bellied Finch-Lark) (ଦେଖ) ଚଢ଼େଇର ଉଡ଼ିଲାବେଳର ଗୀତରୁ ଏଠୁଟିକେ ସେଠୁଟିକେ ଅଣାଯାଇଥିବା ପରି ମନେହୁଏ । ଘୂକାଳିକାର ନୀଡ଼ ଅଧିକାଂଶ ବଣିମାନଙ୍କର ନୀଡ଼ଠାରୁ ବହୁତ ଭିନ୍ନ । ଏହା ବେଶ୍ ବଡ଼, ଗୋଲାକାର ଓ ଅସୁନ୍ଦର । କାଠି, ପତ୍ର, ଘାସ ଓ ଅନ୍ୟାନ୍ୟ ମଇଳା ଜିନିଷରେ ଏହା ତିଆରି ହୋଇଥାଏ । ଗ୍ରାମ ବା ଖେତ ନିକଟରେ ଥିବା ଆମ୍ବ, ଶିଶୁ ବା ସେହିପରି ଅନ୍ୟ କୌଣସି ଗଛର ବାହାରି ପଡ଼ିଥିବା ଡାଳରେ ବସା ନିର୍ମିତ ହୋଇଥାଏ । ଗୋଟିଏ ଗୋଟିଏ ଗଛରେ ତିନି-ଚାରୋଟି ବସା ଥାଏ । ଘୂକାଳିକା ଥରକେ ଚାରି ପାଞ୍ଚଟି ଅଣ୍ଡା ଦିଏ । ଅଣ୍ଡା ଦେଖିବାକୁ ଚକଚକିଆ ନୀଳ, ତା' ଉପରେ କୌଣସି ଚିହ୍ନ ପଡ଼ି ନଥାଏ ।

**ତଲେର ପକ୍ଷୀ**—ଏହାକୁ ଇଂରାଜୀରେ 'ଗୋଲାପି ଯାଜକ' (Rosy Pastor) ବା 'ଗୋଲାପି ମଇନା' (Rose coloured starling) ବୋଲି କୁହାଯାଏ । ବୈଜ୍ଞାନିକ ନାମ, 'ଷ୍ଟୁରନାସ ରୋଜିଆସ' (Sturnus roseus) । ଏହା ଗୋଟିଏ ମଇନା ହେଲେ ମଧ୍ୟ ଏହାକୁ ଘୂକାଳିକା ବୋଲି ଭ୍ରମ ହେବାର କାରଣ ନାହିଁ । ଶୀତ ଋତୁରେ ଏମାନେ ଭାରତକୁ ବହୁ ସଂଖ୍ୟାରେ ଦଳ ଦଳ ହୋଇ ପରିବ୍ରଜନରେ ଆସନ୍ତି । ଏହାର ବର୍ଣ୍ଣ କଳା-ଗୋଲାପି-ପାଟଳ (କଳା-ଧଳା ନୁହେଁ) । ଏହାର ଆକାର ଘୂକାଳିକାର ଆକାର ହେବ । ଏ ଦୁଇ ଜାତି ପକ୍ଷୀ ଏକ ପ୍ରଜାତି (genus) ଓ ଏକ ବଂଶ (Family)ର ହୋଇଥିବାରୁ ଏମାନଙ୍କ ମଧ୍ୟରେ ବହୁତ ସାମଞ୍ଜସ୍ୟ ଦେଖାଯାଏ । ତଲେର ପକ୍ଷୀ ଦଳ ଦଳ ହୋଇ ପାଚିଥିବା ଜହ୍ନା (Jowar) କ୍ଷେତ ଏବଂ ପାଳଧୂଆ ଓ ଶିମୁଳି ଗଛର ବଡ଼ ଲାଲ ଲାଲ ଫୁଲ ଉପରେ ବସିଥିବାର ଦେଖାଯାନ୍ତି ।

କାଉ କରଭିଡ଼ (Corvidae) ବଂଶ ଅନ୍ତର୍ଭୁକ୍ତ । ଗ୍ରାମରେ, ସହରରେ ସର୍ବତ୍ର **କାଉ** ବା ପାତିକାଉର ଦୁରାଗ୍ରହ ସହିତ ସମସ୍ତେ ଅଭ୍ୟସ୍ତ । ଇଂରାଜୀରେ ଏହାକୁ 'ଘର କାଉ' (House crow) (ବର୍ଣ୍ଣଚିତ୍ର 71) ବୋଲି କହନ୍ତି । ବୈଜ୍ଞାନିକ ନାମ 'କରଭସ ସ୍ପ୍ଲେନ୍‌ଡେନ୍‌ସ' (Corvus Splendens) । ଅନ୍ୟ ନାମ କୋଓ୍ୱା, ଦେଶୀ କୋଓ୍ୱାର ବେକ ପାଉଁଶିଆ । ଡାମରାକାଉ (Jungle crow) ନିପଟ୍ଟ କଳା ଓ ପାତିକାଉଠାରୁ ଅଳ୍ପ ବଡ଼ । ଭାରତରେ ଯେତେ ପକ୍ଷୀ ଦେଖାଯାନ୍ତି, ସେମାନଙ୍କ

ମଧ୍ୟରେ ପାତିକାଉ ସବୁଠାରୁ ବେଶି ସାଧାରଣ ଓ ପରିଚିତ । ଏହା ମୁଖ୍ୟତଃ 'ସହର-ବାସୀ, ନିଶ୍ଚିତ ଭାବେ ମନୁଷ୍ୟ ସହିତ ସହଭୋଜୀ (Commensal) ଓ ମନୁଷ୍ୟ ସମାଜର ଅଙ୍ଗୀଭୂତ କହିଲେ ଚଳେ । ଏହା ଚତୁର ଓ ଦାମ୍ଭିକ । ତା' ସାଙ୍ଗକୁ ସ୍ଥାଠାରେ ବିପଦ ବାରିବା ଓ ବିପଦକୁ ଆଡ଼େଇବାପାଇଁ ଅଦ୍ଭୁତ ସ୍ୱାଭାବିକ ପ୍ରବୃତ୍ତି ଦେଖିବାକୁ ମିଳେ । ଫଳରେ ଏହା ବିଜୟୋଲ୍ଲାସରେ ଅପରାଧ ଓ ଦୁଷ୍କର୍ମ କରି ଚାଲିଥାଏ । ଖାଦ୍ୟ ପାଇଁ ସେ ସବୁପ୍ରକାର ଦୁଷ୍କର୍ମ କରିପାରେ । ତୁମ ଉପସ୍ଥିତିରେ, ତୁମ ଆଖି ଆଗରେ ସେ ପ୍ଲେଟରୁ ଅଣ୍ଡା ବା ପାଉଁରୁଟି ନେଇ ପଳାଇଯିବ, ମଲା ମୂଷାଟାଏ ବା ରୋଷାଇ ଘର ଭିତରୁ ଟୁକୁରା ଟୁକୁରା ଯେତେ ଚାଲିଯିବ, ମାଛ ବିକାଳି ହୁରୁଡ଼ାଉ ହୁରୁଡ଼ାଉ ତା' ବାଉଁଶିଆରୁ ମାଛଟାଏ ନେଇ ଚାଲିଯିବ । କାଉ ମ୍ୟୁନିସିପାଲିଟିର ମଇଳା ସଫାକାରୀ ପକ୍ଷୀରୂପେ କାର୍ଯ୍ୟ କରୁଥିବାରୁ ତା'ର ଏହି ସବୁ ଚୌର୍ଯ୍ୟ-ପ୍ରବୃତ୍ତି-ଜନିତ ଅପରାଧ କେତେକ ପରିମାଣରେ ଊଣା ବୋଲି ଧରାଯାଏ । ସେ ଯାହାହେଉ, କାଉ ଉଦ୍ୟାନବାସୀ ନିରୀହ ଛୋଟ ବିଚିତ୍ର ପକ୍ଷୀ ଓ ଗାୟକ ପକ୍ଷୀମାନଙ୍କ ଉପରେ ଅବିରତ ଚଢ଼ାଉ କରି ସେମାନଙ୍କୁ ଲୁଣ୍ଠନ କରେ । ଏଣୁ ଉଦ୍ୟାନମାନଙ୍କରେ କାଉ ଗୋଟିଏ ଅବାଞ୍ଛିତ ପକ୍ଷୀ । ତା' ଛଡ଼ା ବକପକ୍ଷୀଶାଳା (heronry) ମାନଙ୍କରେ କାଉ ବଡ଼ ଉତ୍ପାତ କରନ୍ତି । ଦଳ ଦଳ ହୋଇ କାଉ ପକ୍ଷୀଶାଳା ଚାରିପଟେ ଲାଗିରହିଥାନ୍ତି । ଦର୍ଶକମାନଙ୍କଦ୍ୱାରା ହୁରୁଡ଼ି ବଗ ନୀଡ଼ ଛାଡ଼ି ଚାଲିଗଲେ କାଉ ଝାମ୍ପି ଅଣ୍ଡା ନେଇ ପଳାଇଯାନ୍ତି, ନଚେତ ଶାବକଗୁଡ଼ିକୁ ନିର୍ଦ୍ଦୟଭାବେ ମାରିପକାନ୍ତି । ପଙ୍ଗପାଳ ଓ ଅନ୍ୟ ପତଙ୍ଗ ଦଳ ଦଳ ହୋଇ ଉଡ଼ୁଥିବାବେଳେ କାଉମାନେ ସେମାନଙ୍କୁ ମାରି ଖାଆନ୍ତି । ହେଲେହେଁ, ସେମାନେ ପାଚିଲା ଶସ୍ୟ କ୍ଷେତରେ ମଧ୍ୟ ଚଢ଼ାଉ କରନ୍ତି । ସେମାନେ ଗହମ, ମକ୍କା ଆଦି ଶସ୍ୟ ଓ ଫଳ ବର୍ଗିଚାର ବେଶି କ୍ଷତି କରନ୍ତି । ଏଣୁ ଅର୍ଥନୈତିକ ଦୃଷ୍ଟିକୋଣରୁ ସେମାନେ ଉପକାରୀ କି ଅପକାରୀ ସେ ବିଷୟରେ ସନ୍ଦେହ ରହିଛି । ପାତିକାଉ ସାଧାରଣତଃ ଭୂମିଠାରୁ ତିନିରୁ ଆଠ ମିଟର ଉଚ୍ଚରେ ବୃକ୍ଷ ଶାଖାରେ ନୀଡ଼ ରଚନାକରେ । ଏହା ଛୋଟ ମଞ୍ଚାପରି ଓ ଅସୁନ୍ଦର । ମଞ୍ଚାର ମଝି ଅଂଶ ଖାଲୁଆ ହୋଇଥାଏ । ସେଥିରେ ନଡ଼ିଆ କତା, ସୂତା, ଦଉଡ଼ି ଇତ୍ୟାଦି ଦିଆଥାଏ । କାଉ ଥରକେ ଚାରି ପାଞ୍ଚଟି ଅଣ୍ଡା ଦିଏ । ଅଣ୍ଡା ଦେଖିବାକୁ ଫିକା ନୀଳ-ସବୁଜ । ତା ଉପରେ ବାଦାମୀ ରଙ୍ଗର ଛିଟା ଓ ଗାର ପଡ଼ିଥାଏ । ସେମାନଙ୍କର ଅଣ୍ଡା ଅବିକଳ କୋଇଲି ଅଣ୍ଡା ପରି ଦେଖାଯାଏ । କୋଇଲି ସାଧାରଣତଃ କାଉ ବସାରେ ଆସି ଅଣ୍ଡା ଦେଇ ଚାଲିଯାଏ ।

**ଡାମରା କାଉ**—ଏହାକୁ ପବଂଢଆ କାଉ ମଧ୍ୟ କହନ୍ତି । ଇଂରାଜୀ ନାମ 'ଜଙ୍ଗଲିଆ କାଉ' (Jungli crow), ବୈଜ୍ଞାନିକ ନାମ 'କରଭସ ମାକ୍ରୋରହିଙ୍କସ' (corvus microrhynchos) । ଏହା ପାତି କାଉଠାରୁ ଆକାରରେ ବଡ଼ । ବର୍ଣ୍ଣ ଚକଚକିଆ ନିପଟ କଳା । ଥଣ୍ଟ ପାତିକାଉର ଥଣ୍ଟଠାରୁ ଅଧିକ ମଜବୁତ୍ । ଏହାର ରାବ ପାତିକାଉର ରାବଠାରୁ ଅଧିକ ଗମ୍ଭୀର ଓ କର୍କଶ । ଏହା ସାଧାରଣତଃ ପଲ୍ଲୀ ଓ ସହରଠାରୁ ଦୂରରେ ବାସକରେ; ମାତ୍ର ଅନେକ ସମୟରେ ଆସି ମନୁଷ୍ୟ ବସତି ଉପକଣ୍ଠରେ ଖାଦ୍ୟ ସଂଗ୍ରହକରେ । ଉପାନ୍ତ ପଲ୍ଲୀଗ୍ରାମ ଓ ବାହାରେ ଜମା ହେଉଥିବା ଅସ୍ଥିରା ଖାଇବା ପାଇଁ ସେମାନେ ଆସିଥାନ୍ତି ।

କାଉର ଏକ ମାର୍ଜିତ ପ୍ରୀତିକର ଜ୍ଞାତି ହେଲା **କରକରା** (ବର୍ଣ୍ଣ ଚିତ୍ର 72) । ଏହାକୁ କେରକେରା ଚଢ଼େଇ ଓ ହାଣ୍ଡିଚଞ୍ଚା ବୋଲି ମଧ୍ୟ କହନ୍ତି । ଇଂରାଜୀ ନାମ 'ଗଛ ପିଠା' (Tree Pie) । ବୈଜ୍ଞାନିକ ନାମ 'ଡେଣ୍ଡ୍ରୋସିଟା ଭାଗାବୁଣ୍ଡା' (Dendro-citta vagabunda) । ହିନ୍ଦି ନାମ ମହାଲଟ୍ । ଏହାର ଆକାର ପ୍ରାୟ ବଣି ଚଢ଼େଇର ଆକାର ହେବ; ମାତ୍ର ଏହାର ଲାଞ୍ଜ ଲମ୍ବା ଓ 30 ସେ. ମି. ଯାଏ ଲମ୍ବ । କର-କରାର ବର୍ଣ୍ଣ ବାଦାମୀ, ମୁଣ୍ଡ ଓ ବେକ ଧୂଆଁଳିଆ । ଲାଞ୍ଜ ସବୁଠାରୁ ଲମ୍ବ, ପରର ଅଗ୍ରାଂଶ କଳା । ପକ୍ଷର ପରମୂଳ ଅଂଶ ଧୂସର । ଉଡ଼ିଲାବେଳେ ଏସବୁ ସ୍ପଷ୍ଟ ଦେଖାଯାଏ । ଅଳ୍ପ ଜଙ୍ଗଲିଆ ଅଞ୍ଚଳ ଓ ଖୋଲା ଜଙ୍ଗଲରେ କେରକେରା ଦେଖିବାକୁ ମିଳେ । ଏହା ଏକ ସାମାଜିକ ପକ୍ଷୀ । ଗୋଟିଏ ପରିବାର ଏକାଠି ମିଶି ବୁଲିଚାଲି କରନ୍ତି ଓ ନିଜନିଜ ଭିତରେ ବାରମ୍ବାରକର ଉଚ୍ଚ କର୍କଶ ସ୍ୱରରେ 'କଉ-କାଇ-କାଇ-କାଇ-କାଇ' ଇତ୍ୟାଦି ରାବ କରି କଥାଭାଷା ହୁଅନ୍ତି । 'ମୋ ନେତା ଯୁଆଡ଼େ ମୁଁ ସିଆଡ଼େ' (Follow-my-leader) ନୀତି ଅନୁସାରେ ଜଣେ ଅନ୍ୟ ଜଣକ ପଛେ ପଛେ ଏକ ଡାଳରୁ ଅନ୍ୟ ଡାଳକୁ କ୍ଷିପ୍ର ତରଙ୍ଗାୟିତ ଗତିରେ ଉଡ଼ିଯିବାର ଦେଖିବାକୁ ମିଳେ । ଉଡ଼ିଲାବେଳେ ଏମାନେ କିଛି ସମୟ ପ୍ରବଳ ବେଗରେ ପକ୍ଷ ଆନ୍ଦୋଳିତ କରନ୍ତି, ତା'ପରେ ପକ୍ଷ ଓ ପୁଚ୍ଛ ବିସ୍ତାରକରି ଧୀରେ ଧୀରେ ପବନରେ ଭାସିଯାନ୍ତି । କର୍କଶ କିଚିରି ମିଚିରି ସାଙ୍ଗକୁ ସେମାନେ ନାନା ପ୍ରକାର ଶ୍ରୁତିମଧୁର ରାବ ମଧ୍ୟ କରନ୍ତି । ସାଧାରଣତଃ ଶୁଣିବାକୁ ମିଳୁଥିବା ପୁନଃ ପୁନଃ ଉଚ୍ଚାରିତ କାକଳି ହେଲା 'ବବ୍-ଓ-ଲିଙ୍କ୍' ବା 'କୋକିଲ' । ପ୍ରଜନନ ଋତୁରେ ଅଣ୍ଡିରା ପକ୍ଷୀ ମାଈ ପକ୍ଷୀକୁ ଆକୃଷ୍ଟ କରିବାପାଇଁ ହାସ୍ୟ ଉଦ୍ରେକକାରୀ ଭଙ୍ଗୀରେ ଲାଞ୍ଜକୁ ନୁଆଁଇ, ପିଠିକୁ ଧନୁପରି ବଙ୍କାଇ, ପାତିହଂସ ପାଣିରେ ଥଣ୍ଟ ବୁଡ଼ାଇଲା ପରି ଠାଣିରେ ମୁଣ୍ଡ ଦୋହଲାଇ ଏଭଳି ଶବ୍ଦ କରିଥାଏ । କରକରା

ପକ୍ଷୀ ପେଟ ଭରି ଫଳ ଖାଇବା ପାଇଁ ଅନ୍ୟ ଫଳଭୋଜୀ ପକ୍ଷୀମାନଙ୍କ ସହିତ ବର ଓ ଓସ୍ତ ଗଛରେ ଆସି ପଡ଼ିଥାନ୍ତି । ସେମାନଙ୍କର ଜ୍ଞାତି କାକମାନଙ୍କ ପରି କେରକେରା ସର୍ବଭୁକ୍ ଓ ସଢ଼ାମାଂସ ଖାଇବାର ମଧ୍ୟ ଦେଖାଯାଏ । ଫଳ ଓ କୋଳି ବ୍ୟତୀତ ସେମାନଙ୍କର ସାଧାରଣ ପ୍ରଧାନ ଖାଦ୍ୟ ହେଲା କୀଟପତଙ୍ଗ, ସଁବାଳୁଆ, ଏଣ୍ଡୁଅ, ପକ୍ଷି-ଶାବକ ଏବଂ ଛୋଟ ମୂଷା । ସେମାନେ ନିୟମିତ ଭାବେ ଅନ୍ୟ ପକ୍ଷୀମାନଙ୍କର ନୀଡ଼ ଚଢ଼ାଉ କରନ୍ତି ଏବଂ ବିଶେଷଭାବେ କ୍ଷୁଦ୍ରତର ପକ୍ଷୀମାନଙ୍କର ଅଣ୍ଡା ଓ ଶାବକମାନଙ୍କୁ ନଷ୍ଟ କରିଦିଅନ୍ତି ।

କରକରା ଚଢ଼େଇର ବସା କାକର ବସାପରି କଣ୍ଟାକାଠିରେ ତିଆରି ହୋଇଥାଏ; ମାତ୍ର କରକରା ନୀଡ଼ କୁଆବସାଠାରୁ ଅଧିକ ଗଭୀର । ବସା ଭିତରେ ଖୁବ୍ ସୂକ୍ଷ୍ମତନ୍ତୁ ଓ ଚେର ଦିଆଯାଏ । ଘନ ପତ୍ରଥିବା ଡାଳର ଶୀର୍ଷାଂଶରେ କରକରା ପକ୍ଷୀର ନୀଡ଼ ଲୁକ୍କାୟିତ ଭାବେ ରହିଥାଏ । ଏମାନେ ଥରକେ ତିନି-ପାଞ୍ଚଟି ଅଣ୍ଡା ଦିଅନ୍ତି । ଅଣ୍ଡାର ବର୍ଣ୍ଣ ଓ ତା' ଉପରେ ପଡ଼ିଥିବା ଦାଗରେ ପ୍ରଭେଦ ଦେଖାଯାଏ । ସାଧାରଣତଃ ଅଣ୍ଡାର ବର୍ଣ୍ଣ ଧୂସର-ଧଳା ଏବଂ ତା'ଉପରେ ଉଜ୍ଜ୍ୱଳ ଲାଲ୍-ବାଦାମୀ ରଙ୍ଗର ଛିଟା ଓ ଦାଗ ପଡ଼ିଥାଏ ।

କେମ୍ପିଫେଜିଡ଼ି (Campephagidae) ବଂଶ କାଶ୍ୟ ଚଢ଼େଇ-Cuckoo-shrike) ଓ ସୁନ୍ଦରୀ (minivet) ପକ୍ଷୀ ଏହି ବଂଶ ଅନ୍ତର୍ଭୁକ୍ତ । ଏହି ପକ୍ଷୀମାନେ ପାତଳ, ଛୋଟ ବା ମଧ୍ୟଭଳି ଆକାରର ବୃକ୍ଷବାସୀ ପକ୍ଷୀ । ଏମାନେ ଯୂଥଗୃଧ୍ନୀ । କୀଟପତଙ୍ଗ ଏମାନଙ୍କର ମୁଖ୍ୟ ଖାଦ୍ୟ । ସୁନ୍ଦରୀ ପକ୍ଷୀ ଉଜ୍ଜ୍ୱଳ ବର୍ଣ୍ଣର । 'ଜଙ୍ଗଲ ସୁନ୍ଦରୀ' (ବର୍ଣ୍ଣଚିତ୍ର 73) । ଇଂରାଜୀରେ ଏହାକୁ 'ଲାଲ ସୁନ୍ଦରୀ' (Scarlet minivet) କହନ୍ତି । ବୈଜ୍ଞାନିକ ନାମ 'ପେରିକ୍ରୋକୋଟାସ ଫ୍ଲାମିଆସ'(Pericrocotus Flammeus) । ହିନ୍ଦି ନାମ ପାହାଡ଼ି ବୁଲବୁଲ ଗୃଜମ୍ । ଜଙ୍ଗଲ ସୁନ୍ଦରୀ ଆକାରରେ ଗୋବରା ଚଢ଼େଇଠାରୁ ସାମାନ୍ୟ ସାନ । ପ୍ରାପ୍ତବୟସ୍କ ଅଣ୍ଡିରାର ପିଠିପଟର ବର୍ଣ୍ଣ ମୁଖ୍ୟତଃ ଚକଚକିଆ, ଘନକଳା, ତଳ ପାଖ କମଳାଲେମ୍ବୁପରି ଲାଲ ବା ଉଜ୍ଜ୍ୱଳ ଲାଲ । ମାଈ ଚଢ଼େଇ ଓ ଅପ୍ରାପ୍ତବୟସ୍କ ଅଣ୍ଡିରାର ପିଠି ପାଖର ବର୍ଣ୍ଣ ଧୂସର ଓ ସବୁଜ ଆଭାଯୁକ୍ତ ହଳଦିଆ (Olive yellow), ପେଟପଟର ବର୍ଣ୍ଣ ହଳଦିଆ । ତା'ସାଙ୍ଗକୁ କଳା ପକ୍ଷରେ ଦୁଇଟି ହଳଦିଆ ରଙ୍ଗର ପଟି ପଡ଼ିଥାଏ । ଏମାନେ ସାଧାରଣତଃ ପାଞ୍ଚ ଛଅଟି କରି କ୍ଷୁଦ୍ର କ୍ଷୁଦ୍ର ଦଳରେ ପତ୍ରଥିବା ଗଛର ଉପର ଅଂଶରେ ଦେଖାଯାନ୍ତି । ଶୀତଋତୁରେ ଏମାନେ ଯୂଥଗଠନ କରନ୍ତି । ଗୋଟିଏ ଗୋଟିଏ ଯୂଥରେ ତିରିଶି ବା

ଅଧିକ୍ ପକ୍ଷୀ ଥାନ୍ତି । ସାଧାରଣତଃ ଅର୍ଣ୍ଣିରା ପକ୍ଷୀମାନେ ଅଲଗା ଦଳ ଏବଂ ମାଈ ଓ ଅପ୍ରାପ୍ତବୟସ୍କ ଅର୍ଣ୍ଣିରା ସ୍ୱତନ୍ତ୍ର ଦଳ ଗଠନ କରନ୍ତି । ଏହି ପକ୍ଷୀମାନେ ତରୁପଲ୍ଲବର ଚନ୍ଦ୍ରାତପ ଉପରେ ଅଶାନ୍ତ ଭାବେ ଡେଣା ଫଡ଼ ଫଡ଼ କରି ନାଚକୁଦ କରୁଥାନ୍ତି ଏବଂ ଏକ ଆରେକ ପଛରେ ଗୋଡ଼ଆଗୋଡ଼ି ହୋଇ ଗୋଟିଏ ଗଛରୁ ଅନ୍ୟ ଗଛକୁ ଯାଆନ୍ତି । ତରୁଶାଖାରେ ନାଚକୁଦବେଳେ ଲୁଚି ରହିଥିବା ପୋକଜୋକ ବାହାରି ଆସନ୍ତି ଓ ସେମାନଙ୍କର ଆହାର ହୁଅନ୍ତି । ଘନ ସବୁଜ ପୃଷ୍ଠଭୂମି ଉପରେ ଅର୍ଣ୍ଣିରା ପକ୍ଷୀମାନଙ୍କର ପକ୍ଷର ଉଜ୍ଜ୍ୱଳ ଘନ ଲୋହିତ ରଙ୍ଗ ସୂର୍ଯ୍ୟାଲୋକରେ ଯେତେବେଳେ ଝଲମଲ ହୋଇଉଠେ ସେତେବେଳେ ଚମତ୍କାର ଦେଖାଯାଏ । ଜଙ୍ଗଲ ସୁନ୍ଦରୀର ପ୍ରଧାନ ଆହାର କୀଟପତଙ୍ଗ ଓ ମାଙ୍କଡ଼ସା ଏବଂ ସେମାନଙ୍କର ଶୂକ (ଲାର୍ଭା) । ପତ୍ର ଓ ମୁକୁଳ ଉପରେ ଥିଲାବେଳେ ସେମାନଙ୍କୁ ଏହି ପକ୍ଷୀମାନେ ଝୁମ୍ପି ଖାଆନ୍ତି, ନଚେତ୍ କନକ ଚଢ଼େଇ (Flycatcher) ପରି ପତଙ୍ଗଙ୍କ ପିଛା ଉଡ଼ି ଉଡ଼ି ତାଙ୍କୁ ଶିକାର କରନ୍ତି । ଜଙ୍ଗଲ ସୁନ୍ଦରୀ ଦଳବାନ୍ଧି ଉଡ଼ିଗଲାବେଳେ ସାଧାରଣତଃ ଏକ ପ୍ରକାର ସଙ୍ଗୀତମୟ 'ହୁଇ ଟୁଇଟ୍' ବା 'ହୁଇଚର, ହୁଇଚର' ଶବ୍ଦ କରନ୍ତି । ସବୁ ଜାତିର ସୁନ୍ଦରୀ ପକ୍ଷୀଙ୍କର ନୀଡ଼ ଏକ ଅଳ୍ପ ଗଭୀର କପ୍ ପରି । ଏହା ବେଶ ପରିଷ୍କାର ପରିଚ୍ଛନ୍ନ । ଚେର ଓ ପଟ ରୁଆଁରେ ନୀଡ଼ ରଚିତ ହୋଇଥାଏ । ନୀଡ଼ ବାହାର ପଟେ ହରିତା (moss), ଫିମ୍ପୁଲି (lichen) ଓ ମାଙ୍କଡ଼ସା ଅଣ୍ଡାର ଖୋଳ ଦିଆଯାଇଥାଏ । ତରୁଶାଖାର ଆଙ୍କୁଡ଼ି ପରି ସ୍ଥାନରେ ଅଥବା ଶାଖାର ଉପର ପାଖରେ ନୀଡ଼ ରହିଥାଏ । ନୀଡ଼ଥିବା ତରୁଶାଖା ସାଧାରଣତଃ ତଳୁ 3ରୁ 15 ମିଟର ଉଚ୍ଚରେ ଥାଏ । ଏହି ପକ୍ଷୀମାନେ ଥରକେ ଦୁଇରୁ ଚାରିଟି ଯାଏ ଅଣ୍ଡା ଦିଅନ୍ତି । ଅଣ୍ଡାର ବର୍ଣ୍ଣ ଫିକା ସବୁଜ । ତା' ଉପରେ ଘନବାଦାମୀ ଓ ଫିକା ନୀଳରଙ୍ଗର ଛିଟା ଓ ଛାପ ଚିହ୍ନ ଥାଏ ।

**ଛୋଟ ସୁନ୍ଦରୀ** କୁ ଇଂରାଜୀରେ 'ଲିଟ୍‌ଲ୍‌ସୁନ୍ଦରୀ' (little minivet) କହନ୍ତି । ଏହାର ବୈଜ୍ଞାନିକ ନାମ 'ପେରିକ୍ରୋକୋଟାସ ସିନାମୋମିଆସ' (Pericrocotus cinnamomeus) । ଏହା ଜଙ୍ଗଲ ସୁନ୍ଦରୀଠାରୁ ସାନ ଓ ପତଳା । ସାରା ଭାରତ, ବାଙ୍ଗଲା ଦେଶ ଓ ପାକିସ୍ଥାନର ବିସ୍ତୃତ ଅଞ୍ଚଳରେ ଏହା ଦେଖିବାକୁ ମିଳେ । ବୟଃପ୍ରାପ୍ତ ଅର୍ଣ୍ଣିରା ପକ୍ଷୀର ବର୍ଣ୍ଣ ମୁଖ୍ୟତଃ କଳା, ଧୂସର ଓ ହଳଦିଆ-ଲାଲ । ମାଈ ଓ ଅପ୍ରାପ୍ତ ବୟସ୍କ ଅର୍ଣ୍ଣିରା ପକ୍ଷୀର ମୁଣ୍ଡ କଳା ନୁହେଁ ଓ ପେଟ ପାଖ ଲାଲ ନ ହୋଇ ବେଶି ଭାଗ ହଳଦିଆ । କେବଳ ଅର୍ଣ୍ଣିରାର ପିଠି ଅଂଶରେ ଯେପରି ଲାଲବର୍ଣ୍ଣର ଚିହ୍ନ ଥାଏ, ଏମାନଙ୍କର ସେହିପରି ଥାଏ । ଜଙ୍ଗଲ ସୁନ୍ଦରୀ ଜଙ୍ଗଲ

ଅଞ୍ଚଳରେ ରହେ । ମାତ୍ର ଶ୍ରେଷ୍ଠ ସୁନ୍ଦରୀ ସାଧାରଣତଃ ଉଦ୍ୟାନ ଓ ପତଳା-ଶୁଷ୍କ ଜଙ୍ଗଲରେ ଦେଖିବାକୁ ମିଳେ ।

**ଇରେନିଡ୍** ( Irenidae ) ବଂଶ—'ପରୀ ନୀଳପକ୍ଷୀ' ( Fairy Bluebird ) ଏହି ବଂଶର । ଏହା ପଶ୍ଚିମଘାଟ ପର୍ବତମାଳାର ଦକ୍ଷିଣାଞ୍ଚଳ ଓ ହିମାଳୟ ପର୍ବତମାଳାର ପୂର୍ବାଂଶରେ ଚିର ସବୁଜ ଜଙ୍ଗଲରେ ଦେଖିବାକୁ ମିଳେ । ଏହି ବଂଶର ସାଧାରଣ ଓ ଅଧିକ ଅଞ୍ଚଳରେ ବିସ୍ତୃତ ପକ୍ଷୀ ହେଲେ ସୌଭଗୀ ଚଢ଼େଇ ( Iora ) ଏବଂ କନକଚର୍ମା ଓ ହରବା ଚଢ଼େଇ ( chloropses ) । ଏମାନଙ୍କୁ 'ପତ୍ର ପକ୍ଷୀ' ( Leaf birds ) ଓ ଲୋକପ୍ରିୟ ଭାଷାରେ 'ସବୁଜ ବୁଲବୁଲ' ପକ୍ଷୀ ( Green bulbuls) ) ମଧ୍ୟ କହନ୍ତି । **ସୌଭଗୀ ଚଢ଼େଇ** ( ବର୍ଣ୍ଣଚିତ୍ର 74)କୁ ଇଂରାଜୀରେ 'ସାଧାରଣ ଆଇଓରା' ( common iora ) ବୋଲି କହନ୍ତି । ଏହାର ବୈଜ୍ଞାନିକ ନାମ '‌ଏଇଜିଥିନା ଟିଫିଆ' ( Aegithina tiphia ) । ହିନ୍ଦି ନାମ ସୌବଗି । ଏହାର ଆକାର ଘରଚଟିଆର ଆକାର ହେବ । ଅଣ୍ଡିରା ଚଢ଼େଇର ବର୍ଣ୍ଣ ଉଜ୍ଜ୍ୱଳ ଘନକୃଷ୍ଣ ଓ ହଳଦିଆ । ପକ୍ଷରେ ଦୁଇଟି ଧଳା ଡୋରି ଦାଗ ଥାଏ । ମାଈ ଚଢ଼େଇର ବର୍ଣ୍ଣ ମୁଖ୍ୟତଃ ସବୁଜ ହଳଦିଆ ଓ ଅଣ୍ଡିରାର ପକ୍ଷରେ ଯେମିତି ଦୁଇଟି ଧଳା ରେଖା ଥାଏ, ଏହାର ମଧ୍ୟ ସେହିପରି ଡୋରିଆ ଦାଗ ରହିଥାଏ । ଉପରେ ଅଣ୍ଡିରା ଚଢ଼େଇର ବର୍ଣ୍ଣ ବିଷୟରେ ଯାହା କୁହାଗଲା ତା' ହେଉଛି ପ୍ରଜନନ ଋତୁର ସାଜ ପୋଷାକ । ଅନ୍ୟ ଋତୁରେ ଅଣ୍ଡିରାର ବର୍ଣ୍ଣ ମାଈ ପରି । ତଫାତ୍ ଭିତରେ ଅଣ୍ଡିରାର ପୁଚ୍ଛର ରଙ୍ଗ ପ୍ରଜନନ ଋତୁରେ ଓ ଅନ୍ୟ ଋତୁରେ କଳା । ମାଈ ଚଢ଼େଇର ପୁଚ୍ଛ ସବୁଜ । ସୌଭଗୀ ଚଢ଼େଇ ସମ୍ପୂର୍ଣ୍ଣ ରୂପେ ବୃକ୍ଷବାସୀ ଓ କୀଟଭୋଜୀ । ଏହା ପଲ୍ଲୀଗ୍ରାମ ବାହାରେ ଥିବା ତରୁବୀଥି ଓ ଅଳ୍ପ ଜଙ୍ଗଲିଆ ଅଞ୍ଚଳରେ ଦେଖିବାକୁ ମିଳେ । ଯୋଡ଼ି ଯୋଡ଼ି ହୋଇ ଏମାନେ ଡାଳପତ୍ର ଭିତରେ ଶୁଆଁଳିଆ ଓ କୀଟପତଙ୍ଗ ଖୋଜି ବୁଲୁଥାନ୍ତି । ଏ ସମୟରେ ଏକ ଡାଳରୁ ଅନ୍ୟ ଡାଳକୁ ଡେଇଁ ଡେଇଁ ଯାନ୍ତି ଏବଂ ଡାଳର ତଳକୁ ଓ କଡ଼କୁ ଝୁଲି ରହି ପତ୍ର ମଧ୍ୟରେ ପୋକ ସନ୍ଧାନ କରନ୍ତି । ପରସ୍ପର ସହିତ ସମ୍ପର୍କ ସ୍ଥାପନ ପାଇଁ ଏମାନେ ମଧୁର ସୁସ୍ୱର ଓ କ୍ଷୁଦ୍ର ସଙ୍ଗୀତମୟ କିଚିରିମିଚିରି ଶବ୍ଦ କରନ୍ତି । ଏହାର ଏକ ମଧୁର ଦୀର୍ଘଟଣା ସୁସ୍ୱର ଡାକ ଅନୁସାରେ ହିନ୍ଦିରେ ଅନୁକାରାତ୍ମକ 'ସୌବଗି' ନାମ ହୋଇଅଛି । ପ୍ରଜନନ ଋତୁରେ ଅଣ୍ଡିରା ପକ୍ଷୀ ମାଈ ପକ୍ଷୀର ଦୃଷ୍ଟି ଆକର୍ଷଣ ପାଇଁ ଚମତ୍କାର ଖେଳ ଦେଖାଏ । ସେ ପକ୍ଷକୁ ତଳ ଆଡ଼କୁ ଝୁଲାଇ ରଖି, ପିଠିର ଧଳା ପକ୍ଷକୁ ତୁଳା ଭଳିଆ ପରି ଫୁଲାଇ ଓ ଲାଞ୍ଜକୁ ଡେରଛା

ଭାବେଂ ଡାଳ ରଖି ମାଈ ପକ୍ଷୀକୁ ଗୋଡ଼ାଏ । ତା' ସଙ୍ଗେ ସଙ୍ଗେ ସେ ସଙ୍ଗୀତମସ୍ତ କଟର ମିଟର, ସୁସୁର୍ ଓ ଘର୍ଘଟଣା ବ୍ୟସକାରନ୍ତ ଚଇ-ଇ ଶବ୍ଦ କରୁଥାଏ । ଏକ ମିଟର ବା ଦୁଇମିଟର ଉପରକୁ ଡେଇଁ ସେ ତା'ର ଫୁଲାଇଥିବା ଓ ଚକଚକ କରୁଥିବା ଧଳା ପିଠି ଅଂଶ ପ୍ରଦର୍ଶନ କରେ ଏବଂ ବୃକ୍ଷଡାଳରେ ତା'ର ବସିଥିବା ସ୍ଥାନକୁ ଘୂରି ଘୂରି ଫେରିଆସେ । ଏତେବେଳେ ଏହା ତୁଳାର ଏକ ପେଣ୍ଡୁ ପରି ଦେଖାଯାଏ । ସୌଭାଗୀର ନୀଡ଼ ପରିଷ୍କାର ଏବଂ ନରମ ଘାସର ପତ୍ର ଓ ଚେରରେ ଘନ ସନ୍ନିବିଷ୍ଟ ଭାବେ ବୁଣା ହୋଇଥାଏ । ଦୋଫାଙ୍କିଆ ଡାଳ ଅଂଶରେ ଏହି ନୀଡ ରହିଥାଏ । ନୀଡର ବାହାର ପାଖରେ ବୁଢ଼ିଆଣୀ ଜାଲ ନିପୁଣ ଭାବେ ଲେପା ଯାଇଥାଏ । ଏମାନେ ଥରକେ ସାଧାରଣତଃ ଦୁଇଟିରୁ ଚାରିଟି ଯାଏ ଅଣ୍ଡା ଦିଅନ୍ତି । ଅଣ୍ଡାର ବର୍ଣ୍ଣ ଫିକା ପାଟଳ-ଧଳା । ତା' ଉପରେ ବାଇଗଣି-ବାଦାମୀ ବର୍ଣ୍ଣର ଗୁପଗୁପିଆ ଚିହ୍ନ ଥାଏ ।

ଅନେକଟା ସୌଭାଗୀ ପରି ଦେଖିବାକୁ ଆଉ ଜାତିଏ ସୌଭାଗୀ ଚଢ଼େଇ ଅଛନ୍ତି । ଏମାନଙ୍କୁ ଇଂରାଜୀରେ 'ମାର୍ସାଲ ସୌଭାଗୀ' (Marshall's Iora) କହନ୍ତି । ପକ୍ଷି-ବିଶାରଦ ମାର୍ସାଲଙ୍କ ନାମାନୁସାରେ ଏପରି ନାମକରଣ କରାଯାଇଛି । ଏହାର ବୈଜ୍ଞାନିକ ନାମ "ଏଇଜିଥିନା ନାଇଗ୍ରୋଲୁଟିଆ" (Aegithina nigrolutea) । କୌତୁକର କଥା ଏହି ଯେ ଏଇ ପକ୍ଷୀଟି କେବଳ ବୃଷ୍ଟିପ୍ର ଅଞ୍ଚଳରେ ଦେଖାଯାଏ । ଏହା ଗୁଜରାଟର କଚ୍ଛ ଅଞ୍ଚଳ, ରାଜସ୍ଥାନ, ପଞ୍ଜାବ, ମଧ୍ୟ-ପ୍ରଦେଶ ଓ ବଙ୍ଗଳାରେ ବାସକରେ । ଏହାକୁ ଚିହ୍ନିବା ପାଇଁ ଲାଞ୍ଜକୁ ଲକ୍ଷ୍ୟ କରିବାକୁ ହେବ । ଏହାର ଲାଞ୍ଜର ଅଗ୍ରଭାଗ ଧଳା । ।

**କନକ ଚମ୍ପା** ( ବର୍ଣ୍ଣଚିତ୍ର 75 )କୁ ଇଂରାଜୀରେ 'ଜେରଡନ୍ କନକଚମ୍ପା' ( Jerdon's Chloropsis ) କହନ୍ତି । ପକ୍ଷିବିଶାରଦ ଜେରଡନ୍ଙ୍କ ନାମାନୁସାରେ ଏପରି ନାମକରଣ କରାଯାଇଅଛି । ବୈଜ୍ଞାନିକ ନାମ "କ୍ଲୋରୋପ୍‌ସିସ କୋଚନ୍‌ଚ୍ଚଇନେନସିସ ଜେରଡନି" ( Ch lorpsis Cochinchinensis jerdoni ) । ହିନ୍ଦି ନାମ ହରେଓ୍ୱା । ଏହା ଗୋଟିଏ ପରିଚ୍ଛନ୍ନ ଘାସ ପରି ସବୁଜ ପକ୍ଷୀ । ଆକାର ଗୋବରା ଚଢ଼େଇ ପରି ହେବ । ଦେହରେ ନିଶ ବା ମୁଛ ପରି ଉଜ୍ଜ୍ୱଳ ବାଇଗଣି-ନୀଳ ଡୋରିଆ ଦାଗ ଥାଏ । ଗାଲ, ଚିବୁକ ଓ କଣ୍ଠ କଳା । ସୂକ୍ଷ୍ମ ସାମାନ୍ୟ ବକ୍ଷ ଅଣ୍ଟ ମଧ୍ୟ କଳା । ଏହା ଅଣ୍ଡିରା ପକ୍ଷୀର ରଙ୍ଗ । ମାଈ ପକ୍ଷୀର ଚିବୁକ ଓ କଣ୍ଠ ଫିକା ନୀଳ ସବୁଜ ଓ ଦେହରେ ମୁଛ ପରି ଚକଚକିଆ ସବୁଜ-ନୀଳ ଡୋରିଆ ଦାଗ ପଡ଼ିଥାଏ । କନକଚମ୍ପା ଯୋଡ଼ି ଯୋଡ଼ି ହୋଇ ଅଥବା କ୍ଷୁଦ୍ର କ୍ଷୁଦ୍ର ଦଳରେ ବିଭକ୍ତ

ହୋଇ ବୃକ୍ଷର ପତ୍ର ମଧ୍ୟରେ ପରିଶ୍ରମ ସହକାରେ କୀଟପତଙ୍ଗ ଶିକାର କରୁଥିବାର ଦେଖିବାକୁ ମିଳେ । ଏତେବେଳେ ଏମାନେ କ୍ଷୁଦ୍ର କ୍ଷୁଦ୍ର ଶାଖା ଦେହରେ ତଳଆଡ଼କୁ ଝୁଲି ରହି ଓ ସର୍କସରେ ଖେଳ ଦେଖାଇଲା ପରି ନାନାପ୍ରକାର ଭଙ୍ଗିରେ ରହି ଆହାର ଜୀବ ଖୋଜୁଥାନ୍ତି । ଏହାର ବର୍ଣ୍ଣ ପତ୍ର ସହିତ ସୁନ୍ଦର ଭାବେ ମିଶି ଯାଉଥିବାରୁ କନକ ଚମ୍ପାକୁ ଖୁବ୍ କମ୍ ଲୋକ ଦେଖିବାକୁ ପା'ନ୍ତି । ତା' ସ୍ୱର ଶୁଣି ମଧ୍ୟ ସେହି ପକ୍ଷୀ ବୋଲି ଅନେକ ସମୟରେ ଜାଣି ହୁଏନାହିଁ । କାରଣ ଅନ୍ୟ ପକ୍ଷୀମାନଙ୍କର ଯଥା—ଦର୍ଜି ଟିକି ଚଢ଼େଇ (Tailor bird), ଗୋବଗ୍ର (Bul bul), କଜଳପାତି (Black drongo), ସୌଭାଗୀ (Iora), ଗଙ୍ଗେଇଡୁବ (White breasted kingfisher) ଓ ଦୟାଲ (Magpie-Robin)ର ସ୍ୱରକୁ ସେ ଅବିକଳ ନକଲ କରିପାରେ । ସବୁଠାରୁ ମଜାର କଥା ଏହି ଯେ କନକଚମ୍ପା ପକ୍ଷୀ ଗୋଟିକ ପରେ ଗୋଟିଏ ପକ୍ଷୀର ସ୍ୱରକୁ ପର ପର ବିରତିହୀନ ଭାବେ ନକଲ କରିବା ଫଳରେ ମନେହୁଏ ସତେ ଯେପରି ପକ୍ଷୀ ଜାତିସଂଘର ସାଧାରଣ ସଭା ବସିଛି । ପର୍ଯ୍ୟବେକ୍ଷକ ଗଛର ନିକଟକୁ ଆସି ଦେଖେ, ପ୍ରକୃତ ପକ୍ଷେ ପକ୍ଷୀ ଜାତି ସଂଘର ସାଧାରଣ ସଭା ବସି ନାହିଁ, କେବଳ ଗୋଟିଏ କନକଚମ୍ପା ପକ୍ଷୀ ତାକୁ ଭଣ୍ଡେଇବାରେ କୃତକାର୍ଯ୍ୟ ହୋଇଥିବାରୁ ଉତ୍ଫୁଲ୍ଲ ମନରେ ପଳାୟନରତ । ଏହାର ଖାଦ୍ୟ କୀଟପତଙ୍ଗ, ମାଙ୍କଡ଼ସା, ଫଳ ଓ କୋଳି । ଏମାନେ ଯଥେଷ୍ଟ ପରିମାଣରେ ଫୁଲର ମଧୁ ମଧ ସଂଗ୍ରହ କରି ଖାନ୍ତି ।

କନକଚମ୍ପାର ନୀଡ଼ ଏକ ଅଗଭୀର କପ୍ ପରି । ଏହା ଲତାଗଛର ଆକର୍ଷୀ (tendril), ହରିତା (moss) ଓ ମୂଳିକା (rootlet)ରେ ହାଲୁକା ଭାବେ ତିଆରି ହୋଇଥାଏ । ଭିତରେ ଆହୁରି ନରମ ପଦାର୍ଥ ଦିଆଥାଏ । ବାହାର ପଟକୁ ବାହାରିଥିବା ତରୁଶାଖାର ଅଗରେ ଅଥଚ ଉତ୍ତମରୂପେ ଲୁକ୍କାୟିତ ଭାବେ ନୀଡ଼ ରହିଥାଏ । କନକଚମ୍ପା ସାଧାରଣତଃ ଦୁଇଟି ଅଣ୍ଡା ଦିଏ । ଏହାର ବର୍ଣ୍ଣ ଲାଲଆସିଆ ହଳଦିଆ । ତା' ଉପରେ ଘନ ଲାଲ୍ ରଙ୍ଗର ଛିଟା ଦାଗ ପଡ଼ିଥାଏ ।

**ହରିବା ଚଢ଼େଇ** କନକଚମ୍ପା ପକ୍ଷୀର ଏକ ଜାତି । ଏହାକୁ ଇଂରାଜୀରେ 'ସ୍ୱର୍ଣ୍ଣ ଲଲାଟ କନକଚମ୍ପା' (Gold fronted chloropsis) କହନ୍ତି । ବୈଜ୍ଞାନିକ ନାମ 'କ୍ଲୋରୋପସିସ ଅରିଫ୍ରନ୍ସ୍' (Chloropsis aurifrons) । ସମୟ ସମୟରେ କନକଚମ୍ପା ଓ ହରିବା ଉଭୟ ପକ୍ଷୀ ଏକ ଅଞ୍ଚଳରେ ଏକାଠି ଦେଖା-ଯାଇଥାନ୍ତି । ଅର୍ଣ୍ଡିରା ହରିବାର ମସ୍ତକାଗ୍ର (forehead) ଉଜ୍ଜ୍ୱଳ ସ୍ୱର୍ଣ୍ଣାଭ ଏବଂ

ଚଞ୍ଚୁକ ଓ ତଣ୍ଟି ବାଇଗଣି-କଳା । ମାଈ ପକ୍ଷୀ ସେହି ରଙ୍ଗର ମାତ୍ର ଫିକା । ତାର ଲଲାଟର ସ୍ୱର୍ଣ୍ଣାଭ ରଙ୍ଗ ସେତେ ପ୍ରତିଭାତ ନୁହେଁ ।

ପିକ୍‌ନୋନୋଟିଡ଼ି ( Pycnonotidae ) ବଂଶ—ଗୋବରି ଚଢ଼େଇ (Bulbul) ଏହି ବଂଶର । ଏମାନେ ସାରା ଭାରତରେ ଦେଖାଯାନ୍ତି ଓ ବଗିଚାର ଶୋଭାବର୍ଦ୍ଧନ କରନ୍ତି । ଏମାନେ ସେମାନଙ୍କର ଉପସ୍ଥିତିଦ୍ୱାରା ଅପ୍ରାକୃତିକ ବଗିଚାକୁ ସଜୀବ କରି ତୋଳନ୍ତି କହିଲେ ଭୁଲ ହେବନାହିଁ । ଚୂଳିଆ ( ବର୍ଣ୍ଣଚିତ୍ର 76 )—ଏ ଜାତୀୟ ଗୋବରି ଚଢ଼େଇକୁ ଓଡ଼ିଶାର କେତେକ ସ୍ଥାନରେ ତାଳଚମ୍ପା ମଧ୍ୟ କହିଥାନ୍ତି । ଇଂରାଜୀ ନାମ 'ଲାଲ-ନଖ ବୁଲବୁଲ' (Redwhiskered bulbul) । ବୈଜ୍ଞାନିକ ନାମ 'ପିକ୍‌ନୋନୋଟାସ ଜୋକୋନାସ' (Pycnonotus joconus) । ହିନ୍ଦି ନାମ 'ପାହାଡ଼ି ବୁଲବୁଲ' । ଏହା ବଣିଠାରୁ ଶ୍ରେଷ୍ଠ ଓ କ୍ଷୀଣ ଏବଂ ବଗିଚା ଓ ବୁଦାଗୁଳ୍ମ ମଧ୍ୟରେ ଇତସ୍ତତଃ ବୁଲୁଥିବାର ଦେଖାଯାଏ । ଏହାର ମୁଣ୍ଡରେ ସ୍ପଷ୍ଟ ଚୂଳ ଥାଏ ଓ ତାହା ସାମନା ଆଡ଼କୁ ସାମାନ୍ୟ ବଙ୍କା । ପକ୍ଷର ବର୍ଣ୍ଣ ବାଦାମୀ । ପେଟ ପାଖ ଧଳା । ଗ୍ରୀବାରେ କଳାରଙ୍ଗର ଏକ ଭଗ୍ନ 'ଗଳାହାର' ଥାଏ । ଅର୍ଥାତ୍ ଗ୍ରୀବା ଆଡ଼କୁ ବେକରେ ଏକ କଳା ହାର ପରି ଡୋରିଆ ରେଖା ଥାଏ, ତାହା ମଝି ଅଂଶରେ ଭଗ୍ନ । ଆଖି ତଳକୁ ମୁଛପରି ଗାଢ଼ ଲାଲ ରଙ୍ଗର ଚିହ୍ନ ଥାଏ । ଯେଉଁଠି ଖାଦ୍ୟ ଓ ବାସ ଯୋଗାଇବା ପାଇଁ ଗଛ ଓ ବୁଦାଗୁଳ୍ମ ଅଛି, ସେଠି ଆପଣ ଚୂଳିଆକୁ ଦେଖିବାକୁ ପାଇବେ । ଏପରିକି କୋଳାହଳମୟ ନଗରର ବଗିଚାମାନଙ୍କରେ ମଧ୍ୟ ଏହା ବାସକରେ । ଗୋବରି ବା ଚମ୍ପା ( Redvented bulbul ) ମଧ୍ୟ ଚୂଳିଆ ପରି ଏକ ସାଧାରଣ ପକ୍ଷୀ । ମାତ୍ର ଚୂଳିଆ ଚମ୍ପା ଅପେକ୍ଷା ଅଧିକ ଜଙ୍ଗଲିଆ ଓ ପାହାଡ଼ିଆ ଅଞ୍ଚଳରେ ବାସକରେ । ଚୂଳିଆମାନେ ଯୋଡ଼ି ଯୋଡ଼ି ହୋଇ ବୁଲନ୍ତି; ମାତ୍ର ଫଳ ପାଚିଥିଲାବେଳେ ଅଧିକ ସଂଖ୍ୟାରେ ଗଛ ବା ବୁଦାରେ ଏକତ୍ର ହୋଇଥିବାର ଦେଖିବାକୁ ମିଳେ । ସେମାନେ ଗୀତ ବୋଲନ୍ତି ନାହିଁ; ମାତ୍ର ସେମାନଙ୍କର ଆନନ୍ଦମୟ କାକଳି ଦିନର ସବୁ ସମୟରେ ଶୁଣିବାକୁ ମିଳିଥାଏ । ଏହି ସ୍ୱର ଶୁଣିବାକୁ କେତେକ ପରିମାଣରେ ଖିଟିଖିଟିଆ । ସେମାନଙ୍କର ପ୍ରଧାନ ଖାଦ୍ୟ ଫଳ, ବିଶେଷ କରି ନାଗଏଣ୍ଡି (Lantana) ଗଛର ଫଳ । ସେମାନେ ମାଙ୍କଡ଼ସା, କୀଟ-ପତଙ୍ଗ ଓ ସଁବାଳୁଆ ମଧ୍ୟ ଖାଆନ୍ତି । ସେମାନେ ଚମ୍ପା (Redvented bulbul) ପରି କଳହପ୍ରିୟ ନୁହଁନ୍ତି । ଶ୍ରେଷ୍ଠ ହୋଇଥିବାବେଳେ ପାଳିଲେ ଚୂଳିଆ ଚମତ୍କାର ପୋଷା ମାନେ । ମୁକ୍ତ ହେଲେ ପଛେ ପଛେ ଏ ଘର ସେ ଘର ବୁଲେ ଏବଂ ଦୂରରେ ଥିଲେ ଡାକିଲେ ପାଖକୁ ଆସେ । ଗୋବରି ଚଢ଼େଇମାନେ ସୂକ୍ଷ୍ମ ଡେଉଁ, ସବୁ ଜାତି ଓ

ଘାସରେ କପ୍ ଆକାରର ନୀଡ଼ ରଚନା କରନ୍ତି । ଚୂଳିଆ ମଧ୍ୟ ସେହିପରି ବସା କରେ । ଏମାନଙ୍କର ନୀଡ଼ ଅଳ୍ପ ଉଚ୍ଚ ଗଛ, ବୁଦା ବା ବଗିଚାର ବାଡ଼ରେ ଦେଖିବାକୁ ମିଳେ । ଏସବୁ ଅନେକ ସମୟରେ ଖୋଲା ସ୍ଥାନରେ ରହିଥିବାରୁ ଅଣ୍ଡା ଓ ଶାବକ ବହୁ ପରିମାଣରେ ହିଂସ୍ର ପକ୍ଷୀମାନଙ୍କଦ୍ୱାରା ଲୁଣ୍ଠିତ ହୁଏ । ସମସ୍ତ ସମୟରେ ଚୂଳିଆ ଲୋକ ବାସ କରୁଥିବା ଛପର ଘରର କାନ୍ଥ ଓ ଛାତରେ ନୀଡ଼ ରଚନାକରେ । ଆପାତତଃ ସେମାନେ ମନୁଷ୍ୟ ଚଳପ୍ରଚଳଦ୍ୱାରା ଭୟଭୀତ ହୁଅନ୍ତି ନାହିଁ । ମାଈ ଚୂଳିଆ ଥରକେ ଦୁଇଟିରୁ ଚାରିଟି ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ପାଟଳ-ଶ୍ୱେତ । ତା' ଉପରେ ବିଶେଷ ଭାବେ ବାଇଗଣି ବାଦାମୀ ବା ଘନଲୋହିତ ରଙ୍ଗର ଛୁପଛୁପିଆ ଚିହ୍ନ ଥାଏ ।

**ଧଳାଗାଲ ବୁଲ୍‌ବୁଲ୍**—ଏହାର ଇଂରାଜୀ ନାମ 'ଧଳାଗାଲ ଗୋବରା' (Whitecheeked bulbul) । ବୈଜ୍ଞାନିକ ନାମ 'ପିକ୍‌ନୋନୋଟାସ ଲିଉକୋଜେନିସ' (Pycnonotus leucogenys) । ଏହି ବୁଲ୍‌ବୁଲ ପକ୍ଷୀଟି ଭାରତର ଉତ୍ତର ଓ ଉତ୍ତର-ପଶ୍ଚିମାଞ୍ଚଳରେ ବେଶି ସାଧାରଣ ଭାବେ ଚୂଳିଆ ପରିବର୍ତ୍ତେ ଦେଖିବାକୁ ମିଳେ । ଏହାର ଗଣ୍ଡଦେଶରେ ଧଳା ଚିହ୍ନ ସୁପରିସ୍ଫୁଟ । ଚୂଳିଆ ପରି ଏହାର ମୁଛ ନାହିଁ । ଲାଞ୍ଜତଳ ଅଂଶ ଲାଲ ନ ହୋଇ ହଳଦିଆ । ବିଭିନ୍ନ ଅଞ୍ଚଳରେ ଏହି ପକ୍ଷୀର ଚୂଳ ଭିନ୍ନ ଆକାରର । ଉଦାହରଣରେ ଗୁଜରାଟରେ ଦେଖାଯାଉଥିବା ଧଳାଗାଲ ବୁଲ୍‌ବୁଲର ଚୂଳ କେତେକ ପରିମାଣରେ ଗୋଲାକାର । କାଶ୍ମୀର ଅଞ୍ଚଳରେ ଏହି ପକ୍ଷୀର ଚୂଳ ଲମ୍ବା, ଗୋଜିଆ ଓ ଆଗଆଡ଼କୁ ବାଙ୍କି ଥାଏ ।

**ଚମ୍ପା** (ବର୍ଣ୍ଣଚିତ୍ର 77)—ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଏହା ଚମ୍ପା ଓ ଗୋବରା ଉଭୟ ନାମରେ ପରିଚିତ । ଇଂରାଜୀ ନାମ 'ଲାଲ ଲାଞ୍ଜ ମୂଳଥିବା ବୁଲ୍‌ବୁଲ୍' (Redvented bulbul) । ବୈଜ୍ଞାନିକ ନାମ 'ପିକ୍‌ନୋନୋଟାସ କାଫେର' (Pycnonetus cafer) । ହିନ୍ଦି ନାମ ବୁଲ୍‌ବୁଲ୍, ଗୁଲ୍‌ଦୁମ୍ । ଏହା ଆମର ଏକ ପରିଚିତ ପକ୍ଷୀ । ଏହାର ପିଠି ପାଖ ଧୂଆଁଟିଆ-ବାଦାମୀ । ମୁଣ୍ଡ ଓ ଚୂଡ଼ା କଳା ଏବଂ ମନେହୁଏ ତା' ଉପରେ କିଏ ଝାଡ଼ୁ ମାରି ସଫା କରିଛି । ପିଠି ଓ ଛାତିରେ କାତିପରି ଚିହ୍ନ ଥାଏ । ଲାଞ୍ଜ ମୂଳରେ ଗାଢ଼ ଲାଲବର୍ଣ୍ଣର ଏକ ଚିହ୍ନ ଥାଏ । ପିଚ୍ଛ ଅଂଶ ଧଳା ଓ ଉଡ଼ୁଥିବା ସମୟରେ ସ୍ପଷ୍ଟ ଦେଖିବାକୁ ମିଳେ । ଅଧିକ ଜଙ୍ଗଲିଆ ଓ ପାହାଡ଼ିଆ ଅଞ୍ଚଳରେ ଚମ୍ପା ପରିବର୍ତ୍ତେ ଚୂଳିଆ ଦେଖାଯାଏ । ଚମ୍ପା ଏକ ସତେଜ ଭାବାପନ୍ନ ପକ୍ଷୀ ଓ ସୁଲଳିତ ଧ୍ୱନି କରେ । ଏଥିପାଇଁ ଆମର ଉଦ୍ୟାନମାନଙ୍କରେ ଏହା ଏକ ପ୍ରୀତିକର ପକ୍ଷୀ । ଅବଶ୍ୟ ମଟର ଓ ସେହିପରି ଗଛ ପ୍ରତି ଏହାର ଆକର୍ଷଣ ବେଶି ଏବଂ

ବେଳେବେଳେ ସେ ସବୁ ଫସଲ ନଷ୍ଟ କରେ । ବିଭିନ୍ନ ପ୍ରକାର କୋଳ ଚମ୍ପାର ପ୍ରଧାନ ଆହାର । ମଥ୍ (moth) ଓ ଶୁଁବାଳୁଆ ମଧ ଖାଏ । ପ୍ରଥମ ଅସାର୍ ମୌସୁମୀ ବର୍ଷା ପରେ ଝିଣ୍ଡିପୋକ ଗାଡମାନଙ୍କରୁ ବାହାରନ୍ତି । ଏ ସମୟରେ ଗୋବର ଚଢ଼େଇ ଡେଇଁ ଡେଇଁ ସେମାନଙ୍କୁ ଧରି ଖାଏ, ନଚେତ୍ ଝିଣ୍ଡିପୋକ ଉଡ଼ୁଥିଲା ବେଳେ ବୁଦା ଉପରୁ ଉଲ୍ଲମ୍ବ ଭାବେ (vertycally) ଉଡ଼ି ଆସି ଧରେ ।

ଗୋବର ଚଢ଼େଇର ସାଧାରଣ ଆଚରଣ ଓ ଅଭ୍ୟାସ ବୁଲ୍‌ବୁଲି ପକ୍ଷୀଠାରୁ ଭିନ୍ନ ନୁହେଁ । ତଫାତ୍ ଭିତରେ ଏତିକି, ବୁଲ୍‌ବୁଲି ତୁଳନାରେ ଚମ୍ପା ବହୁତ ବେଶି କଳହ-ପ୍ରିୟ । ଭାରତୀୟ ପକ୍ଷୀ-ରସିଆ (fanciers) ମାନେ ଚମ୍ପାକୁ ଲଢ଼ୁଆ-ପକ୍ଷୀ ରୂପେ ଖୁବ୍ ପସନ୍ଦ କରନ୍ତି । ଭାରତର କେତେକ ଅଞ୍ଚଳରେ ଉତ୍ସବ ଓ ଛୁଟିଦିନମାନଙ୍କରେ ଗୋବର ଚଢ଼େଇଙ୍କୁ ଲଢ଼ାଇ ଲୋକେ ବେଶ ଆମୋଦ ପାନ୍ତି । ଏ ସମୟରେ ଚମ୍ପା-ରସିଆ ଓ ଜୁଆରିମାନେ ବାଜି ମାରି ବେଶ କିଛି ଟଙ୍କା ପଇସା ହାରନ୍ତି ଜିତନ୍ତି । ଯେଉଁ ପକ୍ଷୀ ସମସ୍ତଙ୍କୁ ଜିତି ଚ୍ୟାମ୍ପିଅନ୍ ହୁଏ, ତାର ଦାମ ବହୁତ ଉଠେ । ଅନ୍ୟ ବୁଲ୍‌ବୁଲ୍ ପକ୍ଷୀମାନଙ୍କ ପରି ଚମ୍ପା ସୂକ୍ଷ୍ମ ଚେର, ପତ୍ର, ଡେମ୍ଫ ଓ ଘାସରେ କପ୍ ଆକାରର ନୀଡ଼ ରଚନା କରେ । ଅଳ୍ପ ଉଚ୍ଚ ଗଛ ଓ ବୁଦାରେ ଏହି ନୀଡ଼ ରଚିତ ହୋଇଥାଏ । ବଙ୍ଗଳାମାନଙ୍କରେ ଲତାଗଛକୁ ଉପରକୁ ଉଠାଇବା ପାଇଁ ଲୌହାଦିର ଜାଲି ଦିଆଯାଇଥାଏ । ବେଳେବେଳେ ତା ଉପରେ ମାଡ଼ିଥିବା ଲତାରେ ମନୁଷ୍ୟ ଚଳପ୍ରଚଳଠାରୁ ମାତ୍ର ଏକ ମିଟର ତଫାତ୍‌ରେ ଚମ୍ପା ନୀଡ଼ ରଚନା କରିବାର ଦେଖାଯାଇଅଛି । ଏହା ଥରକେ ଦୁଇ ତିନୋଟି ଅଣ୍ଡା ଦିଏ । ଏମାନଙ୍କର ଅଣ୍ଡା ବର୍ଣ୍ଣରେ ଓ ଆକାରରେ ଦେଖିବାକୁ ବୁଲ୍‌ବୁଲି ପକ୍ଷୀର ଅଣ୍ଡା ପରି ।

ମାସିକାପିଡ଼ି (Muscicapidae) ବଂଶ ପାସାରିଫରମିସ (Passeriformes) ପକ୍ଷୀବର୍ଗ ଅନ୍ତର୍ଭୁକ୍ତ । ବାହାରକୁ ବିଭିନ୍ନ ବୋଲି ମନେ ହେଉଥିବା ବହୁ ଉପବଂଶର ପକ୍ଷୀ ଏହି ବଂଶାଧୀନ । ସେସବୁକୁ ଉପରଠାଉରିଆ ଭାବେ ପରୀକ୍ଷାକଲେ ମନେହେବ ସେମାନେ ବିଭିନ୍ନ ଜାତିର ପକ୍ଷୀ; ମାତ୍ର ସେମାନଙ୍କର ଶାରୀରିକ ଗଠନ (anatomy) ଓ ସ୍ୱଭାବ ନିରୀକ୍ଷା କଲେ ସେମାନଙ୍କ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ସାମଞ୍ଜସ୍ୟ ଦେଖାଯାଏ । ସେସବୁ ସୂକ୍ଷ୍ମ ବୈଜ୍ଞାନିକ ବିଷୟ ଏଠାରେ ଆଲୋଚନା କରିବା ଏ ବହିର ପରିସରଭୁକ୍ତ ନୁହେଁ । କନକ ଚଢ଼େଇ (Flycatcher), ଟିକି ଚଢ଼େଇ (Warbler), ସାତଭାୟା (Babbler) ଓ କସ୍ତୁରି (Thrush) ମାସିକାପିଡ଼ି ବଂଶଭୁକ୍ତ । ଏହି ବିଭିନ୍ନ ଜାତି ପକ୍ଷୀମାନଙ୍କ ଭିତରୁ କେତୋଟି ସାଧାରଣ ପକ୍ଷୀର କଥା ଆଲୋଚନାକରିବା ।

**ନାଚୁଣୀ ପକ୍ଷୀ (ବର୍ଣ୍ଣ ଚିତ୍ର 78)**—ଏହାକୁ ଇଂରାଜୀରେ 'ଧଳା ଟିପିଟିପିଆ ପଙ୍ଖା

ଲାଞ୍ଜିଆ ମକ୍ଷିକା ଭକ୍ଷୀ' (White spotted Fantail Flycatcher) କହନ୍ତି । ବୈଜ୍ଞାନିକ ନାମ 'ରିପିଡ଼ୁରା ଆଲବୋଗୁଲାରିସ' (Rhipidura albo-gularis); ଅନ୍ୟ ନାମ—ନାଚନ୍, ଚକଡ଼ଲ । ଏହାର ଆକାର ପ୍ରାୟ ଘରଚଟିଆ ଆକାର ହେବ । ବର୍ଣ୍ଣ ଧୂଆଁଳିଆ ବାଦାମୀ । ଏହାର ଭ୍ରୂଲତା (eyebrow) ଧଳା ଓ ସ୍ପଷ୍ଟ । ଗ୍ରୀବା ଓ ପାର୍ଶ୍ୱଭାଗ ଧଳା ଚିପିଚିପିକିଆ । ପେଟପାଖ ଧଳା । ନାଚୁଣୀ ସଦାଚଞ୍ଚଳ ଓ ସ୍ଫୂର୍ତ୍ତିବାଜ । ଏହାର ଲାଞ୍ଜ ଦେଖିବାର ଜିନିଷ । ଏହା ଅଡ଼ମ୍ବର ପୂର୍ଣ୍ଣ ଭାବେ ପଙ୍ଖାପରି ପ୍ରସାରିତ ହୋଇ ରହିଥାଏ ଏବଂ ଦେହର ଦୁଇପଟେ ଡେଣା ଶିଥିଳଭାବେ ଓହଳି ଥାଏ । ନାଚୁଣୀ ବିକ୍ଷିପ୍ତ ଅଳ୍ପ ଜଙ୍ଗଲ୍ ଅଞ୍ଚଳ, ନିକୁଞ୍ଜ ଓ ଉଦ୍ୟାନ ସବୁରେ ଦେଖାଯାଏ । କୁଞ୍ଜବନ, କୋଳାହଳମୟ ଜନାକୀର୍ଣ୍ଣ ସହର ମଧ୍ୟରେ ଥିଲେ ସେଠାରେ ମଧ୍ୟ ବାସକରେ । ଏହା ମନୁଷ୍ୟ ପ୍ରତି ଉଦାସୀନ । ସୁନ୍ଦର ପୋଷ ମାନେ ଓ ବିଶ୍ୱାସରେ ପାଖକୁ ଆସେ । ସୀମାବଦ୍ଧ ଅଞ୍ଚଳରେ ନାଚୁଣୀ ପକ୍ଷୀ ଯୋଡ଼ି ଯୋଡ଼ି ହୋଇ ବାସକରନ୍ତି । ସେମାନେ ସେହି ଅଞ୍ଚଳରେ ନିୟମିତ ଭାବେ ବୃକ୍ଷର ନିମ୍ନ ଶାଖାମାନଙ୍କରେ କ୍ଳାନ୍ତିହୀନଭାବେ ଡେଣା ଫଡ଼ ଫଡ଼ କରି ଉଡ଼ି ବୁଲୁଥାନ୍ତି ଏବଂ ଶାଖାରୁ ଶାଖାକୁ, ଗଛରୁ ଗଛକୁ ଏକ ଆରେକ ପଛରେ ଘୂରି ଘୂରି ଚକ୍ରାକାର ନୃତ୍ୟ କରି କରି ଯାଉଥାନ୍ତି । ଡାଆଁଶ ଓ ଅନ୍ୟାନ୍ୟ ପତଙ୍ଗ ଉଡ଼ୁଥିଲା ବେଳେ ନାଚୁଣୀ ପକ୍ଷୀ ସେମାନଙ୍କ ପିଚ୍ଛା ନେଇ ତତ୍ପରତା ସହକାରେ ଲଳିତ ଛନ୍ଦରେ ଫାଶ ପକାଇଲା ପରି ଆକାଶରେ ଉଡ଼ି ଉଡ଼ି ଅଣ୍ଟ ସାହାଯ୍ୟରେ ଖଟାଖଟ ଧରି ଉଦରସ୍ଥ କରେ । ସାଧାରଣତଃ ଏହା ଏକ ପ୍ରକାର କର୍କଶ 'ଚୁକ୍‌ଚୁକ୍' ଶବ୍ଦକରେ, କିନ୍ତୁ ଏହାର ଆଉ ପ୍ରକାରେ ଲଳିତ ମନୋହର ସ୍ୱର ଅଛି । ଏହା ଏକ ପ୍ରକାର ସୁସୁରି ଶବ୍ଦ କରେ; ଠଣ ଠଣ ଝଁଣ ଝଁଣ ହେଲପରି, ବିଭିନ୍ନ ସୁରରେ, ଆସ୍ତେ ଆସ୍ତେ ବଢ଼େ ଓ ଆସ୍ତେ ଆସ୍ତେ ଛୁଡ଼େ । ଆନନ୍ଦରେ ନାଚକୁଦ କରୁଥିଲାବେଳେ ଏହି କମ୍ପିତ କୂଜନ ଶୁଣିବାକୁ ମିଳେ । ନାଚୁଣୀର ପ୍ରଧାନ ଖାଦ୍ୟ ମଶା, ଡାଆଁଶ ଓ ବିଭିନ୍ନ ପ୍ରକାର ମାଛି । ନୀଡ଼ ସୁନ୍ଦର, କପ୍ ପରି, ଅନେକ ପରିମାଣରେ ମଦ୍ୟ ଖାଇବା ଗ୍ଲାସ ପରି, ସୂକ୍ଷ୍ମ ଘାସ ଓ ତନ୍ତୁରେ ତିଆରି ହୋଇଥାଏ । ନୀଡ଼ର ବାହାର ପାଖ ନିପୁଣ ଭାବେ ବୁଢ଼ିଆଣୀ ଜାଲଦ୍ୱାରା ଲେସା ହୋଇଥାଏ । ନାଚୁଣୀ ପକ୍ଷୀର ନୀଡ଼ ସୌଭାଗୀ (Iora) ଚଢ଼େଇର ନୀଡ଼ ପରି । ତଫାତ୍ ଏତିକି, ନାଚୁଣୀର ନୀଡ଼ର ତଳପାଖରୁ ଗଛର ବକଲା ଅଧୁରୁଆ ଭାବେ ଝୁଲୁଥାଏ; ମାତ୍ର ସୌଭାଗୀର ନୀଡ଼ ସୁନ୍ଦର ଭାବେ ଗୋଲାକାର, ତଳପଟକୁ କିଛି ଝୁଲି ରହି ନଥାଏ । ଅଳ୍ପ ଉଚ୍ଚ ଗଛ ଡାଳରେ, ବିଶେଷତଃ କଣ୍ଟା ଆମ୍ବ ଓ Chikoo graft ଡାଳରେ

ଭୂମିଠାରୁ ପ୍ରାୟ ଦଶମିଟର ଉଚ୍ଚରେ ଆଙ୍କୁଶୀ ବା ଦୁଇଶାଖାରେ ବିଭକ୍ତ ହୋଇଥିବା ସ୍ଥାନରେ ନୀଡ଼ ରଚିତ ହୋଇଥାଏ ।

ଥରକେ ନାଚୁଣୀ ତିନୋଟି ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ପାଟଳଆଭାଯୁକ୍ତ ହଳଦିଆ-ଧଳା । ସେଥିଁଆଡ଼ ଓସାରିଆ ସେପଟେ ଅଣ୍ଡା ଗୁରିପଟେ ମୁଦ୍ରିକାପରି ବାଦାମୀ ରଙ୍ଗର ସୂକ୍ଷ୍ମ ଚିହ୍ନ ଥାଏ ।

ଆଉ ଜାତିଏ ନାଚୁଣୀ ପକ୍ଷୀ ଅଛନ୍ତି । ସେମାନଙ୍କୁ ଇଂରାଜୀରେ 'ଧଳା ଭ୍ରୂଯୁକ୍ତ-ପଙ୍ଖା ଲଞ୍ଜିଆ-ମକ୍ଷି ଭକ୍ଷୀ' (White browed Fantail Flycatcher) କୁହନ୍ତି । ଆମେ ତାକୁ 'ଧଳାଭୂରୁ ନାଚୁଣୀ' ପକ୍ଷୀ ବୋଲି କହିବା । ଏହାର ବୈଜ୍ଞାନିକ ନାମ ରିପିଡ଼ୁରା ଅରିଅଲା (Rhipidura Aureola) । ଏହାର ଭ୍ରୂ ସ୍ଥାନରେ ଓସାରିଆ ଧଳା ପଟି ପରି ରେଖା ଥାଏ । ପେଟ ପାଖ ଧଳା । ଏହି ପକ୍ଷୀ ଭାରତୀୟ ଉପଦ୍ୱୀପରେ ପ୍ରାୟ ସର୍ବତ୍ର ଏକ ସାଧାରଣ ପକ୍ଷୀ ।

କନକ ଚଢ଼େଇ (ବର୍ଣ୍ଣ ଚିତ୍ର 79)—ଏହାର ଅନ୍ୟ ନାମ ଫିତା ବୁଲବୁଲ ଓ ଧୋବ ଚମ୍ପା । ଇଂରାଜୀ ନାମ 'ନନ୍ଦନ କାନନ ମକ୍ଷି ଭକ୍ଷୀ' (Paradise Flycatcher) । ବୈଜ୍ଞାନିକ ନାମ 'ଟେରପ୍‌ସି ଫୋନ ପାରାଡ଼ିସି' (Terpsiphone paradisi) । ହିନ୍ଦି ନାମ—ସାହି ବୁଲ ବୁଲ, ଦୁଧ୍‌ରାଜ । ପତ୍ରାପରି ଏହି ସୁନ୍ଦର ପକ୍ଷୀକୁ ଦେଖିଲେ ବାସ୍ତବିକ ଆନନ୍ଦ ଲାଗେ । ଏହାର ଆକାର ପ୍ରାୟ ଗୋବରା ଚଢ଼େଇ ପରି, ଅବଶ୍ୟ ରିବନ୍‌ପରି ଲଞ୍ଜକୁ ନ ମିଶାଇ । ଲଞ୍ଜ ପ୍ରାୟ 25ରୁ 30 ସେଣ୍ଟି-ମିଟର ଲମ୍ବ ହୋଇଥାଏ । ପ୍ରାପ୍ତବୟସ୍କ ଅଣ୍ଡିରା ଚଢ଼େଇ ରୁପାପରି ଧଳା । ତା'ର ଲଞ୍ଜରେ ଦୁଇଟି ଫିତାପରି ପର ପ୍ରସାରିତହୋଇ ରହିଥାଏ । ଏହାକୁ 'ଲମ୍ବା ଅଣ-ଓସାରିଆ ପତାକା' ('streamer') ବୋଲି କହନ୍ତି । ମୁଣ୍ଡ ଚକଚକିଆ ନୀଳ କଳା । ମୁଣ୍ଡରେ ସେହି ରଙ୍ଗର ଚୂଳ ମଧ୍ୟ ଥାଏ । ମାଈ ଓ ଅପ୍ରାପ୍ତ ବୟସ୍କ ଅଣ୍ଡିରାର ପିଠି ପାଖ ଲାଲବାଦାମୀ । ପେଟ ପାଖ ଧୂସରିଆ ଧଳା । ସେମାନଙ୍କର ମୁଣ୍ଡ କଳା । ମୁଣ୍ଡରେ ଚୂଳ ଥାଏ । ତାହା ମଧ୍ୟ କଳା । ଅପ୍ରାପ୍ତ ବୟସ୍କ ଅଣ୍ଡିରାର ଲଞ୍ଜରେ ଲାଲ ବାଦାମୀ ରଙ୍ଗର 'ଲମ୍ବା ଅଣ ଓସାରିଆ ପତାକା' ଥାଏ । ମାଈର ଏହି ପତାକା ନଥାଏ ଓ ଅନେକ ପରିମାଣରେ ଗୋବରା ଚଢ଼େଇ ପରି । ଏହି ମନୋହର ପକ୍ଷୀଟି ଇଂରାଜୀରେ ଅନେକ ଗୁଡ଼ିଏ ନାମରେ ପରିଚିତ । ଯଥା—'ରକେଟ ପକ୍ଷୀ' (Rocket bird), 'ପ୍ରୋଷିତଭର୍ତ୍ତୃକା ପକ୍ଷୀ' (Widow bird) ଓ 'ରିବନ ପକ୍ଷୀ' (Ribbon bird) । କନକ ଚଢ଼େଇ ଗୁଳ୍ମାବହୁଳ କୁଞ୍ଜ, ଉଦ୍ୟାନ ଏବଂ ବାଉଁଶ ଗଛ, ଶୃଙ୍ଖଳ

ନାଳଥିବା ଓ ପ୍ରଚୁର ବର୍ଷ ପତ୍ରଝଡ଼ା ଦେଉଥିବା ପତଳା ଜଙ୍ଗଲ ଅଞ୍ଚଳରେ ଦେଖିବାକୁ ମିଳେ । ସାଧାରଣତଃ ସେମାନେ ଯୋଡ଼ି ଯୋଡ଼ି ହୋଇ ବାସ କରନ୍ତି ନଚେତ୍ ଅନ୍ୟ ପତଙ୍ଗଭୋଜୀ ପକ୍ଷୀମାନଙ୍କ ସହିତ କୀଟ ଶିକାର ଦଳରେ ଯୋଗଦେଇ ବିଚରଣ କରନ୍ତି । ଅଣ୍ଡିରି ପକ୍ଷୀ ପକ୍ଷଯୁକ୍ତ କୀଟମାନଙ୍କୁ ଧରିବା ପାଇଁ ତାଙ୍କ ପିଚ୍ଛ ଚଞ୍ଚଳ ଗତିରେ ନମନୀୟ ଭାବେ ଘୂରି ବାଙ୍କି ଉପରତଳ ହୋଇ ଲୁପ୍ ଢଅାର କରି ଗତି କଲାବେଳେ, ତା'ର ଲାଞ୍ଜରେ ଥିବା ଶବନ ପରି ପକ୍ଷ ଗୁଚ୍ଛକର ରଙ୍କ ଦୋଳାୟିତ ହେଲାପରି ଦୋଳାୟିତ ହୁଏ । ସେ ମନୋହର ଦୃଶ୍ୟ ଯେ ଥରେ ଦେଖିଛି, ସେ କେବେହେଲେ ତାହା ଭୁଲିପାରିବ ନାହିଁ ; ଏଭଳି ଚମତ୍କାର ପକ୍ଷୀ ଗାଇପାରୁଥିବ ବୋଲି ଆଶା କରିବା କଥା; ମାତ୍ର ଏହା ଗୀତ ଗାଇପାରେ ନାହିଁ । ଏହାର ଏକମାତ୍ର ଡାକ ହେଲା ଏକ ପ୍ରକାର ସ୍ଫୂର୍ତ୍ତି ଯୁକ୍ତ ମାତ୍ର କର୍କଶ ଓ ବିରକ୍ତିକର "ଚି" ବା "ଚି-ଚ୍ୟୁଇ" । ପ୍ରଜନନ ଋତୁରେ ଏହି ସବୁ ସାଙ୍ଗକୁ ଉଭୟ ଅଣ୍ଡିରି ଓ ମାଈ ପକ୍ଷୀ ନାନାପ୍ରକାର ପ୍ରୀତିକର ସୁଶ୍ରାବ୍ୟ କୂଜନ କରନ୍ତି । ଏହା ସଙ୍ଗୀତମୟ ଶବ୍ଦ ଉଚ୍ଚାରଣ ପାଇଁ ନିକଟତମ ପ୍ରଚେଷ୍ଟା ବୋଲିବାକୁ ହେବ । ଏମାନଙ୍କର ପ୍ରଧାନ ଖାଦ୍ୟ ମାଚ୍ଛି, ଡାଆଁଶ (Gnat), ମଥ୍ ଆଦି କୀଟ । ସାଧାରଣତଃ ଏମାନେ ଉଡ଼ି ଉଡ଼ି ପତଙ୍ଗ ଶିକାର କରନ୍ତି । କନକ ଚଢ଼େଇ ଭାରତୀୟ ଉପଦ୍ୱୀପର ଅନେକ ଅଞ୍ଚଳରେ ନୀଡ଼ ରଚନା କରେ; ମାତ୍ର କାଶ୍ମୀର ଉପତ୍ୟକାରେ ଏହା ଏକ ସାଧାରଣ ପକ୍ଷୀ । ଏଠାକୁ ପ୍ରକୃତିର ମନୋମୁଗ୍ଧତା ଉପଭୋଗ କରିବାକୁ ଆସୁଥିବା ଭ୍ରମଣକାରୀମାନଙ୍କ ପାଇଁ ଏହା ଆଉ ଏକ ଆକର୍ଷଣୀୟ ବସ୍ତୁ । କନକ ପକ୍ଷୀର ନୀଡ଼ କପ୍‌ଭଳି । ସୂକ୍ଷ୍ମ ଘାସ ଓ ତୁଆରେ ଘନ ସନ୍ନିବିଷ୍ଟ ଭାବେ ବୁଣା ହୋଇଥାଏ । ନୀଡ଼ର ବାହାର ପାଖ ବୁଢ଼ିଆଣୀର ଜାଲ ଓ ଅଣ୍ଡା ଖୋଳପାଦ୍ୱାରା ଲେପା ହୋଇଥାଏ । ଯେଉଁଠି ଡାଳ ଦ୍ୱିଶାଖ ହୋଇ ଆଙ୍କୁଡ଼ି ପରି ହୋଇଥାଏ ସେଠାରେ ନୀଡ଼ ରଚିତ ହୁଏ । ଏପରି ଡାଳ ସାଧାରଣତଃ ତଳୁ ଦୁଇରୁ ପାଞ୍ଚ ମିଟର ଉଚ୍ଚରେ ରହିଥାଏ । କନକ ଚଢ଼େଇ ସାଧାରଣତଃ ତିନୋଟିରୁ ପାଞ୍ଚଟିଯାଏ ଅଣ୍ଡାଦିଏ । ଅଣ୍ଡାର ବର୍ଣ୍ଣ ମଳିନ ହଳଦିଆ ଧଳା । ତା' ଉପରେ ଲାଲ ଆସିଆ ବାଦାମି ରଙ୍ଗର ଛିଟା ଓ ଗୁପଗୁପିଆ ଦାଗ ପଡ଼ିଥାଏ ।

କୁଣ୍ଡାଖାଇ (Babbler) ଓ ସେମାନଙ୍କର ଜ୍ଞାତିମାନେ ବିଭିନ୍ନ ପ୍ରକାର ପକ୍ଷୀ-ମାନଙ୍କର ଏକ ସମ୍ମିଶ୍ରଣ ମାତ୍ର । ସେମାନଙ୍କ ମଧ୍ୟରେ କେତେକ ଶ୍ରେଷ୍ଠ ଓ କେତେକ ମଧ୍ୟମ ଆକାରର ହୁଅନ୍ତି । କେତେକ ସାଦା ବାଦାମି ବର୍ଣ୍ଣର ଓ କେତେକଙ୍କର ବର୍ଣ୍ଣ ଉଜ୍ଜ୍ୱଳ । ଏମାନେ ଦଳ ଦଳ ହୋଇ ଦେଖାଯାନ୍ତି । ଏହି ପକ୍ଷୀମାନେ "ହିମାଳୀୟ"

(Timaliinae) ଉପଶ୍ରେଣୀ ଅନ୍ତର୍ଭୁକ୍ତ । ନିମ୍ନରେ ଏହି ଉପଶ୍ରେଣୀଭୁକ୍ତ କେତୋଟି ସାଧାରଣ ଓ ପରିଚିତ ପକ୍ଷୀମାନଙ୍କର ବିବରଣୀ ଦିଆଗଲା ।

ହଳଦିଆଆଖିଆ କୁଣ୍ଡାଖାଇ (Yellow-eyed Babbler) (ବର୍ଣ୍ଣଚିତ୍ର 80) —ଏହାର ବୈଜ୍ଞାନିକ ନାମ "କ୍ରାଇସୋମା ସାଇନେନ୍‌ସିସ" (Chrysoma sinensis) । ହିନ୍ଦି ନାମ—ଗୁଲାଲ ଚସ୍‌ମ୍ । ଏହା ଗୋବରା ଚଢ଼େଇଠାରୁ ଅଳ୍ପ କ୍ଷୁଦ୍ର, ଲାଞ୍ଜ ଲମ୍ବା । ଏ ପକ୍ଷୀଟି ଘାସ ଓ ସାନ ସାନ ବୁଦା ଥାଇ ଥିବା ଜଙ୍ଗଲ ଓ ଗୁଳ୍ମପୂର୍ଣ୍ଣ ଉଦ୍ୟାନରେ ବାସକରେ । ଏହାର ପିଠି ପାଖର ବର୍ଣ୍ଣ ତାମ୍ରଚନ୍ଦନ-ବାଦାମି ରଙ୍ଗର, ପେଟ ପାଖ ଧଳା । ଆଖି ହଳଦିଆ । ଆଖି ଚାରି ପାଖର ଅଂଶ ସ୍ପଷ୍ଟ କମଳାଲେମ୍ବୁ ପରି ହଳଦିଆ, ଅନ୍ୟ କୁଣ୍ଡାଖାଇ ପକ୍ଷୀମାନଙ୍କ ପରି ହଳଦିଆଆଖିଆ କୁଣ୍ଡାଖାଇ ସାଧାରଣତଃ କ୍ଷୁଦ୍ର କ୍ଷୁଦ୍ର ଦଳରେ ବିଭକ୍ତ ହୋଇ କଣ୍ଟାବୁଦା, ଝାଟି ଓ ଉଚ୍ଚ ଘାସ ଜଙ୍ଗଲ ବା ଚାଷ ଜମି ଓ ବନ୍ଧ ମଧ୍ୟରେ ଥିବା ରୁକ୍ଷ ବୁଦବୁଦିଆ ତୃଣ ପରିପୂର୍ଣ୍ଣ ଅଞ୍ଚଳରେ ଖାଦ୍ୟ ଅନ୍ୱେଷଣ କରୁଥିବାର ଦେଖାଯାନ୍ତି । ପ୍ରତି ଦଳରେ 5ରୁ 7ଟି ଯାଏ ପକ୍ଷୀ ଥାନ୍ତି । ବୁଦାପୂର୍ଣ୍ଣ ଅଞ୍ଚଳରେ ସେମାନେ କୀଟପତଙ୍ଗ ଖୋଜନ୍ତି । ଏ ସମୟରେ ସେମାନେ ଘାସର ଡେମ୍ଫ ଉପରେ ଚଢ଼ିଥାନ୍ତି । ସେମାନଙ୍କ ଭାରରେ ଡେମ୍ଫ ନଇଁଗଲେ ତାକୁ କଡ଼ କଥା ଜାବୁଡ଼ି ଧରନ୍ତି ଓ ଗଙ୍ଗା ଚଢ଼େଇ (Tit) ପରି ଏକେବାରେ ଓଲଟା-ବାଗିଆ ଧରି ରହିଥାନ୍ତି । ଆସ୍ତେ ଆସ୍ତେ ବା ଗୋପନରେ ପଳାଇ ଯିବାରେ ସେମାନେ ବେଶ୍ ଧୁରନ୍ଧର । ଭୟର ସୂଚନା ପାଇଲେ ହଳଦିଆଆଖିଆ କୁଣ୍ଡାଖାଇ ଗୋଟିଏ ବୁଦାରୁ ଆଉ ଗୋଟିଏ ବୁଦାକୁ ଡେଇଁ ଡେଇଁ ଯାଇ ଛୋଟ ଛୋଟ ଗଛ ଓ ଗୁଳ୍ମମଧ୍ୟରେ ଲୁଚିଯାଏ । ଏତେବେଳେ ସେମାନେ ଏକପ୍ରକାର ଚପା କର୍କଶ ଉଦ୍‌ବେଗପୂର୍ଣ୍ଣ ଶବ୍ଦ କରନ୍ତି । ସେମାନଙ୍କର ସାଧାରଣ ଡାକ ସ୍ପଷ୍ଟ, ଉଚ୍ଚ ଓ ଏକପ୍ରକାର ଶୋକାବହ ବା ଖେଦପୂର୍ଣ୍ଣ "ଚପ୍-ଚପ୍ ଚପ୍" । ପ୍ରଜନନ ଋତୁରେ ଅଣ୍ଡିରା ପକ୍ଷୀ କୌଣସି ଖୋଲା ଜାଗା ଯଥା ବୁଦାର ଉପର ଅଂଶ ବା ଘାସ ଡେମ୍ଫର ଉପର ଅଂଶରେ ବସି ଉଚ୍ଚ ସ୍ୱରରେ ସୁନ୍ଦର କଚରମିଚର ଶବ୍ଦ କରେ । ମାଙ୍କଡ଼ସା, ଝିଣ୍ଟିକା ଓ ଅନ୍ୟାନ୍ୟ କୀଟପତଙ୍ଗ ଏମାନଙ୍କର ପ୍ରଧାନ ଆହାର । ସେମାନଙ୍କର ଅଧିକାଂଶ ଜ୍ଞାତିମାନଙ୍କ ପରି ହଳଦିଆଆଖିଆ କୁଣ୍ଡାଖାଇ ଫୁଲର ମଧୁ ଖାଇବାକୁ ଭଲ ପାଏ । ଏମାନେ ନିୟମିତ ଭାବେ ଉଜ୍ଜ୍ୱଳ ଫୁଲ ଯଥା ଶିମିଳି (Silk cotton tree) ଓ ପାଳଧୁଆ (coral) ଗଛର ଫୁଲରୁ ମଧୁ ଖାନ୍ତି । ହଳଦିଆଆଖିଆ କୁଣ୍ଡାଖାଇର ନୀଡ଼ ଏକ ଗହୀରିଆ କପ୍ ପରି । ଏହା ରୁକ୍ଷ ଘାସରେ ତିଆରି ହୋଇଥାଏ । ଭିତର ପାଖରେ ସୂକ୍ଷ୍ମ ଘାସ ଥାଏ ଓ ବାହାର ପାଖ

ବୃକ୍ଷଆଣୀ ଜାଲରେ ଭଲ ରକମ ଲେସା ହୋଇଥାଏ । ବସାର ଆକୃତି ପର ଅଂଶରେ ଶୀତ ରହିଥାଏ । ତା' ନହେଲେ ଦୁଇ ଘାସ ଡେମ୍ଫ ମଝିରେ ବା ମୌସୁମୀ ବର୍ଷା ବେଳେ ଉଠିଥିବା ଗଛ ମଝିରେ ନାବକମାନଙ୍କର ଦୋଦୁଲମାନ ଶଯ୍ୟାପରି ଝୁଲିଥାଏ । ଏସବୁ ସାଧାରଣତଃ ଭୂମିଠାରୁ ଦୁଇମିଟରରୁ ଅଧିକ ଉଚ୍ଚରେ ନଥାଏ । ଏହି ପକ୍ଷୀମାନେ ଥରକେ 4ଟିରୁ 5ଟି ଯାଏ ଅଣ୍ଡା ଦିଅନ୍ତି, ଅଣ୍ଡାର ବର୍ଣ୍ଣ ହଳଦିଆ ଧଳା । ତା' ଉପରେ ବାଇଗଣି ରଙ୍ଗର ସୂକ୍ଷ୍ମ ଛୁଟା ଚିହ୍ନ ପଡ଼ିଥାଏ ।

**ସାତଭଉଣୀ ବା କୁଣ୍ଡାଖାଇ** (ବର୍ଣ୍ଣ ଚିତ୍ର 81)—ଏହାକୁ ଇଂରେଜୀରେ "ଜଙ୍ଗଲ କୁଣ୍ଡାଖାଇ" (Jungle babbler) କହନ୍ତି । ବୈଜ୍ଞାନିକ ନାମ "ଟୁରଡ଼ଇଡ଼େସ୍ ଷ୍ଟ୍ରିଏଟାସ" (Turdoides striatus) । ହିନ୍ଦି ନାମ—ସାତ୍ ଭାଇ, ଘୋଘାଇ । ଏହା ମାଟି ପରି ମାଟିଆ ରଙ୍ଗର, ଦେହ ଉପର ରୁକ୍ଷ ଓ ବିଶୃଙ୍ଖଳ । ଦେଖିବାକୁ ଅସୁନ୍ଦର ଓ ଦଣି ଚଢ଼େଇଠାରୁ ଅଳ୍ପ ସାନ । ଲାଞ୍ଜ ଲମ୍ବା ଓ ମନେହୁଏ ଯେପରିକି ଲାଞ୍ଜ ପର ଗୁଡ଼ିକୁ କିଏ ପଛପଟେ ଗୁଞ୍ଜି ଦେଇଛି । ଏମାନେ ଦଳ ଦଳ ହୋଇ ଦେଖାଯାନ୍ତି । ଗୋଟିଏ ଦଳରେ ଛଅ ବା ସେହିପରି ପକ୍ଷୀ ଥାନ୍ତି । ସେଥିପାଇଁ ଏହି ପକ୍ଷୀର ନାମ ଇଂରେଜୀରେ 'ସାତ ଭଉଣୀ' ('Seven sisters'), ହିନ୍ଦୀରେ ସାତ ଭାଇ ଓ ଓଡ଼ିଆରେ ସାତଭାୟା ହୋଇଅଛି । ସାତଭାୟା ଜଙ୍ଗଲର ଉପାନ୍ତ ଅଞ୍ଚଳ, ଘନ ଜଙ୍ଗଲ, ସହର ଓ ଗ୍ରାମର ନିକୁଞ୍ଜ ଓ ହତା (କମ୍ପାଉଣ୍ଡ)ମାନଙ୍କରେ ଦେଖାଯାନ୍ତି । ଏମାନେ ଦଳ ଦଳ ହୋଇ ତଳେ ତଳେ ପଡ଼ିଥିବା ପତ୍ରତଳେ କୀଟପତଙ୍ଗମାନଙ୍କୁ ତନ୍ନ ତନ୍ନ କରି ଖୋଜିବାରେ ଲାଗିଥାନ୍ତି । ଜଙ୍ଗଲରେ କୀଟଭୋଜୀ ପକ୍ଷୀମାନେ ମିଶି ଦଳବାନ୍ଧି ଶିକାରରେ ବାହାରିଥିଲେ ତା' ଭିତରେ ସାତଭାୟା ପକ୍ଷୀ ନିଶ୍ଚୟ ଥିବେ ଓ ମୁଖ୍ୟ ଅଂଶ ନେଇଥିବାର ଆପଣ ଦେଖିବାକୁ ପାଇବେ । ସାତଭାୟା ପକ୍ଷୀମାନେ ନିଜ ନିଜ ଭିତରେ କଥାହେଲା ପରି ଅବିରତ କର୍କଶ ସ୍ୱରରେ ତୀବ୍ର ଚିତ୍କାର କରନ୍ତି ଓ ସେମାନଙ୍କ ମଧ୍ୟରେ ସହଯୋଗ ସବୁଠାରୁ ଅଧିକ ଦେଖିବାକୁ ମିଳେ । ଅବଶ୍ୟ ବେଳେବେଳେ ସେମାନଙ୍କ ମଧ୍ୟରେ ମତାନୈକ୍ୟ ହୁଏ । ଫଳରେ ଉଚ୍ଚ ସ୍ୱରରେ ବିତଣ୍ଡା ଓ ତା'ପରେ ନଖ ଓ ଥଣ୍ଟଦ୍ୱାରା ହାତାହାତି ଆରମ୍ଭ ହୋଇଯାଏ । ଏ ଧସ୍ତାଧସ୍ତିରେ ପର ଛିଣ୍ଡି ଏଣେତେଣେ ଉଡ଼େ । ତା'ପରେ ଅବସ୍ଥା ଶାନ୍ତ ପଡ଼େ । ଅବଶ୍ୟ ଏଭଳି କଳହ ବେଶି ହୁଏନାହିଁ, ହେଲେ ଅଳ୍ପ ସମୟ ଭିତରେ ସବୁ ମିଟମାଟ ହୋଇଯାଏ । ବହିଃ ଶତ୍ରୁ ଦ୍ୱାରା ବିପଦ ଆସିଲେ ସାତଭାୟା ଦଳ ଏକାଠି ସଙ୍ଘବଦ୍ଧ ହୋଇ ତାର ମୁକାବିଲା କରନ୍ତି । ବିଲେଇ ବା ବାଜ-ପକ୍ଷୀ (Hawk) ଗୋଟିଏ ପକ୍ଷୀ ପିଲା ଧଇଲେ, ଦଳର ଅନ୍ୟମାନେ ଏକଜୁଟ ହୋଇ

ତା'ର ସାହା ହୁଅନ୍ତି ଏବଂ ଦାମ୍ଭିକତା ଓ ସ୍ଥିର ସଙ୍କଳ୍ପତା ସହ ଆଗଭର ହୋଇ ଉଚ୍ଚ ସ୍ୱରରେ ଚିତ୍କାର କରନ୍ତି । ଶେଷରେ ଲୁଣ୍ଠନକାରୀ ପଳାଇଯାଏ । ଗୁଡ଼ିଆଣୀ, ଅସରପା, ମଥ (moth), ଅନ୍ୟ କୀଟପତଙ୍ଗ ଓ ସେସବୁର ଶୂକ ଏମାନଙ୍କର ପ୍ରଧାନ ଆହାର । ବର ଓ ଓସ୍ତ ଗଛର ଫଳ, ନାଗଫେଣ୍ଟ ଓ ଅନ୍ୟାନ୍ୟ ଗଛର ଫଳ, ମଞ୍ଜି, ବୀଜ ଇତ୍ୟାଦି ମଧ୍ୟ ଏମାନେ ଖାନ୍ତି । ଶିମିଳି ଓ ପାଲଧୁଆ ଗଛର ଫୁଲରୁ ମଧୁ ଖାଇବାକୁ ଏମାନେ ଅତ୍ୟନ୍ତ ଭଲପାନ୍ତି । ଏଣୁ ଏହି ଗଛମାନଙ୍କରେ ପର-ପରାଗ ସଙ୍ଗମରେ ବିଶେଷ ସହାୟତା କରନ୍ତି । ଏମାନେ ପତ୍ରଥିବା ଗଛର ଦୁଇଶାଖା ବାହାରିଥିବା ମଧ୍ୟବର୍ତ୍ତୀ ସ୍ଥାନରେ ନୀଡ଼ ରଚନା କରନ୍ତି । ଏହା କପ୍ ଭଳି ଚିକ୍କଣଭାବେ କାଠି ଓ ଚେରମୂଳରେ ତିଆରି ହୋଇଥାଏ । ନୀଡ଼ ସାଧାରଣତଃ ଭୂମିଠାରୁ 3ରୁ 5ମିଟର ଉଚ୍ଚରେ ରହିଥାଏ । ଥରକେ ତିନି ଚାରିଟି ଅଣ୍ଡା ଦିଅନ୍ତି । ଅଣ୍ଡା ଦେଖିବାକୁ ନୀଳମଣି ପରି ସୁନ୍ଦର ନୀଳ ରଙ୍ଗର । ପିତାମାତାଙ୍କ ବ୍ୟତୀତ 'ଭ୍ରାତୃସଙ୍ଘ'ର ଅନ୍ୟମାନେ ନୀଡ଼ ରଚନା ଓ ଶାବକମାନଙ୍କୁ ଆହାର ଦେବା ଇତ୍ୟାଦି କାର୍ଯ୍ୟରେ ଅନେକ ସମୟରେ ଆସି ସହଯୋଗ କରିବାର ଦେଖାଯାଏ । ଏହା ସାଧାରଣ ପ୍ରଥା ହୋଇଥାଇପାରେ । ସାତଭାଇ ପକ୍ଷୀର ନୀଡ଼ରେ ପାପିହା ଚୂଡ଼କ (Pied crested cuckoo) ଓ ପାପିହା (Hawk cuckoo) ପକ୍ଷୀ ଅଣ୍ଡା ଦିଅନ୍ତି । ଏମାନଙ୍କର ଅଣ୍ଡା ମଧ୍ୟ ନୀଳମଣି ପରି ନୀଳ ।

ଚଲଚଲ୍ (ବର୍ଣ୍ଣ ଚିତ୍ର 82)—ସାତଭାଇ ପକ୍ଷୀ ସମଷ୍ଟିର ଆଉ ଗୋଟିଏ ସାଧାରଣ ପକ୍ଷୀ ହେଲି ଚଲ୍ ଚଲ୍ । ଏହାର ଇଂରାଜୀ ନାମ "ସାଧାରଣ ସାତଭାଇ" (Common babbler) । ବୈଜ୍ଞାନିକ ନାମ 'ଟର୍ଡୋଇଡ଼େସ କଡ଼ାଟାସ' (Turdoides caudatus) । ହିନ୍ଦି ନାମ—ଡୁମରି, ଚଲଚଲ୍ । ଏହା ଆକାରରେ ଗୋବରି ଚଢ଼େଇ ପରି ହେବ, ମାତ୍ର ଏହାର ଲାଞ୍ଜ ଲମ୍ବା । ସାତଭାଇଠାରୁ ଏହା କୃଶ । ସାତଭାଇ ପକ୍ଷୀପରି ଚଲ୍ଚଲ ଏକାଠି ଛଅଟି ବା ସେହିପରି ଦଳରେ ବିଭକ୍ତ ହୋଇ କଣ୍ଟାଳିଆ ବୁଦାମୂଳେ ଭୂମିରେ ଖାଦ୍ୟ ଅନ୍ୱେଷଣ କରିବାର ଦେଖାଯାନ୍ତି । ଏହାର ପିଠିର ବର୍ଣ୍ଣ ମାଟିପରି ବାଦାମୀ ଓ ତା' ଉପରେ ଘନରେଖା ଚିହ୍ନ ପଡ଼ିଥାଏ । ଲାଞ୍ଜ ଲମ୍ବା ଓ ପରଗୁଡ଼ିକ ଢ଼ିଲାଭାବେ ଲଗିଥିବା ପରି ମନେହୁଏ । ତା' ଉପରେ ଆଡ଼ବାଗରେ ସୂକ୍ଷ୍ମ ଗାଢ଼ ରେଖା ଚିହ୍ନଥାଏ । ଦଳ ଦଳ ଚଲ୍ଚଲ ଅଧିକାଂଶ ସମୟ ମୂଷା ପରି ଭୂମି ଉପରେ ଗଛଲତାର ବାଡ଼, କଣ୍ଟା ଗଛର ବୁଦାଝାଟି, ବଣ ଭିତରେ ଦ୍ରୁତପଦକ୍ଷେପରେ ରହି ରହି, ଡେଇଁ ବୁଲି କୀଟପତଙ୍ଗ ଓ ସେମାନଙ୍କର ଶୂକ ଖୋଜିବାରେ କଟାନ୍ତି । ସେମାନେ ଉଡ଼ିବାକୁ ପରାଙ୍ମୁଖତା ପ୍ରକାଶ କରନ୍ତି ଓ ଭୟଭୀତ

ହେଲେ ଖସି ପଳାଇବାକୁ ବା ଏ ବୁଦାରୁ ସେ ବୁଦାକୁ ଯିବାପାଇଁ ସେମାନଙ୍କର କ୍ଷିପ୍ର ପଦ ଉପରେ ନିର୍ଭର କରନ୍ତି । ସେମାନଙ୍କର ଉଡ଼୍ଡୟନ ଦୁର୍ବଳ । ଗୋଲକାର ପକ୍ଷକୁ କେତେଥର ଦ୍ରୁତବେଗରେ ସଞ୍ଚାଳନକରି ତା'ପରେ ବିସ୍ତାରିତ ପକ୍ଷ ଓ ଲାଞ୍ଜ ସାହାଯ୍ୟରେ ପବନରେ ଭାସି ଭାସି (ଗ୍ଲାଇଡ଼୍) ଗତିକରନ୍ତି । ବିଲେଇ ବା ସାପ ଦେଖି ଉତ୍ତେଜିତ ହେଲେ ସେମାନେ ସ୍ନାୟବିକ ଦୁର୍ବଳତା ସହ ପକ୍ଷ ଓ ଲାଞ୍ଜକୁ ଟାଣିଲପରି ଦୋହଲାଇ ଏବୁଦାରୁ ସେବୁଦାକୁ ଡେଇଁ ଡେଇଁ ଏକ ପ୍ରକାର ସଙ୍ଗୀତମୟ ସୁସୁରିପରି ହୁଇଚ୍-ହୁଇଚ୍-ହୁଇଚ୍ ଟ୍-ରି-ରି-ରି-ରି-ରି···ଶବ୍ଦ କରନ୍ତି । ଏତେବେଳେ ଦଳର ସମସ୍ତେ ଏକଜୁଟ ହୋଇ ଉଚ୍ଚ ସ୍ୱରରେ ବିଶୃଙ୍ଖଳ ଭାବେ ଶବ୍ଦ କରନ୍ତି ଓ ବୁଦାରୁ ବୁଦାକୁ ଡେଇଁଲାବେଳେ ଅନୁପ୍ରବେଶକାରୀ କେଉଁବାଟେ ଯାଉଛି, ଅନାଇ ଦେଖୁଥାନ୍ତି । ମାଙ୍କଡ଼ସା, କୀଟପତଙ୍ଗ, ସାନ ସାନ କୋଳ, ମଞ୍ଜି, ଶସ୍ୟ ବୀଜ ଓ ଫୁଲର ମଧୁ ଚଲ୍‌ଚଲ୍ ମାନଙ୍କର ପ୍ରଧାନଖାଦ୍ୟ । ଅଳ୍ପ ଉଚ୍ଚ କଣ୍ଟାଳିଆ ବୁଦାରେ ଏମାନେ ସଫାସୁତରା ନୀଡ଼ ରଚନା କରନ୍ତି । ତାହା କପ୍ ପରି ସୁନ୍ଦର, ଚେର ଓ କାଠିରେ ତିଆରି ହୋଇଥାଏ ଏବଂ ଭୂମିଠାରୁ ସାଧାରଣତଃ ଦୁଇ ମିଟରରୁ ଅଧିକ ଉଚ୍ଚରେ ରହିନଥାଏ । ସାଧାରଣତଃ ତିନୋଟିରୁ ଚାରୋଟି ଅଣ୍ଡା ଦିଅନ୍ତି । ତାହା ସାତଭାୟା ଓ ଭଇନା (Large Grey babbler) ପକ୍ଷୀର ଅଣ୍ଡା ପରି ଚକ୍‌କଣ, ନୀଳମଣି ପରି ନୀଳ । ପାପିହା ଗୃଢକ (Pied crested Cuckoo) ଓ ପାପିହା (Hawk Cuckoo) ପକ୍ଷୀ ଚଲ୍‌ଚଲ୍ ବସାରେ ଅଣ୍ଡା ଦିଅନ୍ତି । ଏହି କୋଇଲି ଜାତୀୟ ପକ୍ଷୀମାନଙ୍କର ଅଣ୍ଡା ମଧ୍ୟ ନୀଳମଣି ପରି ଚକ୍‌କଣ ନୀଳ ।

**ଭଇନା**—ଏହି ପକ୍ଷୀଟି ଚଲ୍ ଚଲ୍ ପକ୍ଷୀର ଜ୍ଞାତି । ଏହାର ଇଂରେଜୀ ନାମ 'ବୃହତ୍ ଧୂସର ସାତଭାୟା' (Large Grey babbler) । ବୈଜ୍ଞାନିକ ନାମ 'ଟୁର୍ ଡେଇଡ଼େସ ମାଲ୍‌କଲ୍‌ମି' (Turdeides malcalmi) । ଏହାର ବର୍ଣ୍ଣ ଚଲ୍‌ଚଲ୍‌ଠାରୁ ଅଧିକ ଧୂସର ବାଦାମି । ଲଲାଟ ପ୍ରଦେଶ ଧୂସର । ବାହାରଆଡ଼କୁ ଥିବା ଲାଞ୍ଜ ଧଳା । ଉଡ଼ୁଥିବା ସମୟରେ ଲାଞ୍ଜ ପ୍ରସାରିତ ହୋଇ ରହିଥିବାରୁ ପରର ଧଳା ଅଂଶ ସ୍ପଷ୍ଟ ଦେଖାଯାଏ । ଭାରତୀୟ ଉପଦ୍ୱୀପର ଶୁଷ୍କ ଅଞ୍ଚଳରେ ଭଇନା ଏକ ସାଧାରଣ ପକ୍ଷୀ । ବିଶେଷକରି ଦାକ୍ଷିଣାତ୍ୟ ଉପତ୍ୟକା (Deccan plateau)ରେ ଏହି ପକ୍ଷୀ ବେଶି ସଂଖ୍ୟାରେ ଦେଖାଯାଏ ।

ଟିକି ଚଢ଼େଇ (Warbler) ମାନେ ସାଧାରଣତଃ କ୍ଷୁଦ୍ର ପକ୍ଷୀ । ଏମାନଙ୍କର ବର୍ଣ୍ଣ ସେତେ ଚକଚକିଆ ନୁହେଁ । ଏମାନେ ଆକାରରେ ଘରଚଟିଆଠାରୁ ସାନ ହୁଅନ୍ତି । ଟିକି ଚଢ଼େଇ ଅନ୍ୟ ପକ୍ଷୀ ସମଷ୍ଟିଠାରୁ କେଉଁ କେଉଁ ବିଶେଷ ଗୁଣ ଯୋଗୁ ଭିନ୍ନ ତାହା

ବର୍ଣ୍ଣନା କରିବା କଷ୍ଟକର । ଅନେକ ଟିକି ଚଢ଼େଇ ଆବାସିକ; ପୁଣି ଅନେକ ପ୍ରବାସୀ । ଟିକି ଚଢ଼େଇ ସିଲଭିନଡ଼ି (Slyviinidae) ପକ୍ଷୀବଂଶ ଅନ୍ତର୍ଭୁକ୍ତ । ନିମ୍ନଲିଖିତ ପକ୍ଷୀଗୁଡ଼ିକୁ ସେ ବଂଶର ସାଧାରଣ ପ୍ରତିନିଧି ରୂପେ ଗ୍ରହଣ କରାଯାଇ ପାରେ ।

ଟିକି ଚଢ଼େଇ (ବର୍ଣ୍ଣ ଚିତ୍ର 43)—ଇଂରାଜୀ ନାମ 'ପାଉଁଶିଆ ରେନ୍-ଓ୍ୱାରବଲର' (Ashy wren-warbler) । ଏହାର ହିନ୍ଦୀ ନାମ ଫୁଟକି (ହିନ୍ଦିରେ ଅଧିକାଂଶ ଓ୍ୱାରବଲର ଚଢ଼େଇଙ୍କୁ ଫୁଟ୍‌କି ବୋଲି କହନ୍ତି) । ଏହାର ପିଠି ପାଖ ପାଉଁଶିଆ ଶିଲଟ ରଙ୍ଗର, ପେଟ ପାଖ ଫିକା ହଳଦିଆ ଧଳା । ଲାଞ୍ଜ ଢିଲ, ଲମ୍ବା, ଅଂଶାଙ୍କିତ (କ୍ରମଚିହ୍ନିତ—graduated) ଏବଂ ଅଗ୍ରଭାଗ କଳା ଧଳା ଚିହ୍ନିତ । ଲାଞ୍ଜ ଉପରଆଡ଼କୁ ଟେରଚ୍ଛା ହୋଇ ରହିଥାଏ ଓ ମୁହୂର୍ମୁହୂଃ ଉପର ତଳ ଆନ୍ଦୋଳିତ ହେଉଥାଏ । ଶୀତଋତୁରେ ଟିକି ଚଢ଼େଇର ପରର ବର୍ଣ୍ଣ ବାଦାମିଆସିଆ ହୋଇଥାଏ; ଅର୍ଥାତ୍ ପାଉଁଶିଆ ଅଂଶ କମିଯାଏ । ବୁଦା, ଲତା ଗୁଳ୍ମଥିବା ଓ ଉତ୍ତମ ରୂପେ ଜଳସେଚିତ ବଡ଼ ବଡ଼ ଉଦ୍ୟାନମାନଙ୍କରେ ଏମାନେ ଦେଖିବାକୁ ମିଳନ୍ତି । ଏହା ଲାଜକୁଳା ସ୍ୱଭାବର ନ ହେଲେ ମଧ୍ୟ ଚୁପ୍ ଚାପ୍ ଲାଞ୍ଜକୁ ଟେରଚ୍ଛା କରି ଝଟକ ବୁଦା ଲତା-ଗୁଳ୍ମତଳେ ଡେଇଁ ଡେଇଁ ପୋକ ଓ ସେମାନଙ୍କର ଶୂକ ଖୋଜି ବୁଲୁଥାଏ । ଏତେବେଳେ ସେ ମଧ୍ୟେ ମଧ୍ୟେ "ଟିଇ-ଟିଇ-ଟିଇ" ଡାକ ଦିଏ । ପ୍ରଜନନ ଋତୁରେ ଅଣ୍ଡିରା ଚଢ଼େଇ ବାରମ୍ବାର କୌଣସି ବୁଦାର ଉପର ଅଂଶ ବା ବାହାରକୁ ବାହାରିଥିବା ଶାଖା ଉପରେ ଚଢ଼ି ଉଚ୍ଚସ୍ୱରରେ ତୁହାକୁ ତୁହା ଡାକିଦିଏ । ସେ ଉତ୍ତେଜିତ ଭାବେ ଏପଟ ସେପଟ ଡିଆଁ ମାରେ, ଲାଞ୍ଜକୁ ଉପର ତଳ ଆନ୍ଦୋଳିତ କରେ ଓ ପକ୍ଷ ଝାଡ଼େ । ଲାଞ୍ଜର ଧକେଇ ଚକେଇ ଆନ୍ଦୋଳନରୁ ମନେହୁଏ ଯେପରିକି ତାହା ଅତ୍ୟନ୍ତ ଭାରି ଓ ସେ ତାକୁ ବୋହି ପାରୁନି । ନୀଡ଼ରେ ବସିଥିଲାବେଳେ ଟିକି ଚଢ଼େଇ ହଠାତ୍ ବିପଦର ସୂଚନା ପାଇଲେ ବାହାର ଆସି ଗୃହପଟେ ଉତ୍ତେଜିତ ଭାବେ ଜାଗାକୁ ଜାଗା ଉଡ଼ି ଏକ ପ୍ରକାର "କଟ୍-କଟ୍-କଟ୍" ଶବ୍ଦକରେ । ଟିକି ଚଢ଼େଇର ଅନ୍ୟ ଜ୍ଞାତିମାନେ ମଧ୍ୟ ଏପରି ପରିସ୍ଥିତିରେ ଏଇପରି ଶବ୍ଦ କରିଥାନ୍ତି; ମାତ୍ର ଏ ଶବ୍ଦ କିପରି ଜାତ ହୁଏ, ତାହା ନିର୍ଣ୍ଣିତ ରୂପେ ଜଣାପଡ଼ିନାହିଁ । ବିଦ୍ୟୁତ୍ ସ୍ଫୁଲିଙ୍ଗପରି ଏହି ସ୍ୱତନ୍ତ୍ର ତୀକ୍ଷ୍ଣ ଶବ୍ଦ ହୁଏ । ଲାଞ୍ଜର ପରକୁ ହଠାତ୍ ଭାଙ୍ଗିବା ଫଳରେ ଏପରି ଶବ୍ଦ ହେଉଥିବ ବୋଲି ଅନୁମାନ କରାଯାଏ । ଟିକି ଚଢ଼େଇର ନୀଡ଼ ସାଧାରଣତଃ ଦର୍ଜି ଟିକି ଚଢ଼େଇ (Tailor bird)ର ନୀଡ଼ ପରି । ପତ୍ରକୁ ମୋଡ଼ି ସିଲାଇ କରି ଚୁଙ୍ଗୀ (funnel) ପରି ଏହି ନୀଡ଼ ରଚିତ ହୋଇଥାଏ; ମାତ୍ର ଯେଉଁଠି ଆବଶ୍ୟକ ଅନୁଯାୟୀ ବଡ଼ ଓ ନମନୀୟ ପତ୍ର ନୀଡ଼

ରଚନାକରିବା ପାଇଁ ମିଳେନାହିଁ, ସେ ସ୍ଥଳରେ ନୀଡ଼ ପଇସାରଖା ମୁଣିପରି ଆୟତାକାର (Oblong) ହୋଇଥାଏ ଓ ତନ୍ନଦ୍ୱାର ବୁଣା ହୋଇଥାଏ; ଆଉ ତା' ଭିତରେ ବୁଢ଼ିଆଣୀ ଜାଲଦ୍ୱାରା ମୋଡ଼ାହୋଇ ସାନ ସାନ ପତ୍ର ଦିଆଥାଏ । ସାଧାରଣତଃ ଭୂମିଠାରୁ $1\frac{1}{2}$ ମିଟର ଉଚ୍ଚରେ ନୀଡ଼ ରହିଥାଏ । ଥରକେ ଟିକି ଚଢ଼େଇ ତନୋଟିରୁ ଚାରିଟି ଅଣ୍ଡା ଦିଏ । ଅଣ୍ଡା ଦେଖିବାକୁ ସୁନ୍ଦର, ଚକ୍‌କଣ ଓ ବାଦାମି-ଲାଲ । ତାର ଓସାରଆପଟର ଅଗ୍ରଭାଗରେ ଏକ କଳା ମୁଦିପରି ଚିହ୍ନ ଥାଏ ।

ଫୁଟ୍‌କି—ଏହାର ଇଂରାଜି ନାମ "ଭାରତୀୟ ରେନ୍-ଓ୍ୱାରବଲାର" (Indian wran-warbler) । ବୈଜ୍ଞାନିକ ନାମ "ପ୍ରିନିଆ ସବ୍‌ଫ୍ଲାଭା" (Prinia subflava) । ଏହାର ବର୍ଣ୍ଣ ମାଟିଆ ବାଦାମି ଆସିଆ, ଅନେକ ପରିମାଣରେ ଟିକି ଚଢ଼େଇର ଶୀତକାଳୀନ ବର୍ଣ୍ଣପରି । ଅବଶ୍ୟ ଟିକି ଚଢ଼େଇର ଲାଞ୍ଜର ଅଗରେ କଳା-ଧଳା-ଚିହ୍ନ ଥାଏ, ମାତ୍ର ଫୁଟ୍‌କିର ସେପରି ଚିହ୍ନ ନଥାଏ । ତା' ଛଡ଼ା ଫୁଟ୍‌କି ଅଧିକ ଶୁଷ୍କ ଓ ଅଳ୍ପ ଜଳଥିବା ଅଞ୍ଚଳରେ ବାସକରେ ।

ଦର୍ଜି ଟିକି ଚଢ଼େଇ (ବର୍ଣ୍ଣ ଚିତ୍ର 84)—ଆମ ଦେଶରେ ଯେତେ ପ୍ରକାର ଟିକି ଚଢ଼େଇ ବାସକରନ୍ତି ତା' ଭିତରେ ଦର୍ଜି ଟିକି ଚଢ଼େଇ ସବୁଠାରୁ ବେଶି ଖ୍ୟାତି ଲାଭ କରିଛି । ଏହାର ଇଂରାଜି ନାମ "ଦର୍ଜି ଚଢ଼େଇ" (Tailor bird) ବୈଜ୍ଞାନିକ ନାମ "ଓରଥୋଟୋମାସ ସୁଟୋରିୟସ" (Orthotomus sutorius) । ସ୍ୱନାମ-ଧନ୍ୟ ଇଂରେଜ ସାହିତ୍ୟିକ କିପ୍ଲିଙ୍ଗ (Kipling) ତାଙ୍କର ବିଖ୍ୟାତ "ଜଙ୍ଗଲ ବିବରଣୀ" ("Jungle Book") ବହିରେ "ଦର୍ଜି" ପକ୍ଷୀର ଉଲ୍ଲେଖ କରିଛନ୍ତି । ହିନ୍ଦିରେ ଏହି ପକ୍ଷୀକୁ 'ଦର୍ଜି' ବୋଲି ମଧ୍ୟ କହନ୍ତି । ଏହା ଏକ କ୍ଷୁଦ୍ର ଫୁର୍ତ୍ତିବାଜ ପକ୍ଷୀ । ଏହାର ପିଠିପାଖ ଗାଢ଼ ସବୁଜ, ପେଟ ପାଖ ଧଳା, ମସ୍ତକ କଳଙ୍କି-ବାଦାମି । ଲାଞ୍ଜ ଆଡ଼ମ୍ବର ପୂର୍ଣ୍ଣଭାବେ ଉପର ଆଡ଼କୁ ଟେରଚ୍ଛା ହୋଇ ଉଠି ରହିଥାଏ । ଲାଞ୍ଜର ମଧ୍ୟମ ପକ୍ଷ ଲମ୍ବା ଓ ପିନ୍ କଣ୍ଟାପରି ଗୋଜିଆ । ଏହା ବୁଦାଝାଟି ଓ ଉଦ୍ୟାନମାନଙ୍କରେ ଏକାକୀ ବା ଯୋଡ଼ ଯୋଡ଼ ହୋଇ ଦେଖିବାକୁ ମିଳେ । ସହର ଓ ମଫସଲ ସବୁଠି ଦର୍ଜି ଟିକି ଚଢ଼େଇ ଦେଖିବାକୁ ମିଳେ । ଏହା ଶାନ୍ତ ଓ ସରଳ ଏବଂ ନିର୍ଭୟରେ ଲୋକ ବାସ କରୁଥିବା ବଙ୍ଗଳା ଘରର ବାରଣ୍ଡାକୁ ଆସି ଲୋକ ବସିଥିବା ସ୍ଥାନଠାରୁ ଅଳ୍ପ କେଇ ସେଣ୍ଟିମିଟର ଦୂରରେ ତେଣିଁ ତେଣିଁ ସୂତା ଟିକେ ବା ତୂଳା ଟିକେ ଥଣ୍ଟରେ ଧରି ନୀଡ଼ ରଚନା କରିବା ପାଇଁ ନେଇଯାଏ । ନଡେନ୍ତି ଉପରକୁ ଉଠାଇବା କାଳରେ ମାଡ଼ିଥିବା ଲତା ଏବଂ ଫୁଲକୁଣ୍ଡରେ ଲଗିଥିବା ଗଛରୁ କୀଟ ସଂଗ୍ରହ କରିଥାଏ । ଏହା ଉଚ୍ଚସ୍ୱରରେ

ମନ ଆନନ୍ଦରେ "ହୋଉଇଟ୍-ହୋଉଇଟ୍-ହୋଉଇଟ୍" ବା "ପ୍ରେଟି-ପ୍ରେଟି-ପ୍ରେଟି" ରବକରେ । ଉପନଗର (Suburban) ଅଞ୍ଚଳର ଉଦ୍ୟାନମାନଙ୍କରେ ଏହାର ସ୍ୱର ସମ୍ଭବତ ଅନେକେ ପରିଚିତ ଥିବେ । ଅନ୍ୟ ଟିକି ଚଢ଼େଇମାନଙ୍କ ପରି ଏହାର ପ୍ରଧାନ ଆହାର ଗ୍ରେଟ ଗ୍ରେଟ କୀଟ ପତଙ୍ଗ ଏବଂ ସେମାନଙ୍କର ଅଣ୍ଡା ଓ ଶୂକ । ଉଜ୍ଜ୍ୱଳବର୍ଣ୍ଣ ଫୁଲରୁ ମଧୁସଂଗ୍ରହ କରିବାକୁ ଏମାନେ ଅତ୍ୟନ୍ତ ଭଲପାନ୍ତି । ଏଣୁ ପାଳଧୂଆ ଓ ଶିମିଳି ଗଛର ଫୁଲରୁ ଏମାନେ ମଧୁ ସଂଗ୍ରହ କରିବାର ଦେଖାଯାଏ । ଦର୍ଜି ଟିକି ଚଢ଼େଇ ତାର ଅସାଧାରଣ ନୀଡ଼ ରଚନା କୌଶଳପାଇଁ ଖ୍ୟାତି ଲଭକରିଅଛି । ପକ୍ଷୀମାନେ କପରି ନିପୁଣ ଭାବେ ନୀଡ଼ ରଚନାକରନ୍ତି, ତା'ର ଉଦାହରଣ ଦର୍ଜି ଟିକି ଚଢ଼େଇ ବସାରେ ଦେଖିବାକୁ ମିଳେ । ଏହାର ନୀଡ଼ କେତେକଟା କପ୍ ପରି । ଏହା ନରମ ତନ୍ତୁ, କେଶ, ତୂଳା ଓ ଅତି କ୍ଷୁଦ୍ର ଉଦ୍ଭିଦ ରୁଆରେ ତିଆରି ହୁଏ । ବିଶେଷତ୍ୱ ଏହି ଯେ, ଗୋଟିଏ ଓସାରିଆ ସବୁଜ ପତ୍ରକୁ କାହାଲି ପରି ମୋଡ଼ି ତା' କଡ଼ ସିଲେଇ ହୋଇଥାଏ ଓ ତା' ଭିତରେ ନୀଡ଼ ରହିଥାଏ । ଯଥେଷ୍ଟ ବଡ଼ ପତ୍ର ନମିଳିବା ସ୍ଥଳେ ଦୁଇତିନୋଟି ପତ୍ରକୁ ମୋଡ଼ି ସିଲାଇ କରାଯାଇଥାଏ । କଡ଼ ସିଲାଇ କରିବା ପାଇଁ ତୂଳା ବା ସୂକ୍ଷ୍ମ ଉଦ୍ଭିଦ ରୁଆକୁ ମୋଡ଼ି ସୂତାରୂପେ ବ୍ୟବହୃତ ହୋଇଥାଏ । କେବଳ ସେତିକି ନୁହେଁ, ସମ୍ପ୍ରସାରଣ ଯୋଗୁ ପତ୍ର କାଳେ ଫିଟିଯିବ ଏଥିପାଇଁ ଶେଷ ଅଂଶରେ ଚତୁରଭାବେ ସୂତାକୁ ଗଣ୍ଠି ପକାଯାଇଥାଏ । ପ୍ରବେଶ ଦ୍ୱାର ଗୃହଦ୍ୱାର (ପୋର୍ଚ୍ଚ) ଓ ବାରଣ୍ଡାରେ ଫୁଲ କୁଣ୍ଡ ବା ଅନ୍ୟ ଭାବେ ରହିଥିବା ଲମ୍ବା ପତ୍ରବାଲା ଗଛ ଯଥା : କୋଟନ, ଡମିର ବା ସେହିପରି ଅନ୍ୟ ଗଛରେ ଦର୍ଜି ଟିକିଚଢ଼େଇ ନୀଡ଼ ରଚନାକରେ । ସାଧାରଣତଃ ନୀଡ଼ ଭୂମିଠାରୁ ଏକ ବା ଦୁଇ ମିଟରରୁ ଅଧିକ ଉଚ୍ଚରେ ରହି ନ ଥାଏ । ଥରକେ ଏହା ତିନି ଚାରିଟି ଅଣ୍ଡା ଦିଏ । ଅଣ୍ଡା ଦେଖିବାକୁ ଲାଲଆସିଆ ବା ନୀଳଆସିଆ ଧଳା । ତା' ଉପରେ ସାଧାରଣତଃ ବାଦାମି ଲାଲରଙ୍ଗର ଛିଟା ଦାଗ ପଡ଼ିଥାଏ ।

ମକ୍ଷିଧାରକ (flycatcher) ଚଢ଼େଇ "ଟୁରଡ଼ିନା" (Turdinai) ପକ୍ଷୀ ଉପବଂଶ ଅନ୍ତର୍ଗତ, କସ୍ତୁରି (Thrush), ରୁବି (Rubin) ଓ ଚ୍ୟାଟ୍ (chat) ପକ୍ଷୀ ମଧ୍ୟ ଏହି ଉପବଂଶ ଅନ୍ତର୍ଗତ ।

ଦୟ୍ୟାଲ (ବର୍ଣ୍ଣଚିତ୍ର 85)—ଏହାକୁ ଓଡ଼ିଆରେ 'ଦହିଗିଲା' ମଧ୍ୟ କହନ୍ତି । ଇଂରାଜୀ ନାମ "ମେଗପାଇ ରବିନ୍" (Magpie Robin) । ବୈଜ୍ଞାନିକ ନାମ "କପ୍‌ସିକାସ ସଉଲରିସ" (Cupsychus saularis) । ହିନ୍ଦିନାମ ଦଇୟାର, ଦଇୟା । ଏହା ଆମର ଏକ ସାଧାରଣ ପରିଚିତ ପକ୍ଷୀ । ଅଣ୍ଡିରା ପକ୍ଷୀ ବେଶ୍ ପରିଷ୍କାର

ପରିଚ୍ଛନ୍ନ କଳା-ଧଳା ପକ୍ଷୀଟିଏ । ଲାଞ୍ଜ ସାଧାରଣତଃ ଉତ୍ତୋଳିତ ହୋଇ ଉପରଆଡ଼କୁ ରହିଥାଏ । ମାଈ ପକ୍ଷୀର କଳା ଅଂଶ ବାଦାମି ଓ ଶିଲଟ ପରି ଧୂସର । ଦୟାଲ ପକ୍ଷୀ ଏକାଠି ବା ଯୋଡ଼ ଯୋଡ଼ ହୋଇ ପତଳା ଜଙ୍ଗଲ ଅଞ୍ଚଳରେ ବାସକରନ୍ତି । ମନୁଷ୍ୟ ବାସ ନିକଟରେ ମଧ୍ୟ ସେମାନେ ସାଧାରଣ ପକ୍ଷୀ । ପ୍ରଜନନ ଋତୁ ଭିନ୍ନ ଅନ୍ୟ ଋତୁରେ ଅଣ୍ଡିରି ପକ୍ଷୀ ଧୀର, ଅଚଞ୍ଚଳ ଏବଂ ବୁଦାଝାଟି ଲତାତଳେ ଗୋପନରେ ବୁଲୁଥାଏ ଓ ମଝିରେ ମଝିରେ ଶୋକାବହ "ସୁଇ-ଇ" ବା କର୍କଶ "ଚ୍ର-ର ଚ୍ର-ର" ରବକରେ; ମାତ୍ର ଗ୍ରୀଷ୍ମଋତୁ ଆଗମନରେ ତା'ର କଣ୍ଠ ଫିଟିଯାଏ ଓ ଏକ ସୁନ୍ଦର ଗାୟକ ପକ୍ଷୀଭାବେ ନିଜକୁ ପ୍ରତିଷ୍ଠିତ କରେ । ତା'ର ଫିଟ୍‌ଫାଟ୍ ଚକ୍‌ଚକ ଚିତ୍ର ବିଚିତ୍ର ପରିଚ୍ଛଦ ସାଙ୍ଗକୁ, ସେ ତା' ଇଲାକା ଭିତରେ କୌଣସି ପତ୍ରହୀନ ଗଛର ଉପର ଡାଳ ଅଥବା ଉଦ୍ୟାନ ବା ଘରର ଫାଟକ ଉପରେ ବସି ମନ ଆନନ୍ଦରେ ତୁହାକୁ ତୁହା ସୁଉଚ୍ଚ ସଙ୍ଗୀତ-ଲହରୀଦ୍ୱାରା ଚାରିଆଡ଼ ପ୍ରକମ୍ପିତ କରେ । ଏହି ସଙ୍ଗୀତ ଶାମା ପକ୍ଷୀ (Shama)ର ସଙ୍ଗୀତ ପରି ସବୁଠାରୁ ମନମତାଣିଆ ନ ହେଲେ ମଧ୍ୟ ବେଶ୍ ଦୂରକୁ ଝଙ୍କୃତ ହୁଏ । ଗୀତ ଗାଇଲାବେଳେ ଲାଞ୍ଜ ଅଳ୍ପ ଖୋଲି ରହେ ଓ ତଳକୁ ଦବି ରହେ; ମାତ୍ର ସ୍ୱର-ଲହରୀ ସହିତ ତାଳ ଦେଲାପରି ମୁହୁର୍ମୁହୁଃ ଦୋଳାୟିତ ଭଙ୍ଗୀରେ ଉପର ଆଡ଼କୁ ଧକେଇ ଚଢେଇ ହୁଏ ଓ ଫିଟିଯାଏ ପୁଣି ବନ୍ଦ ହୋଇଯାଏ । ସକାଳୁ ସାରାଦିନ ଓ ବେଶ୍ ଅନ୍ଧାର ହେଲାଯାଏ ସଙ୍ଗୀତ ଚାଲିଥାଏ । ନିଜ ଇଲାକାରେ ଦଖଲସ୍ୱତ୍ୱ ଜାହିର କଲାବେଳେ ଓ ପ୍ରଜନନ ଋତୁରେ ଅଣ୍ଡିରି ପକ୍ଷୀମାନେ ଅତ୍ୟନ୍ତ ବିବାଦପ୍ରିୟ । ମାଈ ପକ୍ଷୀ ସମ୍ମୁଖରେ ଓ ଇଲାକା ମଧ୍ୟରେ ଅନୁପ୍ରବେଶ କରିଥିବା ପ୍ରତିଦ୍ୱନ୍ଦ୍ୱୀ ପକ୍ଷୀକୁ ଘଉଡ଼ାଇ-ଦେବା ଲାଗି ଅଣ୍ଡିରି ପକ୍ଷୀ ସ୍ୱତନ୍ତ୍ର ଆଚରଣ ପ୍ରଦର୍ଶନ କରେ । ସେ ଲାଞ୍ଜର ପକ୍ଷକୁ ମେଲା କରି ପିଠି ଉପରକୁ ବଙ୍କାଇ ଦିଏ, ଗ୍ରୀବା ଅଂଶକୁ ହାସ୍ୟକର ଭାବେ ଫୁଲାଏ, ଥଣ୍ଟକୁ ଆକାଶଆଡ଼କୁ ଟେକିରଖେ ଏବଂ ଦେହକୁ କଠିନ କରି ସଗର୍ବରେ ପଦଚାରଣା କରି ମୁଣ୍ଡ ନାଡ଼େ । ଦୟାଲ ମୁଖ୍ୟତଃ କୀଟଭୋଜୀ । ଅବଶ୍ୟ ବେଳେବେଳେ କୋଳି ଜାତୀୟ ଫଳ ମଧ୍ୟ ଖାନ୍ତି । ଗାଢ଼ବର୍ଣ୍ଣର ଫୁଲ, ଯଥା : ଶିମିଳି ଓ ପାଲଧୁଆ ଗଛର ଫୁଲ ଫୁଟି ରହିବାବେଳେ ଆକୃଷ୍ଟ ହୋଇ ସେମାନେ ସେଥିରୁ ମଧୁ ପାନ କରନ୍ତି । ସେମାନେ ଘାସ, ଚେରମୂଳ, କେଶ ପ୍ରଭୃତିରେ ଗଦାପରି ନୀଡ଼ ରଚନା କରନ୍ତି । ଏହା ଗଛ ଓ କାନ୍ଥର ଖୋଲ, ନର୍ଦ୍ଦମା ପାଇପ୍‌ର ଉପର ଅଂଶ ବା ପରିତ୍ୟକ୍ତ ବିଭିଖଣ୍ଡର ଉପର ଅଂଶରେ ରଚିତ ହୋଇଥାଏ । ଗଛ ଉପରେ ବାକ୍‌ସ କରି ଥୋଇ ଦେଲେ, ସେମାନେ ସେଥିରେ ଆସି ବସା ତିଆରି କରନ୍ତି । ଥରକେ ତିନୋଟିରୁ ପାଞ୍ଚଟି

ଅଣ୍ଡା ଦିଅନ୍ତି । ଏହା ଫିକା ନୀଳ ସବୁଜ । ତା' ଉପରେ ଲାଲ-ବାଦାମୀ ରଙ୍ଗରେ ଛିଟା ଓ ଗୁପଚୁପିଆ ଦାଗ ପଡ଼ିଥାଏ ।

**ଶାମା** (ବର୍ଣ୍ଣଚିତ୍ର 86)—ଇଂରାଜୀରେ ଏହାର ନାମ ମଧ୍ୟ "ଶାମା" (Shama) । ବୈଜ୍ଞାନିକ ନାମ "କପ୍‌ସିକାସ ମାଲାବାରିକାସ" (Copsychus malabaricus) । ଶାମା ଦୟାଲପକ୍ଷୀର ଜଙ୍ଗଲ ପ୍ରତିନିଧି କହିଲେ ଭୁଲ ହେବନାହିଁ । ସହରବାସୀମାନେ ଏହାକୁ ଏକ ଜାତ ଅତି ସୁନ୍ଦର ଗାୟକ ପକ୍ଷୀ ଭାବେ ଆଦରର ସହିତ ପାଳିଥାନ୍ତି । ଏହାର ପିଠି ପାଖ କଳା । ଲାଞ୍ଜ ଲମ୍ବା ଓ କଳା ଧଳା ରଙ୍ଗ ମିଶା । ପିଠି ପାଖର ପଛ ଆଡ଼କୁ ଲାଞ୍ଜର ଠିକ୍ ମୂଳ ଅଂଶରେ ଏକ ସ୍ପଷ୍ଟ ଧଳା ଅଂଶ ଦେଖିବାକୁ ମିଳେ । ପେଟ ପାଖର ରଙ୍ଗ କଳଙ୍କି-ବାଦାମି । ଶାମାପକ୍ଷୀ ବେଳେବେଳେ ସହରାଞ୍ଚଳ ନିକଟସ୍ଥ ଗୁଞ୍ଜିଗୁଞ୍ଜିଆ ବେଶ୍ ଜଙ୍ଗଲିଆ-ପାହାଡ଼ିଆ ଅଞ୍ଚଳକୁ ଆସିଥାଏ । ବମ୍ବେ ସହରର ମାଥେରାନ୍ ଅଞ୍ଚଳ ଏହିପରି ଏକ ଅଞ୍ଚଳ । ସେଠାକୁ ଶାମା ଚଢ଼େଇ ଆସି ଗ୍ରୀଷ୍ମ କଟାଇବା ଲାଗି ଆସିଥିବା ବ୍ୟକ୍ତିମାନଙ୍କୁ ତାର ସୁନ୍ଦର ଗାନଦ୍ୱାରା ମୋହିତକରେ ।

**କଳାଗୃଟ** (ବର୍ଣ୍ଣଚିତ୍ର 87)—ଏହାର ଇଂରାଜୀ ନାମ "ଚିତ୍ର ବିଚିତ୍ର ବୁଦାବାସୀ ଗୃଟ୍ ପକ୍ଷୀ" (Pied Bushchal) । ବୈଜ୍ଞାନିକ ନାମ "ସାକ୍‌ସିକୋଲା କାପ୍ରାଟା" (Saxicola caprata) । ହିନ୍ଦି ନାମ କାଲା ପିଡ଼ା । ଏହାର ଆକାର ପ୍ରାୟ ଘରଚଟିଆ ପରି । ଅଣ୍ଡିରା କଳାଗୃଟ ନିପଟ୍ଟ କଳା । ପଶ୍ଚାତ୍ ଭାଗ ଅର୍ଥାତ୍ ପିଚ୍ଛ, ତଳ ପେଟ ଓ ପକ୍ଷରେ ଚକଚକିଆ ଧଳା ରଙ୍ଗର ଅଂଶ ଅଛି । ଉଡ଼ିଲାବେଳେ ପକ୍ଷର ଧଳା ଅଂଶ ସ୍ପଷ୍ଟ ଦେଖାଯାଏ । ମାଈ କଳାଗୃଟ୍‌ର ବର୍ଣ୍ଣ ମାଟିପରି ବାଦାମି ଓ ପିଚ୍ଛ ଅଂଶ କଳଙ୍କିବାଦାମି । ଏହି ପକ୍ଷୀମାନେ ବିଭିନ୍ନ ସ୍ଥାନରେ ଠାଏ ଠାଏ ନିବାସୀ ପକ୍ଷୀ ବା ଶୀତକାଳରେ ଆଗନ୍ତୁକ ପକ୍ଷୀ ଭାବେ ଯୋଡ଼ି ଯୋଡ଼ି ହୋଇ ଦେଖାଯାନ୍ତି । ଅଲଗା ଭାବେ ଯୋଡ଼ିହୋଇ ରହୁଥିବାରୁ କୌଣସି ଗୋଟିଏ ଅଞ୍ଚଳରେ କେବଳ ଯୋଡ଼ିଏ କଳାଗୃଟ ଦେଖିବାକୁ ମିଳନ୍ତି । ଖୋଲା ବିଚ୍ଛିନ୍ନ ଅଞ୍ଚଳ ଓ ଚୃଷଜମି ନିକଟରେ ବୁଦା ଉପରେ ବା ଶର ବା ନଳ ଗଛ ଉପରେ ଏମାନେ ବସିଥିବାର ଦେଖାଯାଏ । ଏଠାରୁ ମଧ୍ୟେ ମଧ୍ୟେ ତଳକୁ ଭୂମିକୁ ଉଡ଼ିଯାଇ କଳାଗୃଟ ଝିଣ୍ଟିକା ବା ମତ୍କୁଣ (bug)ଟିଏ ଥଣ୍ଟରେ ଧରି ଚାଲିଆସେ । ବେଳେବେଳେ ଆକାଶକୁ ଭୂଲମ୍ବ ଭାବେ ଲମ୍ଫ ଦେଇ ସେ ଉଡ଼ନ୍ତା ପତଙ୍ଗ ମଧ୍ୟ ଶିକାରକରେ । ଆହୁରି ମଧ୍ୟ ସମୟ ସମୟରେ ହଠାତ୍ ବାହାରି ମକ୍ଷିଧାରକ କନକ ଚଢ଼େଇ (flycatcher) ପରି ଅଳ୍ପ ଅଳ୍ପ ଉଡ଼ି ଉଡ଼୍ଡୀୟମାନ କୀଟ ଧରେ । ଏମାନେ ସାଧାରଣତଃ ଏକ ପ୍ରକାର କର୍କଶ "ଚେକ୍-ଚେକ୍" ଶବ୍ଦ କରନ୍ତି ଓ

ଶବ୍ଦ ଶେଷକୁ ଏକପ୍ରକାର ଦୃପା "ଟି ଉଇଟ୍" ଶବ୍ଦ ଉଚ୍ଚାରିତ ହୁଏ । ପ୍ରଜନନ ଋତୁରେ ଅଣ୍ଡିରୀ ପକ୍ଷୀ ଏକ ପ୍ରକାର ସୁମଧୁର ସୁସ୍ୱର ପରି ଦୋସୁରୀ "ଚକ୍-ଚକ୍" ଶବ୍ଦକରେ । ଏହି କୂଜନ କେତେକ ପରିମାଣରେ ସୂଇ (Indian Robin) ପକ୍ଷୀର ସ୍ୱନ ପରି । ତା' ଇଲାକା ଭିତରେ, ପ୍ରଜନନ ଋତୁରେ ଓ ଅନ୍ୟ ସମୟରେ ଅନୁପ୍ରବେଶକାରୀ ପ୍ରତିଦ୍ୱନ୍ଦ୍ୱୀକୁ ଯୁଦ୍ଧଂଦେହି ଆହ୍ୱାନ ଦେଲାବେଳେ ସେ ଏପରି କୂଜନ କରେ । ସ୍ୱନ ସଙ୍ଗେ ସଙ୍ଗେ ସେ ନାନାପ୍ରକାର କ୍ରୀଡ଼ା ପ୍ରଦର୍ଶନକାରୀ ଅଙ୍ଗଭଙ୍ଗୀ କରେ । ମାଟି ବନ୍ଧ ବା କାନ୍ଥର ଗହ୍ୱରରେ ବେଂମେଞ୍ଚାଏ ଘାସ, ତା'ଉପରେ ଲୋମ ଓ କେଶ ରଖି ସେଥିରେ ଚିନୋଟିରୁ ପାଞ୍ଚଟି ଯାଏ ଅଣ୍ଡାଦିଏ । ଅଣ୍ଡା ଦେଖିବାକୁ ନୀଳଆସିଆ ଧଳା । ତା' ଉପରେ ଲାଲସିଆ ବାଦାମି ରଙ୍ଗର ଛିଟା ଓ ଛୁପ ଦାଗ ଥାଏ ।

**ବାଦାମି ଗୁଟ**—ଏହାର ଇଂରାଜି ନାମ "ଗଳା ଫିତା ଯୁକ୍ତ ଝାଟି ଗୁଟ" (Collared Bushchat) । ବୈଜ୍ଞାନିକ ନାମ "ସାକ୍ସିକୋଲା ଟରକ୍ୱାଟା" (Saxicola torquata) । ଏ ପକ୍ଷୀଟି ମଧ୍ୟ ଶୀତକାଳରେ ଚୃଷଭୂମି ନିକଟରେ ଓ ଉଚ୍ଚ ଘାସ ଭୂମିରେ ଦେଖାଯାଏ । ଅଣ୍ଡିରୀ ବାଦାମି ଗୁଟ ପକ୍ଷୀର ମୁଣ୍ଡ କଳା, ଛାତି ଅଂଶ କମଳାଲେମ୍ବୁ ପରି ବାଦାମି ଏବଂ ବେକର ଦୁଇକଡ଼ରେ ଗଳାବନ୍ଧ (କଲର) ପରି ସୁସ୍ପଷ୍ଟ ଧଳା ଚିହ୍ନ ଥାଏ । ପକ୍ଷ ଓ ଲାଞ୍ଜ ମୂଳର ଉପର ଅଂଶରେ ମଧ୍ୟ ଧଳାଚିହ୍ନ ଥାଏ । ମାଈ ବାଦାମି ଗୁଟ ଦେଖିବାକୁ ମାଈ କଳା ଗୁଟ ପରି; ମାତ୍ର ମାଈ ବାଦାମି ଗୁଟ୍‌ର ପିଠି ପଟେ ପଡ଼ିଥିବା ରେଖା ଅଧିକ ଘନ ।

**ସୂଇ** (ବର୍ଣ୍ଣଚିତ୍ର ୫୪)—ଏହାର ଇଂରାଜି ନାମ "ଭାରତୀୟ ରବିନ୍" (Indian Robin) । ବୈଜ୍ଞାନିକ ନାମ "ସାକ୍ସିକୋଲୋଇ ଡେସ୍ ଫୁଲିକାଟା" (Saxicoloides fulicata) । ହିନ୍ଦି ନାମ କାଲଚୂରି । ଏହା କସ୍ତୁରୀ (Thrush) ପକ୍ଷିଗୋଷ୍ଠୀ (group) ଅନ୍ତର୍ଭୁକ୍ତ ଏକ ଚଢ଼େଇ । ପଲ୍ଲୀ ଅଞ୍ଚଳରେ ସୂଇ ଏକ ସାଧାରଣ ପକ୍ଷୀ । ଏହା ସାଧାରଣତଃ ଗାଁମାନଙ୍କରେ ଘର ଚାଳ ଉପରେ, ରାସ୍ତା କଡ଼ର ବାଡ଼ ବା ପଥର ଉପରେ ବସିଥିବାର ଦେଖିବାକୁ ମିଳେ । ଲାଞ୍ଜକୁ ଉପର ଆଡ଼କୁ ତେରଛା ଭାବେ ଉଠାଇ ପକାଇ ଏପଟ ସେପଟ ବୁଲି ସେମାନେ ଆନନ୍ଦଦାୟକ ଧ୍ୱନି କରୁଥାନ୍ତି । ଅଣ୍ଡିରୀ ସୂଇ ଗୋଟିଏ କ୍ଷୁଦ୍ର ବାଦାମି ଓ ଚକଚକିଆ କଳାରଙ୍ଗର ସ୍ଫୂର୍ତ୍ତିବାନ ପକ୍ଷୀ । ଏହାର ଲାଞ୍ଜ ସର୍ବଦା ଉପର ଆଡ଼କୁ ସ୍ଥାୟୀ ଭାବେ ତେରଛା ହୋଇ ରହିଥାଏ ଓ ଲାଞ୍ଜ ତଳ ଅଂଶରେ ବାଦାମି ଚିହ୍ନ ଥାଏ । ତା'ର ପକ୍ଷରେ ଧଳା ଚିହ୍ନ ଥାଏ । ପକ୍ଷ ମୁଦି ବସିଥିଲାବେଳେ ଏହି ଚିହ୍ନ ଅନେକ ପରିମାଣରେ ଲୁଚି ରହିଥାଏ; ମାତ୍ର

ଉଡ଼ନ୍ତିବେଳେ ସ୍ପଷ୍ଟ ଦେଖାଯାଏ । ମାଈ ସୂଇର ବର୍ଣ୍ଣ ପାଉଁଶିଆ ବାଦାମି । ତା'ର ଲାଞ୍ଜ ମଧ୍ୟ ଉପରଆଡ଼କୁ ଟେରଚ୍ଛା ଭାବେ ରହିଥାଏ । ଲାଞ୍ଜ ତଳର ବର୍ଣ୍ଣ ଫିକା ବାଦାମି । ସୂଇ ପକ୍ଷୀମାନେ ସବେଗରେ ଏଠୁ ସେଠିକି ସେଠୁ ଏଠିକି ଦୌଡ଼ାଦୌଡ଼ି କରି ସମୟ କଟାନ୍ତି । କେତେବେଳେ ବୁଦା ଉପରକୁ ଉଠିଯାନ୍ତି ତ, କେତେବେଳେ ଉଇ ହୁଙ୍କା ଉପରକୁ ଉଠିଯାନ୍ତି; ପୁଣି କେତେବେଳେ ଓହ୍ଲାଇ ଆସି କୀଟ ଆହାରଟିଏ ଝୁଙ୍କି ପକାନ୍ତି । ଏହିପରି ଖାଦ୍ୟ ଅନ୍ୱେଷଣ କରୁଥିବା ସମୟରେ କାମଧନ୍ଦାରତ ବାସିନ୍ଦାମାନଙ୍କ ପ୍ରତି ଭ୍ରୂକ୍ଷେପ ନ କରି ନିର୍ଭୟରେ କୁଟୀର ଓ ବଙ୍ଗଳାର ବାରଣ୍ଡା ଉପରେ ଦୌଡ଼ି ବୁଲନ୍ତି । କୀଟ ଓ ସେମାନଙ୍କର ସବାଳୁଆ ସଇମାନଙ୍କର ପ୍ରଧାନ ଖାଦ୍ୟ । ଉଇ ଏମାନଙ୍କର ଏକ ପ୍ରିୟ ଖାଦ୍ୟ, ଏଣୁ ଏମାନଙ୍କୁ ହୁଙ୍କା ନିକଟରେ ଉଇ ଝୁଙ୍କିବାର ଦେଖିବାକୁ ମିଳେ । ମାଈ ପକ୍ଷୀକୁ ଆକୃଷ୍ଟ କରିବାପାଇଁ ଓ ଗୋଟିକର ଇଲାକା ମଧ୍ୟରେ ଆଉ ଗୋଟିଏ ଅଣିରି ସୂଇ ପଶିଲେ ତା ସହିତ ଲଢ଼େଇ କରିବା ପାଇଁ ଆଗେଇ ଗଲାବେଳେ, ଏମାନେ ଏକପ୍ରକାର ସ୍ଫୂର୍ତ୍ତିଯୁକ୍ତ ଉଲ୍ଲାସ ଧ୍ୱନି କରନ୍ତି । ଏତେବେଳେ ସେ ତା' ଗ୍ରୀବା ଅଂଶକୁ ଫୁଲାଇ ଦିଏ, ଭୟ ପ୍ରଦର୍ଶନ କରିବା ଲାଗି ଯେତେ ଉଚ୍ଚକୁ ଉଠି ପାରିବ, ସେତେ ଉଚ୍ଚକୁ ନିଜକୁ ସଂପ୍ରସାରିତ କରେ ଓ ଲାଞ୍ଜକୁ ପିଠି ଉପରକୁ ମୁହୁ-ର୍ମୁହୁଃ ବଙ୍କାଉ ଥାଏ । ସୂଇ ପକ୍ଷୀର ନୀଡ଼ ଘାସ ଓ ସାନ ସାନ ଚେରରେ କପ୍ ପରି ତିଆରି ହୋଇଥାଏ ଏବଂ ଅନେକ ସମୟରେ ସେଥିରେ ସାପର ପରିତ୍ୟକ୍ତ ଚମ (ସାପକାତି) ରଖାଯାଇଥାଏ । ମାଟିବନ୍ଧର ଗାତ, ସଢ଼ା ଗଛଡାଳର ଗାତ, ପରିତ୍ୟକ୍ତ ଟିଣ ବା ମାଟି କୁଣ୍ଡ଼ଆରେ ନୀଡ଼ ରହିଥାଏ । ଏମାନେ ଥରକେ ଦୁଇ ତିନୋଟି ଅଣ୍ଡା ଦିଅନ୍ତି । ଅଣ୍ଡା ଦେଖିବାକୁ ହଳଦିଆସିଆ ବା ସବୁଜଆସିଆ ଧଳା । ତା' ଉପରେ ଡଟକା ଲାଲ୍ ବାଦାମି ରଙ୍ଗର ଛିଟା ଓ ଗ୍ରୁପଗ୍ରୁପିଆ ଚିହ୍ନ ଥାଏ ।

**କସ୍ତୁରୀ** ( ବର୍ଣ୍ଣଚିତ୍ର ୪୨ )—ଏହା କସ୍ତୁରୀ ପକ୍ଷିଗୋଷ୍ଠୀର ସବୁଠାରୁ ବିଖ୍ୟାତ ଗାୟକ ପକ୍ଷୀ । ଇଂରାଜୀ ନାମ "ମାଲାବାର କସ୍ତୁରୀ ଗାୟକ" (Malabar whistling Thrush) । ବୈଜ୍ଞାନିକ ନାମ "ମାଇଓଫୋନିଆସ ହରସଫାଇଲଡ଼ି" (Myiophoneus horsfieldi) । ହିନ୍ଦି ନାମ କସ୍ତୁରୀ । ଏହା ଗୋଟିଏ ମନୋରମ ନୀଳ-କଳା ପକ୍ଷୀ । ଆକାରରେ ବଣି ଓ ପାରି ମଝାମଝି ହେବ । ଲଲାଟ ଓ କାନ୍ଧ ଚକଚକିଆ ଧାତବ ନୀଳ ବର୍ଣ୍ଣର; ଥଣ୍ଟ ଓ ଗୋଡ଼ କଳା । ମନୁଷ୍ୟ ବସତିଠାରୁ ନିକଟରେ ଓ ଦୂରରେ ଘନ ପଥୁରିଆ ଜଙ୍ଗଲ ମଧ୍ୟରେ ଶୁଖିଲା ନାଳ ଓ ପ୍ରଚଣ୍ଡ ପ୍ରବହମାନ ପାହାଡ଼ିଆ ନଦୀ କୂଳରେ କସ୍ତୁରୀ ବାସକରେ । ପ୍ରଜନନ ଋତୁରେ ଅତି

ପ୍ରତ୍ୟୁଷରେ ଏମାନଙ୍କର ସୁଉଚ୍ଚ ସୁସ୍ୱର ସ୍ୱନ ଶୁଣିବାକୁ ମିଳେ । ପ୍ରଦୋଷକୁ ସ୍ୱାଗତ କରି ଗାନ କରୁଥିବା ପ୍ରଥମ ପକ୍ଷୀମାନଙ୍କ ମଧ୍ୟରେ କସ୍ତୁରୀ ଅନ୍ୟତମ । ମନୁଷ୍ୟର 'ସୁସ୍ୱର ଶବ୍ଦର ତାଳ ଲୟ ସହିତ ଏହି ପକ୍ଷୀ ସ୍ୱରର ଆଶ୍ଚର୍ଯ୍ୟଜନକ ମେଳ ଥିବାରୁ ଏହା ଶ୍ରମ-କାତର ସ୍କୁଲ ଛାତ୍ର ଓ ସୁସ୍ୱର ମଗ୍ନ ସ୍କୁଲଛାତ୍ର (Idle or whistling school boy) ଆଖ୍ୟା ପାଇଅଛି । ଏ ଜାତୀୟ (Thrush) ଅନ୍ୟ ପକ୍ଷୀମାନଙ୍କ ପରି କସ୍ତୁରୀ ପ୍ରଜନନ ଋତୁ ଭିନ୍ନ ଅନ୍ୟ ଋତୁରେ ନୀରବ । ଅନ୍ୟ ସମୟରେ ଏହି ବଂଶର ପକ୍ଷୀମାନଙ୍କ ପରି ସେ କେବଳ ତୀକ୍ଷ୍ଣ ସ୍ୱରରେ "ଟି-ଇ-ଇ" ଶବ୍ଦକରେ । କସ୍ତୁରୀର ଖାଦ୍ୟ ହେଲା ଜଳବାସୀ କୀଟ, ଗେଣ୍ଡା ଓ କଙ୍କଡ଼ା । ଗେଣ୍ଡା ଓ କଙ୍କଡ଼ାର କଠିନ ଖୋଳକୁ ଫଟାଇବା ପାଇଁ ଏହି ପକ୍ଷୀମାନେ ଇଚ୍ଛାକରି ସେମାନଙ୍କୁ ପଥର ଉପରେ ବାଡ଼ାନ୍ତି । ନଦୀ ନାଳରେ ଜଳ ଆବର୍ତ୍ତ ଖାଇ ଗଡ଼ିଯାଉଥିଲାବେଳେ ତା' ଭିତରେ କସ୍ତୁରୀ ପଥରରୁ ପଥରକୁ ଡେଇଁ ପାଣିରୁ ଗେଣ୍ଡା ଓ କଙ୍କଡ଼ା ଧରେ । ଏ ସମୟରେ ଲାଞ୍ଜ ସର୍ବଦା ପଙ୍ଖାପରି ଫିଟିଯାଏ ଏବଂ ଉପର ତଳ ଆନ୍ଦୋଳିତ ହୁଏ । ଲାଞ୍ଜ ଏତେ ଆନ୍ଦୋଳିତ ହୁଏ ଯେ ତାହା ପ୍ରାୟ ବସିଥିବା ସ୍ଥାନରେ ବାଜେ । ପଥର ସନ୍ଧିରେ ଲୁଚିଥିବା ଖାଦ୍ୟଜୀବକୁ ଘଉଡ଼ାଇ ପଦାକୁ ବାହାର କରିବାକୁ ଲାଞ୍ଜର ପକ୍ଷକୁ ମୁହୁର୍ମୁହୁ ଖୋଲେ ଓ ମୁଦେବୋଲି ଅନୁମାନ । ପକ୍ଷିପୋଷାଳୀମାନଙ୍କଠାରେ ଗାୟକ ପକ୍ଷୀ କସ୍ତୁରୀର ଆଦର ବହୁତ ବେଶି । ଶାବକ ଅବସ୍ଥାରୁ ପାଳିଲେ ଏମାନେ ଭଲ ପୋଷା ମାନନ୍ତି । ଏମାନଙ୍କର ନୀଡ ବଡ଼, ଘନଭାବେ ଚେର, ହରିତା (ମସ୍), ଘାସ ଓ ମାଟିଦ୍ୱାରା ତିଆରି ହୋଇଥାଏ । ପଥରର ଖୋପ ବା ସିଧା ଠିଆ ହୋଇଥିବା ପଥରର ଖୋପରେ ଏବଂ ଅନେକ ସମୟରେ ଶ୍ରେଷ୍ଠ ଜଳପ୍ରପାତ ନିକଟରେ ପଡ଼ୁଥିବା ପାଣି ପଥରେ ଥିବା ପଥର ଖୋଲରେ ନୀଡ଼ ରହିଥାଏ । ଥରକେ କସ୍ତୁରୀ ତିନ ରୁ ଚାରିଟି ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଫିକା ବାଦାମି ବା ଧୂସର ପଥରର ରଙ୍ଗ ପରି । ତା' ଉପରେ ଲାଲସିଆ ବାଦାମି ବା ଫିକା ନୀଳବର୍ଣ୍ଣର ଛୁଟା ଓ ଛିପଛିପିଆ ଚିହ୍ନ ପଡ଼ିଥାଏ ।

**ହିମାଳୟ କସ୍ତୁରୀ**—ହିମାଳୟ କସ୍ତୁରୀ ସାଧାରଣ କସ୍ତୁରୀର ଏକ ନିକଟ ଜ୍ଞାତି । ଏହାକୁ ଇଂରାଜୀରେ "ହିମାଳୟ କସ୍ତୁରୀ ଗାୟକ" (Himalayan whistling Thrush) କହନ୍ତି । ଏହାର ବୈଜ୍ଞାନିକ ନାମ "ମାଇଓ ଫୋନିଆସ ଟେମ୍ମିନ୍କି" (Myiophoneus temminckii) । ହିମାଳୟ ପର୍ବତମାଳାର ପାଦଦେଶରୁ ଆସାମ ଓ ବର୍ମା ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ଏହା ବାସକରେ । ଏହାର ଅଣ୍ଟା କଳା ପରିବର୍ତ୍ତେ ହଳଦିଆ । ଏହାର ଲଲାଟ ଓ କାନ୍ଧରେ ଚକଚକିଆ ଧାତବ ନୀଳଚିହ୍ନ ନଥାଏ ।

ଗଙ୍ଗା ଚଢ଼େଇ (Tits) ପାରିଡ଼ି (Paridae) ପକ୍ଷୀ ବଂଶ ଅନ୍ତର୍ଭୁକ୍ତ । ଏହି ପକ୍ଷୀ-ମାନଙ୍କର ଆକାର ସାନ, ସାଧାରଣତଃ ଘରଚଟିଆ ପରି ବା ତା'ଠାରୁ କ୍ଷୁଦ୍ର । ଏମାନେ ସଦା ସ୍ଫୂର୍ତ୍ତିଯୁକ୍ତ ବୃକ୍ଷବାସୀ ପକ୍ଷୀ ଅଟନ୍ତି । ଏମାନଙ୍କର ଥଣ୍ଟ କ୍ଷୁଦ୍ର ମାତ୍ର ମଜବୁତ । କେତେକ ଗଙ୍ଗା ଚଢ଼େଇଙ୍କର ବାହ୍ୟାଡ଼ମ୍ବରମୟ ଉପରଆଡ଼କୁ ଦଣ୍ଡାୟମାନ ଚୂଡ଼ା ଥାଏ । ହିମାଳୟ ଅଞ୍ଚଳରେ ଏମାନେ ଅଧିକ ସଂଖ୍ୟାରେ ଦେଖାଯାଆନ୍ତି । ଭାରତୀୟ ଉପଦ୍ୱୀପ ଅଞ୍ଚଳରେ ତିନି ଜାତି ଗଙ୍ଗା ଚଢ଼େଇ ମିଳନ୍ତି । ତନ୍ମଧ୍ୟରେ ସର୍ବତ୍ର ଦେଖା ଯାଉଥିବା ଚଢ଼େଇଟି ହେଲା **ରାମଗଙ୍ଗା ଚଢ଼େଇ** (ବର୍ଣ୍ଣଚିତ୍ର 90)—ଏହାକୁ ଇଂରାଜୀରେ ଧୂସର ଗଙ୍ଗା ଚଢ଼େଇ (Grey Tit) କୁହାଯାଏ । ବୈଜ୍ଞାନିକ ନାମ "ପେରସ ମେଜର" (Parus major) । ହିନ୍ଦୀ ନାମ ରାମ ଗଙ୍ଗା । ଏହା ଗୋଟିଏ ପରିଚ୍ଛନ୍ନ ଘରଚଟିଆ ପରି ପକ୍ଷୀ । ମୁଣ୍ଡ ଚକ୍‌ଚକ୍, କଳା ରଙ୍ଗର ଓ ଚୂଡ଼ା ନାହିଁ । ଗଣ୍ଡଦେଶ (Cheek) ଉଜ୍ଜ୍ୱଳ ଧଳା, ପିଠି ପାଖ ଧୂସର, ପେଟ ପାଖ ଧଳା । ପେଟର ମଝି ଅଂଶରେ ଏକ ଓସାରିଆ କଳାରଙ୍ଗର ପଟିପରି ରେଖା ଥାଏ । ଜଙ୍ଗଲ ଅଞ୍ଚଳରେ ଗଛରେ ଏହି ପକ୍ଷୀ ଦେଖିବାକୁ ମିଳେ; ମାତ୍ର ସନ୍ତସନ୍ତିଆ ଚିର ସବୁଜ ଅରଣ୍ୟରେ ରହେନାହିଁ । ରାମଗଙ୍ଗା ପକ୍ଷୀ ଗୋଟି ଗୋଟି ହୋଇ, ଯୋଡ଼ି ଯୋଡ଼ି ହୋଇ, ଛୋଟ ଛୋଟ ଦଳବାନ୍ଧି ଅଥବା ଅନ୍ୟ ପକ୍ଷିଭକ୍ଷୀ ଚଢ଼େଇମାନଙ୍କ ସହିତ ଏକତ୍ର ମିଶି ବୁଲୁଥିବାର ଦେଖାଯାଆନ୍ତି । ଏହି ପକ୍ଷୀମାନେ ବିକ୍ଷିପ୍ତ ଭାବେ ପତ୍ରରାଜି ମଧ୍ୟରେ ଖାଦ୍ୟ ଅନ୍ୱେଷଣ କରନ୍ତି; ମାତ୍ର ଆନନ୍ଦମୟ କିଚିରି ମିଚିରି କଳଧ୍ୱନିଦ୍ୱାରା ପରସ୍ପର ସହିତ ସମ୍ପର୍କ ରଖିଆନ୍ତି । ପୋକ ଏବଂ ସେମାନଙ୍କର ଅଣ୍ଡା ଓ ଲାର୍ଭା ରାମଗଙ୍ଗା ପକ୍ଷୀମାନଙ୍କର ପ୍ରଧାନ ଆହାର । ସେମାନେ ଆହାର ଅନ୍ୱେଷଣରେ କ୍ଷୁଦ୍ର ଶାଖା, ଫୁଲର ଡେମ୍ଫ ଇତ୍ୟାଦିରେ ଚଢ଼ିଥିଲାବେଳେ ଦେହର ଭାରରେ ତାହା ନଇଁ ପଡ଼େ ଓ ସେମାନେ ତାକୁ ଜାବୁଡ଼ିଧରି ରହିଥାନ୍ତି । ଦଉଡ଼ି ଉପରେ କେଳା ବା ସର୍କସବାଲାଙ୍କ ଖେଳ ପରି ଏହା ବେଶ୍ ଉପଭୋଗ୍ୟ । ଗଛର ଗାତ୍ର ବା ଫାଟ ଭିତରେ ଲୁଚିଥିବା ପୋକ ଖୋଜି ତାଙ୍କୁ ଆହାର କରନ୍ତି । କେତେବେଳେ କେମିତି ଫଳ ବଗିଚାରେ ପଶି ଫଳ ଓ କଡ଼ର କ୍ଷତି କଲେ ମଧ୍ୟ ରାମଗଙ୍ଗା ପକ୍ଷୀ ବହୁ ପରିମାଣରେ ଅନିଷ୍ଟକାରୀ କୀଟପତଙ୍ଗଙ୍କୁ ଭକ୍ଷଣ କରୁଥିବାରୁ ତାହା ଆମର ଏକ ଉପକାରୀ ପକ୍ଷୀ । କଠିନ ଆବରଣଯୁକ୍ତ ମଞ୍ଜି ଓ ଫଳକୁ (Nut) ପାଦତଳେ ଚାପି ଧରି ସବଳ ଥଣ୍ଟ ସାହାଯ୍ୟରେ ବାରମ୍ବାର ହାତୁଡ଼ି ପାହାର ପରି ପାହାର ବସାଇ ଫଟାଇ ଶସ ଖାଆନ୍ତି । ପ୍ରଜନନ ଋତୁରେ ଅଣ୍ଡିରା ପକ୍ଷୀ ଏକ ପ୍ରକାର ସ୍ପଷ୍ଟ "ହ୍ୱିଇଚଚ, ହ୍ୱିଇଚଚ, ହ୍ୱିଇଚଚ..." ସୁସ୍ୱର ଶବ୍ଦ କରେ । ଏମାନେ

ଗଛର ଗଣ୍ଡି ବା ଶାଖାର ଖୋଲରେ ଅଥବା ପଥର ପାଚେରି କାନ୍ଥ ଖୋଲରେ କେଶ, ହରଡା (ମସ) ଓ ପରରେ ନୀଡ଼ ରଚନା କରନ୍ତି । ଥରକେ ଗୃହରୁ ଛଅଟି ଯାଏଂ ଅଣ୍ଡା ଦଅନ୍ତି । ଅଣ୍ଡାର ବର୍ଣ୍ଣ ଧଳା ବା ପାଟଳଆସିଆ ଧଳା । ତା ଉପରେ ଲାଲ୍‌ଆସିଆ ବାଦାମି ରଙ୍ଗର ଛୁଟା ଦାଗ ଓ ଗ୍ରୁପଗ୍ରୁପିଆ ଚିହ୍ନ ଥାଏ ।

ଭାରତୀୟ ଉପଦ୍ୱୀପରେ ଆଉ ଜାତିଏ ଗଙ୍ଗାପକ୍ଷୀ ସାଧାରଣତଃ ଦେଖିବାକୁ ମିଳେ । ଏହାକୁ ଇଂରାଜୀରେ "ହଳଦିଆ ଗାଲ ରାମଗଙ୍ଗା ପକ୍ଷୀ" (Yellowcheeked Tit) କୁହାଯାଏ । ବୈଜ୍ଞାନିକ ନାମ "ପେରସ ଜାନ୍‌ଥୋ ଜେନସ" (Parus xanthogenys) । ଏହା ଗୋଟିଏ ଲଳିତ କଳା-ହଳଦିଆ ଗଙ୍ଗାପକ୍ଷୀ । ଏହାର ମୁଣ୍ଡରେ ଉପରଆଡ଼କୁ ଗୋଜିଆ ସ୍ପଷ୍ଟ କଳା ଚୂଡ଼ା ଥାଏ । ପେଟପାଖର ବର୍ଣ୍ଣ ହଳଦିଆ । ପେଟର ମଧ୍ୟ ସ୍ଥଳରେ ଏକ ଓସାରିଆ କଳା ପଟି ପରି ରେଖା ଥାଏ । ରାମଗଙ୍ଗା ଚଢ଼େଇ ଯେଉଁପରି ଅଞ୍ଚଳରେ ବାସକରେ, ଏହି ହଳଦିଆ ଗାଲ ଗଙ୍ଗା ପକ୍ଷୀ ମଧ୍ୟ ସେହିପରି ଅଞ୍ଚଳରେ ବାସକରେ । ଏହା ଅଧିକ ଆର୍ଦ୍ର ଅଞ୍ଚଳରେ ମଧ୍ୟ ଦେଖାଯାଇ ପାରେ ।

କାଠଫୋଡ଼ା (Nut hatch) ପକ୍ଷୀମାନେ ସିଟ୍ଟିଡ଼ି (Sittidae) ପକ୍ଷିବଂଶ ଅନ୍ତର୍ଭୁକ୍ତ । ଏମାନେ କ୍ଷୁଦ୍ର, ବୃକ୍ଷବାସୀ ବା ଗିରିଚୂଡ଼ାଗୃହୀ । ଏମାନେ ଗଛର ଗଣ୍ଡି, ଶାଖା ବା ପଥର ଉପରେ ଉପର ତଳ ଧକେଇ ଚକେଇ ସବେଗରେ ଖଣ୍ଡେ ଦୂର ଦୌଡ଼ିଯାଇ ପୁଣି ଅଟକି ଫାଟମାନଙ୍କରେ ମାଙ୍କଡସା ଓ କୀଟପତଙ୍ଗ ଖୋଜି ବୁଲିବାର ଦେଖାଯାଏ । ସେମାନଙ୍କ ଲାଞ୍ଜ କ୍ଷୁଦ୍ର ଓ ଚତୁର୍ଭୁଜାକାର । ଥଣ୍ଟ କାଠହଣା (Wood packer) ପକ୍ଷୀର ଥଣ୍ଟ ପରି ଲମ୍ବା । ଏକଜାତି କାଠଫୋଡ଼ା ସାରା ଭାରତ ଓ ବାଙ୍ଗଲା ଦେଶରେ ଦେଖିବାକୁ ମିଳେ । ଏହାକୁ ଇଂରାଜୀରେ "ବାଦାମି ପେଟ କାଠଫୋଡ଼ା" (Chestnut bellied Nuthatch) କହନ୍ତି । ବୈଜ୍ଞାନିକ ନାମ "ସିଟ୍ଟା କାସଟାନିଆ" (Sitta castunea) । ହିନ୍ଦି ନାମ କାଠଫୋରିଆ, ଶୀରି । ଓଡ଼ିଆ ଶୀରି, **କାଠଫୋଡ଼ା** (ବର୍ଣ୍ଣଚିତ୍ର 91)—ଏହା ଆକାରରେ ଘରଚଟିଆଠାରୁ କ୍ଷୁଦ୍ର । ପିଠି ପାଖର ବର୍ଣ୍ଣ ଶିଲଟିଆ-ନୀଳ । ପେଟ ପାଖ ଘନ-କହରା । ଥଣ୍ଟ ଲମ୍ବା ଓ ମୁନିଆ । ମାଈ ପକ୍ଷୀର ପେଟ ପାଖ ଫିକା । ଏମାନେ ପତଳା ଜଙ୍ଗଲରେ ଗଛର ଗଣ୍ଡି ବା ଶାଖା ଗୃହପଟେ ଉପର ଆଡ଼କୁ, ଗୋଟିକିଆ ଭାବେ ବା ମାଈ ଅଣ୍ଡିରା ଅଲଗା ଅଲଗା ଭାବେ ମୂଷା ପରି ଛପି ଛପି ଉଠୁଥିବାର ଦେଖିବାକୁ ମିଳେ । ଶୀରି ପକ୍ଷୀ ବଶେଷ ଭାବେ ଗାଁ ପାଖ ଆମ୍ବ ବଗିଚା ବା ଉଚ୍ଚ ଗଛର ଉପବନମାନଙ୍କରେ ବାସକରେ । ଏହାର



ଚିତ୍ର ନଂ 84
ଦର୍ଜି ଟିକ୍କଚଢ଼େଇ
( Tailor Bird )
ପୃଷ୍ଠା ନଂ 152 ଦେଖ



ଚିତ୍ର ନଂ 85
ଦହ୍ୟାଲ
( Magpie Robin )
ପୃଷ୍ଠା ନଂ 153 ଦେଖ

ଚିତ୍ର ନଂ 87
କଲାସ୍ୱିଚ
( Pied Bushchat )
ପୃଷ୍ଠା ନଂ 155 ଦେଖ





ଚିତ୍ର ନଂ ୪୪
ସୂଇ
( Indian Robin )
ପୃଷ୍ଠା ନଂ 156 ଦେଖ

ଚିତ୍ର ନଂ 89

କସ୍ତୁର

( Malabar whistling Thrush )

ପୃଷ୍ଠା ନଂ 157 ଦେଖ






ଚିତ୍ର ନଂ 90
ରମଗଙ୍ଗା ଚଢ଼େଇ
( Grey Tit )
ପୃଷ୍ଠା ନଂ 159 ଦେଖ



ଚିତ୍ର ନଂ 91
କାଠଫୋଡ଼ା ବା ଶୀସ୍
( Chestnutbellied Nuthatch )
ପୃଷ୍ଠା ନଂ 160 ଦେଖ

ଚିତ୍ର ନଂ 92
ଧୂ[illegible] ( Grey Wagtail ) ଓ
ବଡ଼ଖଞ୍ଜନ ( Large Pied Wagtail )
ପୃଷ୍ଠା ନଂ 162 ଦେଖ

ଚିତ୍ର ନଂ 93
ବୃକ୍ଷବାସୀ ଚଟଚର
( Tree Pipit )
ପୃଷ୍ଠା ନଂ 164 ଦେଖ






ଚିତ୍ର ନଂ 94

ଟିକେଲ୍ ଫୁଲଚୁଷି

( Tickell's Flowerpecker )

ପୃଷ୍ଠା ନଂ 166 ଦେଖ



ଚିତ୍ର ନଂ 95

ବାଇଗଣି ଫୁଲଚୁମ୍ବି

( Purple Sunbird )

ପୃଷ୍ଠା ନଂ 167 ଦେଖ



ଚିତ୍ର ନଂ 97
ଘର ଚଡ଼ିଆ
( House Sparrow )
ପୃଷ୍ଠା ନଂ 170 ଦେଖ




ଚିତ୍ର ନଂ 98
ବାୟା ଚଢ଼େଇ
( Baya Weaver Bird )
ପୃଷ୍ଠ 172 ନଂ ଦେଖ




ଚିତ୍ର ନଂ 99
(4) ଲାଲ ବାରମାସୀ ( Red Munia )
(3) ଚେଲ୍ଲିଆ ବାରମାସୀ
( Spotted Munia )
ପୃଷ୍ଠା ନଂ 174 ଦେଖ




ଚିତ୍ର ନଂ 100

ରୁଢ ବା ଲାଲ୍ ରୁଢ

(Common Indian or Hodgson's Rosefinch)

ପୃଷ୍ଠା ନଂ 175 ଦେଖ

ଖାଦ୍ୟାଭ୍ୟାସ ଉଭୟ ଗଙ୍ଗା (Tit) ଓ କାଠହଣା (Woodpecker) ପକ୍ଷୀ ପରି । ଗ୍ରାମଗଙ୍ଗା ଚଢ଼େଇ ପରି କାଠଫୋଡ଼ା ବୃକ୍ଷର ଗଣ୍ଡି ଓ ଶାଖାରେ ଉପର ତଳ ଓ କଡ଼ରେ ଦୋଳାୟିତ ଭାବେ ଗତିକରି ଫାଟମାନଙ୍କରେ କୌତୂହଳ ସହକାରେ ଉଣ୍ଡିବାରେ ଲାଗିଥାଏ । ପୁଣି କାଠହଣା ପକ୍ଷୀପରି ଗଛ ଚଞ୍ଚୁ ଗୁଲ ଉପରେ ଥଣ୍ଟକୁ ଠକ ଠକ କରି ଲୁଚିଥିବା ଆହାର କୀଟମାନଙ୍କୁ ପଦାକୁ ବାହାର କରାଏ । ଏଭଳି ଭାବେ ଖାଦ୍ୟ ଅନ୍ୱେଷଣ କରୁଥିଲାବେଳେ ଶୀଘ୍ର ଚଢ଼େଇ ଆଶ୍ଚର୍ଯ୍ୟଜନକ ତତ୍ପରତା ସହକାରେ ତରୁଶାଖାର ତଳେ ତଳେ ଯିବା ଆସିବା କରିପାରେ । ମାଙ୍କଡ଼ସା କୀଟ ଏବଂ ସେମାନଙ୍କର ଅଣ୍ଡା ଓ ଶୁକ ଏମାନଙ୍କର ପ୍ରଧାନ ଖାଦ୍ୟ; ମାତ୍ର ଗ୍ରାମଗଙ୍ଗା ଚଢ଼େଇ-ପରି ଏମାନେ ମଧ୍ୟ ଶକ୍ତ ଖୋଲପାଯୁକ୍ତ ମଞ୍ଜି ଓ ଫଳ ଖାନ୍ତି । ଏ ସବୁକୁ ସଂଗ୍ରହ କରି ଫାଟରେ କଳା ବାଡ଼େଇଲା ପରି ଭର୍ତ୍ତି କରି ବାରମ୍ବାର ହାତୁଡ଼ିରେ ପାହାର ପକାଇଲା ପରି ମଜବୁତ୍ ଗୋଜିଆ ଥଣ୍ଟରେ ବାଡ଼ାନ୍ତି ଓ ଫଳ ବା ମଞ୍ଜି ଫାଟିଗଲେ ଭିତର ଶସକୁ ଖାନ୍ତି । ଏମାନଙ୍କର ସାଧାରଣ ସ୍ୱର ମୃଷା ପରି କ୍ଷୀଣ ଓ ଚିଁ ଚିଁଆ; ମାତ୍ର ଏହା ଆନନ୍ଦଦାୟକ, ପୁନଃ ପୁନଃ ଉଚ୍ଚାରିତ, ଦୁଇ ସ୍ୱରବିଶିଷ୍ଟ 'ଚପ୍ ଚପ୍' ଶବ୍ଦ ମଧ୍ୟ କରିଥାଏ । ପ୍ରଜନନ ଋତୁରେ ଏମାନେ ଯୋଡ଼ି ଯୋଡ଼ି ହୋଇ ଦେଖାଯାନ୍ତି । ଅନ୍ୟ ସମୟରେ ଏମାନେ କ୍ଷୁଦ୍ର କ୍ଷୁଦ୍ର ବିକ୍ଷିପ୍ତ ଦଳରେ ବୁଲନ୍ତି । ଅନେକ ସମୟରେ ଗ୍ରାମଗଙ୍ଗା ଚଢ଼େଇ ସହିତ ଓ ଅନ୍ୟାନ୍ୟ କୀଟଭୋଜୀ ପକ୍ଷୀମାନଙ୍କ ସହିତ ଦଳବାନ୍ଧି ଜଙ୍ଗଲରେ ବୁଲୁଥିବାର ଦେଖାଯାନ୍ତି । ଶୀଘ୍ର ଚଢ଼େଇ ଗଛରେ ଆପେ ଆପେ ହୋଇଥିବା ଗହ୍ୱର ବା ସିନ୍ଦୂରମୁଣ୍ଡି (Barbet) ଚଢ଼େଇଦ୍ୱାରା କରାହୋଇଥିବା ଖୋଲରେ ପତ୍ର, ହରିଡା (ମସ୍) ଓ ଲୋମରେ ନୀଡ଼ ରଚନାକରେ । ନୀଡ଼ର ମୁଖ ଓଦାମାଟିରେ ଲେସା ହୋଇଥାଏ । ତାହା ଶୁଖିଗଲେ ଭିତରକୁ ଯିବା ଆସିବା କରିବା ପାଇଁ ସୁନ୍ଦର କଣାଟିଏରେ ପରିଣତ ହୁଏ । ଏମାନେ ଥରକେ ଦୁଇଟିରୁ ଛଅଟି ଯାଏ ଅଣ୍ଡା ଦିଅନ୍ତି । ଅଣ୍ଡା ଧଳା ଓ ତା' ଉପରେ ଲାଲରଙ୍ଗର ଛିଟା ପଡ଼ିଥାଏ ।

ଖଞ୍ଜନ (wagtail) ଓ ଚରଚରି (Pipit) ମୋଟାସିଲିଡ଼ି (Motacillidae) ପକ୍ଷୀବଂଶ ଅନ୍ତର୍ଭୁକ୍ତ । ଏମାନେ କୃଶ; ମାତ୍ର ଲାଳିତ୍ୟପୂର୍ଣ୍ଣ ପକ୍ଷୀ । ଏମାନଙ୍କର ଲାଞ୍ଜ ଲମ୍ବା । ସେମାନେ ଘାସପଡ଼ିଆ ବା ସନ୍ତସନ୍ତିଆ ମାଟି ଉପରେ ଦୌଡ଼ି ଦୌଡ଼ି ଗ୍ରେଟ ଗ୍ରେଟ କୀଟପତଙ୍ଗ ଟୁଙ୍କୁଥିବାବେଳେ ଲାଞ୍ଜ ଅବିରାମ ଇତସ୍ତତଃ ଆନ୍ଦୋଳିତ ହେଉଥାଏ । ଆମ ଦେଶରେ ଦେଖାଯାଉଥିବା ଅଧିକାଂଶ ଖଞ୍ଜନ ଓ ଚରଚରି ପକ୍ଷୀ ଶୀତଋତୁରେ ପ୍ରତ୍ନସୁମେରୁ ଅଞ୍ଚଳ (Palaearctic region)ରୁ ଆସିଥାନ୍ତି । ସେମାନଙ୍କ ମଧ୍ୟରୁ

ଗୋଟିଏ ସାଧାରଣ ଶୀତକାଳୀନ ଆଗନ୍ତୁକ ପକ୍ଷୀ ହେଲା **ଖଞ୍ଜନ** ବା ଧଳା ଖଞ୍ଜନ । ଏହାକୁ ଇଂରାଜୀରେ 'ଧଳା ଲଞ୍ଜହଲା ପକ୍ଷୀ' (White Wagtail) କହନ୍ତି । ବୈଜ୍ଞାନିକ ନାମ 'ମୋଟାସିଲ୍ଲା ଆଲ୍‌ବା' (Motacilla alba) । ହିନ୍ଦୀ—ଢୋବନ୍, ଖଞ୍ଜନ । ଏହାର ଆକାର ଘରଚଟିଆ ପରି ହେବ; ମାତ୍ର ଘରଚଟିଆଠାରୁ କୃଶ ଓ ଲାଞ୍ଜ ଅଧିକ ଲମ୍ବା । ଏହାର ପିଠି ପାଖର ବର୍ଣ୍ଣ ମୁଖ୍ୟତଃ ଧୂସର ଓ ପେଟ ପାଖର ବର୍ଣ୍ଣ ଧଳା । ପିଲାଙ୍କୁ ଖୁଆଇଲାବେଳେ ବେକ ତଳକୁ ଏକ ଗ୍ଲେଟ କଳା ଦିଆଯାଏ । ଏହି ପକ୍ଷୀର ବେକ ତଳକୁ ସେଇପରି ଏକ କଳାସିଆ-ଧୂସର ଚିହ୍ନ ଥାଏ; ମାତ୍ର ଶୀତ ଋତୁରେ ଏହି ଚିହ୍ନ ଅନେକ ପରିମାଣରେ ବା ଏକାବେଳକେ ଉଭେଇଯାଏ ଏବଂ ଚିବୁକ ଓ ତଣ୍ଟି ପେଟ-ପାଖ ପରି ଧଳା ହୋଇଯାଏ । ଖଞ୍ଜନ ପକ୍ଷୀମାନେ ସାଧାରଣତଃ ଗୋଟି-ଗୋଟିକିଆ, ଦୁଇଟି ବା ତିନୋଟି କରି ବା କ୍ଷୁଦ୍ର କ୍ଷୁଦ୍ର ଦଳରେ ବକ୍ଷିପ୍ରଭାବେ କ୍ଷୁଦ୍ର ପଦକ୍ଷେପରେ ଭୂମି ଉପରେ ଦୌଡ଼ିବୁଲୁଥାନ୍ତି ଓ ଲାଞ୍ଜ ମୁହୁର୍ମୁହୁଃ ଆନ୍ଦୋଳିତ ହେଉଥାଏ । ସହସା ପ୍ରବଳ ଉଦ୍ୟମ ସହକାରେ ଡେଇଁ, ଏପଟ ବୁଲି ସେପଟେ ଯାଇ କୀଟପତଙ୍ଗ ଟୁଙ୍କନ୍ତି ଓ ବେଳେ ବେଳେ କୀଟ ଧରିବାପାଇଁ ଉପର ଆଡ଼କୁ ଲମ୍ଫ ଦିଅନ୍ତି । ସେମାନେ ଖୋଲା ଜାଗାରେ ବୁଲନ୍ତି । କର୍ଷିତ ଭୂମି, ପତିତ ଭୂମି, ଗଲ୍‌ଫ ଖେଳପଡ଼ିଆ, ମଇଦାନ ଆଦିରେ ଏମାନେ ବୁଲୁଥିବାର ଦେଖାଯାଏ । ଏପରିକି ଜନାକୀର୍ଣ୍ଣ ସହରାଞ୍ଚଳରେ ବହୁ ସଂଖ୍ୟାରେ ଖେଳାଳିମାନେ ଖେଳରତ ଥିଲାବେଳେ ଅନୁଦ୍‌ବିଗ୍ନ ଭାବେ ଖଞ୍ଜନ ପକ୍ଷୀ ଖେଳପଡ଼ିଆରେ କୀଟପତଙ୍ଗ ଖୋଜୁଥାନ୍ତି । ଏମାନେ ଉଡ଼ିଲାବେଳେ କ୍ଷିପ୍ରବେଗରେ ପକ୍ଷ ଝାଡ଼ିବା ଓ ବନ୍ଦ କରିବା ଫଳରେ ଆନ୍ଦୋଳିତ କୁଟିଳ ଛନ୍ଦରେ ଉଡ଼ନ୍ତି । ଉଡ଼ିଲାବେଳେ ସ୍ପଷ୍ଟ 'ଚିଚପ୍, ଚିଚପ୍, ଚିଚପ୍' ଶବ୍ଦ କରନ୍ତି । ପତ୍ରାଚ୍ଛାଦିତ ଗଛ, ନଳବନ ଓ ଆଖୁ କିଆରିରେ ଏମାନେ ବହୁ ସଂଖ୍ୟାରେ ଏକାଠି ରାତ୍ରି ଯାପନ କରନ୍ତି । ଶୀତକାଳରେ ଆମ ଦେଶରେ ଦେଖାଯାଉଥିବା ଅଧିକାଂଶ ଖଞ୍ଜନ ପକ୍ଷୀ ଭାରତବର୍ଷ ବାହାରେ ଉତ୍ତରାଞ୍ଚଳରେ ଅଣ୍ଡା ଦିଅନ୍ତି । ଗୋଟିଏ ରେସ (race)ର ଧଳା ଖଞ୍ଜନ କାଶ୍ମୀରରେ ଅଣ୍ଡା ଦିଏ । ଏମାନଙ୍କର ନୀଡ଼ କପ୍ ପରି; ଘାସ, ଚେରମୂଳ ଓ କେଶରେ ତିଆରି ହୋଇଥାଏ । ପଥର ତଳେ ବା ବୁଦା ଭିତରେ ବା ଝରଣାକୂଳରେ ଉପୁଡ଼ି ପଡ଼ିଥିବା ଗଛର ଚେରମୂଳରେ ଅଥବା ଝରଣା ମଝିରେ ଥିବା କ୍ଷୁଦ୍ର ଟାପୁର ପଥର ତଳେ ନୀଡ଼ ରହିଥାଏ । ଥରକେ ଗୋଟିରୁ ଛଅଟି ଯାଏ ଅଣ୍ଡା ଦିଅନ୍ତି । ଅଣ୍ଡା ଧଳା । ତା' ଉପରେ ଲାଲିଆସିଆ ବାଦାମୀ ରଙ୍ଗର ଛିଟା ଦାଗ ପଡ଼ିଥାଏ ।

**ଚଂଚୁଟି** (ବର୍ଣ୍ଣଚିତ୍ର 92 ଉପର ଛବି)—ଏହାର ଅନ୍ୟ ନାମ ଗୁଣ୍ଡିଖାଇ । ଇଂରାଜୀରେ

ଏହି ପକ୍ଷୀକୁ 'ଧୂସର ଖଞ୍ଜନ' (Grey Wagtail) ବୋଲଯାଏ । ବୈଜ୍ଞାନିକ ନାମ 'ମୋଟାସିଲ୍ଲା କାସପିକା' (Motacilla caspica) । ଆମ ଉପ-ମହାଦେଶର ଅଧିକ ଜଙ୍ଗଲିଆ ଅଞ୍ଚଳରେ ଶୀତଦିନେ ଏହି ଖଞ୍ଜନ ପକ୍ଷୀଟି ପାହାଡ଼ିଆ ଝର ବା ଝରଣା କୂଳରେ, ପାହାଡ଼ିଆ ରାସ୍ତା ତଳେ ବର୍ଷାଜଳ ବହିଯିବା ପାଇଁ ହୋଇଥିବା ନାଳୀ ନିକଟରେ ଗୋଟିକିଆ ଦୌଡ଼ିବୁଲୁଥିବାର ଦେଖିବାକୁ ମିଳେ । ଆମ ଦେଶରେ ଥିଲାବେଳେ ମାଈ ଅଣ୍ଡିରା ଦେଖିବାକୁ ଏକାପରି । ମାତ୍ର ଗ୍ରୀଷ୍ମକାଳରେ ପ୍ରଜନନ ଋତୁରେ ଚିତ୍ରରେ ଦର୍ଶାଯାଇଥିବା ମତେ ଅଣ୍ଡିରା ପକ୍ଷୀମାନଙ୍କର ଚିବୁକ, ତଣ୍ଟି ଓ ଗ୍ରୀବା କଳା ହୋଇଯାଏ । ଏମାନଙ୍କର ସ୍ୱଭାବ ମୋଟାମୋଟିଭାବେ ଧଳା ଖଞ୍ଜନ ଓ ଅନ୍ୟାନ୍ୟ ଖଞ୍ଜନ ପକ୍ଷୀମାନଙ୍କ ପରି । ପ୍ରଜନନ ଋତୁରେ ଅଣ୍ଡିରା ପକ୍ଷୀ ସୁନ୍ଦର ରାବ କରେ । ଏହି ପକ୍ଷୀମାନଙ୍କର ନୀଡ଼ ରଚନା କରି ଅଣ୍ଡା ଦେବାର ନିକଟତମ ସ୍ଥାନ ହେଲା କାଶ୍ମୀର ଓ ହିମାଳୟର ପଶ୍ଚିମାଞ୍ଚଳ । ଏମାନଙ୍କର ନୀଡ଼ ଓ ନୀଡ଼ରଚନା କରିବା ସ୍ଥାନ ଧଳା ଖଞ୍ଜନ ପକ୍ଷୀ ପରି । ଥରକେ ଚାରିଟିରୁ ଛଅଟି ଯାଏ ଅଣ୍ଡା ଦିଅନ୍ତି । ଅଣ୍ଡା ଦେଖିବାକୁ ହଳଦିଆସିଆ ଧୂସର; ନ ହେଲେ ସବୁଜ ଆସିଆ । ତା'ଉପରେ ଲାଲସିଆ ବାଦାମୀ ଛିଟା-ଚିହ୍ନ ପଡ଼ିଥାଏ ।

ଆହୁରି ଅନେକ ଜାତିର ଧୂସର ଓ ହଳଦିଆ ରଙ୍ଗର ଖଞ୍ଜନ ପକ୍ଷୀ ଆମ ଦେଶକୁ ଶୀତକାଳରେ ଆସନ୍ତି । ସେଥିରୁ ଗୋଟିଏ ଜାତି ହଳଦିଆ ଖଞ୍ଜନର ବୈଜ୍ଞାନିକ ନାମ 'ମୋଟାସିଲ୍ଲା ଫ୍ଲାଭା' (Matacilla flava) । ଶୀତଋତୁରେ ସେମାନଙ୍କର ବର୍ଣ୍ଣ ଦେଖି ଏକ ଜାତିର ଖଞ୍ଜନକୁ ଅନ୍ୟ ଜାତିର ଖଞ୍ଜନଠାରୁ ପୃଥକ୍ କରିବା କଷ୍ଟକର । ଉତ୍ତରାଞ୍ଚଳ ଘରକୁ ପ୍ରତ୍ୟାବର୍ତ୍ତନ କରିବାର ଠିକ୍ ପୂର୍ବରୁ ସେମାନଙ୍କଠାରେ ଗ୍ରୀଷ୍ମକାଳର ସ୍ପଷ୍ଟ ବର୍ଣ୍ଣବୈଭବ ଫୁଟିଉଠେ ଓ ସେତେବେଳେ ସେମାନଙ୍କୁ ବିଭିନ୍ନ ଜାତିର ବୋଲି ଜାଣିହୁଏ । ଭାରତୀୟ ଉପଦ୍ୱୀପର ଏକମାତ୍ର ଆବାସୀ ଖଞ୍ଜନ ପକ୍ଷୀ ହେଲା ବଡ଼ ଗୃଣ୍ଡି ବା ବଡ଼ ଗୃଣ୍ଡିଖାଇ ବା **ବଡ଼ ଖଞ୍ଜନ** (ବର୍ଣ୍ଣଚିତ୍ର 92 ତଳ ଛବି) । ଏହାକୁ ଇଂରାଜୀରେ 'ବଡ଼ ଚିତ୍ରିତ ଖଞ୍ଜନ' (Large Pied Wagtail) କହନ୍ତି । ବୈଜ୍ଞାନିକ ନାମ 'ମୋଟାସିଲ୍ଲା ମାଡ଼େରାସପାଟେନ୍‌ସିସ' (Motacilla Moderaspatensis) । ଏହା ସବୁ ଜାତି ଖଞ୍ଜନ ପକ୍ଷୀଠାରୁ ବଡ଼ ଓ ଏହାର ଆକାର ପ୍ରାୟ ଗୋବରା ଚଢ଼େଇ ପରି ହେବ । ଏହାର ବର୍ଣ୍ଣ କଳା-ଧଳା ଓ ଅନେକ ପରିମାଣରେ ଦୟାଳ (Magpie Robin) ପକ୍ଷୀର ପାଟର୍ଣ୍ଣ ପରି; ମାତ୍ର ବଡ଼ ଖଞ୍ଜନର ଆଖି ଉପରେ ଏକ ସ୍ପଷ୍ଟ ଧଳା ଭ୍ରୂଲତା ଥାଏ, ଆଉ ଏହା ଲାଞ୍ଜକୁ ଉପରଆଡ଼କୁ ଟେରେଇ କରି ଟୋକି ଚାଲେ-

ନାହିଁ । ଏହି ଖଞ୍ଜନପକ୍ଷୀ ସାଧାରଣତଃ ଯୋଡ଼ି ଯୋଡ଼ି ହୋଇ ନଦୀ ବା ଗ୍ରାମ୍ୟ ପୋଖରୀ ନିକଟରେ ଦେଖାଯାନ୍ତି । ଏମାନେ ବିଶେଷ କରି ସ୍ୱଚ୍ଛ କଙ୍କରମୟ ପ୍ରବହମାନ ଝରଣା-କୂଳ ଭଲପାନ୍ତି । ଏମାନେ ମନୁଷ୍ୟ ଦେଖିଲେ ଡରିକି ପଳାଇଯାନ୍ତି ନାହିଁ; ବରଂ ଘର ଉପରେ ବସନ୍ତି, ନଚେତ୍ ଧୋବା ଲୁଗା କାଚୁଥିବା ପୋଖରୀ କୂଳରେ ବା ସେହିପରି ସ୍ଥାନରେ ନିର୍ଭୟରେ ଆହାର ଖୋଜି ବୁଲୁଥାନ୍ତି । ସେମାନେ ଅନେକ ରକମର ଉଚ୍ଚ ସୁସ୍ୱର ଶବ୍ଦ କରନ୍ତି । ପ୍ରଜନନ ଋତୁରେ ଅଣ୍ଡିରା ପକ୍ଷୀ ଘର ଉପରେ ବା ପଥର ଉପରେ ବସି ଆନନ୍ଦଦାୟକ ସ୍ୱନ କରେ । ସାଧାରଣ ଭାବେ ବିଚାର କଲେ ଦୟାଲ ପକ୍ଷୀର ସ୍ୱନର କିଛି କିଛି ବଡ଼ ଗୃଣ୍ଡିଖାଇ ପକ୍ଷୀର ସଙ୍ଗୀତରେ ପ୍ରତିଧ୍ୱନିତ ହୋଇଥାଏ । ଏମାନେ କାନ୍ଥର ଗର୍ତ୍ତ, ବାହାରି ପଡ଼ିଥିବା ପ୍ରସ୍ତର ଖଣ୍ଡର ଖୋଲ, ବାସଗୃହର ବରଗା ତଳେ ବା ପୋଲ ତଳେ ଥିବା କଡ଼ି ବା ଖମ୍ବ ଖୋଲରେ ନୀଡ଼ ରଚନା କରନ୍ତି । ନୀଡ଼ କପ୍ ଆକାରର । ଏହା ଚେରମୂଳ, କେଶ, ଲୋମ ଓ ଶୁଖିଲା ଶୈବାଳ (algae)ରେ ତିଆରି ହୋଇଥାଏ । ନୀଡ଼ ଯେଉଁଠି ରଚିତ ହେଉଥାଉନା କାହିଁକି, ତାହା ଜଳ ନିକଟରେ ରହିଥାଏ । ଥରକେ ବଡ଼ ଗୃଣ୍ଡି ତିନୋଟିରୁ ଚାରିଟି ଅଣ୍ଡା ଦିଏ । ତାହା ଧୂସରିଆ ଧଳା, ବାଦାମୀ-ଆଁସିଆ ଧଳା ବା ସବୁଜିଆ ଧଳା । ତା' ଉପରେ ବିଭିନ୍ନ ଆଭାସଯୁକ୍ତ (shade) ବାଦାମୀ ରଙ୍ଗର ରେଖା ଓ ଛିପଛିପିଆ ଚିହ୍ନ ଥାଏ ।

ଚରଚରି (Pipit) ଓ ଖଞ୍ଜନ (Wagtail) ଏକ ପକ୍ଷୀଶ୍ରେଣୀ ଅନ୍ତର୍ଭୁକ୍ତ । ସେମାନେ ପ୍ରାୟ ଏକା ଆକାରର ଓ ଅନେକ ପରିମାଣରେ ସେମାନଙ୍କର ସ୍ୱଭାବ ମଧ୍ୟ ଏକାପ୍ରକାରର । ସେ ଯାହା ହେଉ, ଚରଚରି ପକ୍ଷୀ ଭରତ ପକ୍ଷୀ (Lark) ପରି ବାଦାମୀ ରଙ୍ଗର । ଏହି ବାଦାମୀ ବର୍ଣ୍ଣ କୋମଳ ଓ ଆଖିକୁ ଲାଗେ ନାହିଁ । ଚରଚରି ଖଞ୍ଜନ ପକ୍ଷୀ ତୁଳନାରେ ନହକା, ଲମ୍ବାଳିଆ ଓ ଲାଞ୍ଜ ଅଧିକ ଲମ୍ବା । କେତେକ ଚରଚରି ପକ୍ଷୀଙ୍କୁ ସେମାନଙ୍କର ଆକାର, ବର୍ଣ୍ଣ ଓ ବାସ ଅନୁସାରେ ଚିହ୍ନିବା ସହଜ । ଆଉ କେତେକ ଚରଚରି ପକ୍ଷୀ ମଧ୍ୟରେ ବାହ୍ୟ ଲକ୍ଷଣରେ ଏତେ ସାମଞ୍ଜସ୍ୟ ରହିଥାଏ ଯେ ସେମାନଙ୍କୁ ପୃଥକ କରି ହୁଏ ନାହିଁ । ଅଧିକାଂଶ ଚରଚରି ପକ୍ଷୀ ଶୀତକାଳରେ ଆମ ଦେଶକୁ ଆସନ୍ତି । ଆମ ଦେଶରେ ବିସ୍ତୃତ ଅଞ୍ଚଳରେ ଦେଖାଯାଉଥିବା ଏକ ସାଧାରଣ ପ୍ରବାସୀ ଚରଚରି ପକ୍ଷୀ ହେଲା **ଛାୟାବାସୀ ଚରଚରି** (ବର୍ଣ୍ଣଚିତ୍ର 93)—ଏହାର ଇଂରାଜୀ ନାମ 'ବୃକ୍ଷ ଚରଚରି' (Tree Pipit); ବୈଜ୍ଞାନିକ ନାମ 'ଏନଥାସ ଟ୍ରାଇଭିଆଲିସ୍ ।' (Anthus trinvialis) । ହିନ୍ଦୀରେ ସବୁ ଜାତିର ଚରଚରିଙ୍କୁ

ରୁଗେଲି ଓ ଚରଚରି କହନ୍ତି । ଏହା ବର୍ଣ୍ଣରେ ଅନେକ ପରିମାଣରେ ମାଛି ଘରଚଟିଆ ପରି; ମାତ୍ର ତା'ଠାରୁ କୃଶ, ଥଣ୍ଟ ସରୁଆ ଓ ଲାଞ୍ଜ ଲମ୍ବା । ଲାଞ୍ଜର ବାହାର ଆଡ଼କୁ ଥିବା ପର ଧଳା । ଉଡ଼ି ଆସି ବସିଲାବେଳେ ଏହି ଧଳା ପକ୍ଷ ସ୍ପଷ୍ଟ ଦେଖାଯାଏ । ଏହାର ଉପରେ ପାଖ କଳାଡ଼ୋରିଆ ଦାଗଯୁକ୍ତ ବାଲି-ବାଦାମୀ । ଭ୍ରୂ ସ୍ପଷ୍ଟ ଫିକା ରଙ୍ଗର । ପେଟ ପାଖ ଫିକା ହଳଦିଆ-ବାଦାମୀ ଧଳା । ଛାତି ଅଂଶରେ କଳା ଡୋରିଆ ରେଖା ଚିହ୍ନି ଘନ ଭାବେ ରହିଥାଏ । ସମଗ୍ର ଭାରତୀୟ ଉପଦ୍ୱୀପରେ ପ୍ରତିବର୍ଷ ପତ୍ରଝଡ଼ା ଦେଉଥିବା ଜଙ୍ଗଲାଞ୍ଚଳ, ଆମ୍ବ ବଗିଚା ଓ ଗ୍ରାମ ନିକଟସ୍ଥ ନିକୁଞ୍ଜମାନଙ୍କରେ ଏମାନେ ଶୀତକାଳରେ ଦେଖାଯାନ୍ତି ଅନ୍ୟ ସବୁ ଜାତି ଚରଚରି ଖୋଲାରେ ଚରୁଥିଲାବେଳେ, ଛାୟାବାସୀ ଚରଚରି ସ୍ୱଭାବତଃ ଛାଇ ଜାଗାରେ ଆହାର ଖୋଜି ବୁଲୁଥାଏ । ଏହି ସ୍ୱଭାବ ଦ୍ୱାରା ତାକୁ ଅନ୍ୟ ଚରଚରିମାନଙ୍କଠାରୁ ଚିହ୍ନି ହେବ । ଏହାର ବର୍ଣ୍ଣ ଏପରି ଯେ ଚୁପ୍‌ଚାପ୍ ରହିଥିଲାବେଳେ ଝଡ଼ା ପତ୍ର ସହିତ ତାହା ସୁନ୍ଦର ଭାବେ ମିଳିଥାଏ; ଫଳରେ ଚରଚରିଟାଏ ଅଛି ବୋଲି ଆଦୌ ଜଣା ପଡ଼େ ନାହିଁ । ଏହା ଭୂମିରେ ନିସ୍ତବ୍ଧରେ ଚାଲଫେରା କରେ ଓ ଉଇଭିଲ (Weevil) ପତଙ୍ଗ ଓ ଅନ୍ୟାନ୍ୟ କୀଟ ଟୁଙ୍କୁଥାଏ । ଶାନ୍ତିଭଙ୍ଗ ହେଲେ ଏହା ନିକଟସ୍ଥ ବୃକ୍ଷକୁ ଉଡ଼ିଯାଏ ଏବଂ ଉପଦ୍ରବ ବନ୍ଦ ହେବା ସଙ୍ଗେ ସଙ୍ଗେ ତଳକୁ ଓହ୍ଲାଇ ଆସି ଆହାର ଖୋଜେ । ଉଡ଼ିଲାବେଳେ ଏହା କ୍ଷୀଣ ସ୍ୱରରେ '(ଟି)ସିପ୍—(ଟି)ସିପ୍' ଶବ୍ଦ କରେ । ଆମ ଦେଶରୁ ଦୂରରେ ଉତ୍ତରାଞ୍ଚଳରେ ଏମାନେ ନୀଡ଼ ରଚନା କରି ଅଣ୍ଡା ଦିଅନ୍ତି । ସେଠାରେ ମାଈପକ୍ଷୀକୁ ଆକୃଷ୍ଟ କରିବା ପାଇଁ ଅଣ୍ଡିରା ପକ୍ଷୀ ଅଳ୍ପ ସମୟ ପାଇଁ ମଧୁର ସ୍ୱନ କରିଥାଏ ।

ଆମ ଦେଶର ଏକମାତ୍ର ନିବାସୀ ଚରଚରି ହେଲା **ଭାରତୀୟ ଚରଚରି**—ଏହାକୁ ଇଂରାଜୀରେ 'ଭାରତୀୟ ଚରଚରି' (Indian Pipit) କହନ୍ତି । ବୈଜ୍ଞାନିକ ନାମ 'ଏନ୍ଥାସ ନୋଭିସିଲାଣ୍ଡି' (Anthus Novaesulandiae) । ଏହା ଆମ ଉପମହାଦେଶର ବିସ୍ତୃତ ଅଞ୍ଚଳରେ ବାସକରେ . ଓ ସମତଳ ଅଞ୍ଚଳରେ ନୀଡ଼ ରଚନା କରି ଅଣ୍ଡା ଦିଏ । ଏହି ଚରଚରି ପକ୍ଷୀ ଏକାକୀ ଖୋଲା ଅଞ୍ଚଳରେ ପତିତ ଭୂମି ଓ ଗ୍ରାମ୍ୟ ଗୋଚାରଣ ଭୂମିରେ ଲାଞ୍ଜକୁ ଉପର ତଳ ଆନ୍ଦୋଳିତ କରି ଚଞ୍ଚଳ ଭାବେ ଦୌଡ଼ି ବୁଲୁଥିବାର ଦେଖାଯାଏ । ବେଳେ ବେଳେ ଯୋଡ଼ିଏ ଯୋଡ଼ିଏ ପକ୍ଷୀ ମାତ୍ର ଅଲଗା ଅଲଗା ଭାବେ ଏକାକୀ ବୁଲିବାର ମଧ୍ୟ ଦେଖାଯାଏ । ଉଡ଼ୁଥିବା ସମୟରେ ଏମାନେ କ୍ଷୀଣ ସ୍ୱରରେ 'ସିପିଟ୍-ସିପିଟ୍' ଧ୍ୱନି କରନ୍ତି । ପ୍ରଜନନ ଋତୁରେ ଅଣ୍ଡିରା ପକ୍ଷୀ ଆକାଶରେ କେତେ ମିଟର ଉଚ୍ଚକୁ ଉଡ଼ିଯାଇ ଫଡ଼ଫଡ଼ ଶବ୍ଦ କରି ପକ୍ଷ ସଞ୍ଚାଳନ

କରେ ଓ ଏକପ୍ରକାର କ୍ଷୀଣ କଚ୍‌ମିଚ୍ ଶବ୍ଦ କରି ମିନଟ ଦୁଇପରେ ତଳକୁ ଓହ୍ଲାଇ ଆସେ । ଏମାନଙ୍କର ନୀଡ଼ ଅଗଭୀର କପ୍ ଭଳି ଏବଂ ଘାସ, ଚେର ଓ କେଶରେ ତିଆରି ହୋଇଥାଏ । ବେଳେ ବେଳେ ଏହା ଆଂଶିକ ଭାବେ ଗମ୍ବୁଜ ପରି ହୋଇଥାଏ । ଏମାନେ ନୀଡ଼କୁ ଭୂମିରେ ତିଆରି କରନ୍ତି । ଗାଈ ମଇଁଷି ଖୋଜ ଦ୍ୱାରା ମାଟିରେ ହୋଇଥିବା ଗର୍ତ୍ତ ବା ଢେଲାଏ ମାଟି ତଳେ ବା ଛୋଟ ବୁଦାରେ ନୀଡ଼ ରହିଥାଏ । ଏମାନେ ଥରକେ ତିନ ଗୁରଟି ଅଣ୍ଡା ଦିଅନ୍ତି । ଅଣ୍ଡାର ବର୍ଣ୍ଣ ହଳଦିଆମିଶା ଧଳା ବା ଧୂସରିଆ ଧଳା । ତା' ଉପରେ ବାଦାମୀ ରଙ୍ଗର ଟିପ୍‌ଟିପିଆ ଓ ଛାପଛାପିଆ ଚିହ୍ନ ଥାଏ । ଏହି ଚିହ୍ନଗୁଡ଼ିକ ଅଣ୍ଡାର ଓସାରିଆ ଅଂଶରେ ଅଧିକ ଘନ ।

ଫୁଲଗୁଖି (Flower pecker) ଡିକେଇଡ଼ି (Dicaeidae) ପକ୍ଷୀବଂଶ ଅନ୍ତର୍ଭୁକ୍ତ । ଏହି ଚଢ଼େଇଗୁଡ଼ିକ ଅତି କ୍ଷୁଦ୍ର, ଚଞ୍ଚଳ ଓ ବୃକ୍ଷବାସୀ । ଏମାନଙ୍କର ଲାଞ୍ଜ କ୍ଷୁଦ୍ର, ପାତଳ ଓ ଧାମାନା ବଙ୍କ । ଏମାନଙ୍କର ଥଣ୍ଟ ଗୋଜିଆ ଓ ଫୁଲ ଭିତରକୁ ପୂରାଇବା ଉପଯୋଗୀ । ଗୋଟିଏ ଜାତି ଫୁଲଗୁଖି ପକ୍ଷୀ ସମଗ୍ର ଭାରତ ଓ ବାଙ୍ଗଲା ଦେଶରେ ଦେଖିବାକୁ ମିଳେ । ଇଂରାଜୀରେ ଏହାକୁ **ଟିକେଲ ଫୁଲଚୁଷି** (Tickell's Flower Pecker) (ବର୍ଣ୍ଣଚିତ୍ର 94) କହନ୍ତି । ଏହାର ବୈଜ୍ଞାନିକ ନାମ 'ଡ଼ାଇସିଅମ୍ ଏରିଥ୍ରୋରିଙ୍କସ' (Dicaeum erythrorhynchos) । ହିନ୍ଦୀରେ ସବୁ ଜାତିର ଫୁଲଗୁଖିକୁ 'ଫୁଲଚୁଷି' କହନ୍ତି । ଏହା ଏକ ସଦାଚଞ୍ଚଳ ସବୁଜ-ବାଦାମୀ ଓ ଧୂସର ବର୍ଣ୍ଣର କ୍ଷୁଦ୍ର ପକ୍ଷୀ । ଏହା ଘରଚଟିଆଠାରୁ ବହୁତ ଛୋଟ ଓ ସମ୍ଭବତଃ କ୍ଷୁଦ୍ରତମ ପକ୍ଷୀ । ଏହା କେତେକ ପରିମାଣରେ ମାଈ ଫୁଲଚ (Sunbird) ପରି ; ମାତ୍ର ଏହାର ଥଣ୍ଟ ଛୋଟ ଓ ଥଣ୍ଟର ବର୍ଣ୍ଣ ମାଂସ ପରି ଲାଲବାଦାମୀ । ଏମାନଙ୍କର ଖାଦ୍ୟ ମୁଖ୍ୟତଃ ଫୁଲର ମଧୁ ଓ ଉଇଁଚ ଜାତୀୟ କୋଳି (berry) । ଯେଉଁ ଉଦ୍ଭିଦ ଅନ୍ୟ ଉଦ୍ଭିଦ ଉପରେ ପରଜୀବୀ ସେହିପରି ଉଦ୍ଭିଦର ଫୁଲରୁ ମଧୁ ଖାଇବା ପାଇଁ ଏମାନେ ତତ୍ପରତା ଦେଖାନ୍ତି । ସେଭଳି ଉଦ୍ଭିଦ ହେଲା ମିଜଲ୍‌ଟୋ ଉଦ୍ଭିଦ ଶ୍ରେଣୀ (Mistletoe Family); ଉଦାହରଣ—ମଲ୍ଲଙ୍ଗ (Loranthus) ମିଜଲ୍‌ଟୋ (Viscum) । ମଲ୍ଲଙ୍ଗ ଫୁଲରୁ ମଧୁ ଶୋଷିଲାବେଳେ ଫୁଲଗୁଖି ପକ୍ଷୀ ସେହି ଉଦ୍ଭିଦର ପର-ପରାଗସଙ୍ଗମ ଘଟାଇଥାଏ । ମଲ୍ଲଙ୍ଗ ଓ ମିଜଲ୍‌ଟୋର ପାଚିଲା ଫଳକୁ ଏହି ପକ୍ଷୀ ଗୋଟା ଗୋଟା ଗିଳି ଖାଏ । ଫୁଲଗୁଖି ଏହା ପରେ ଅନ୍ୟ ଗଛରେ ବସି ମଳତ୍ୟାଗ କରେ । ମଳରେ ପରଜୀବୀ ଉଦ୍ଭିଦର ଲଟୁଆ ଓ ଅଠାଳିଆ ମଞ୍ଜି ବାହାରି ଗଛରେ ଲାଗିଯାଏ ଏବଂ ସେଥିରୁ ନୂଆ ଉଦ୍ଭିଦର ଅଙ୍କୁରଣ ହୁଏ । ଏହିରୂପେ

ଗୋଟିଏ ଗଛରୁ ଅନ୍ୟ ଗଛକୁ ଏହି ପରଜୀବୀ ଉଦ୍ଭିଦମାନଙ୍କର ବଂଶ-ବିସ୍ତାର ଘଟିଥାଏ । ଫୁଲଗୁଞ୍ଜି ଚଢ଼େଇମାନଙ୍କର ଖାଦ୍ୟ ସଂଗ୍ରହ ପାଇଁ ନିର୍ଦ୍ଦିଷ୍ଟ ଇଲାକା ଥାଏ ଏବଂ ସେହି ଅଞ୍ଚଳରେ ସେମାନେ ଗୋଟିଏ ଗଛରୁ ଅନ୍ୟ ଗଛକୁ ଯାଇ ଫୁଲରୁ ମଧୁ ସେବନ କରନ୍ତି । ଉଡ଼ିଲାବେଳେ ଓ ପରଜୀବୀ ଉଦ୍ଭିଦ ଭିତରେ ଚଞ୍ଚଳ ଭାବେ ଡେଇଁବୁଲିଲା-ବେଳେ ଏହା ପ୍ରାୟ ଅବିରାମ ଏକପ୍ରକାର 'ଚିକ୍-ଚିକ୍-ଚିକ୍' ଶବ୍ଦ କରେ । ବେଳେ-ବେଳେ ଏହି ଶବ୍ଦ ମଝିରେ ମଝିରେ ଏକପ୍ରକାର କ୍ଷୀଣ କିଚିରି-ମିଚିରି ସଙ୍ଗୀତ ମଧ୍ୟ ଶୁଣିବାକୁ ମିଳେ । ଟିକେଲ୍ ଫୁଲଗୁଞ୍ଜିର ନୀଡ଼ ଝୁଲୁଥିବା ଏକ ଅଣ୍ଡାକାର ଥଳୀ ପରି । ଏହା କେତେକ ପରିମାଣରେ ଫୁଲ୍‌ଚି (Sunbird) ପକ୍ଷୀର ନୀଡ଼ଠାରୁ ଶ୍ରେଷ୍ଠ ଓ ପରିଚ୍ଛନ୍ନ । ଫୁଲଚି ନୀଡ଼ର ବାହାର ଅନ୍ତରୀ ଦ୍ୱାରା ଆବୃତ ହୋଇଥାଏ । ମାତ୍ର ଟିକେଲ ଫୁଲଗୁଞ୍ଜି ଚଢ଼େଇର ନୀଡ଼ର ବାହାର ସଫା । ଏହା କୋମଳ ତନ୍ତୁ ଓ ଫଳ ଉପରର କୋମଳ ରୁଆ ଦ୍ୱାରା ନିର୍ମିତ ହୋଇଥାଏ । ନୀଡ଼ ପଶମ ପରି କୋମଳ । ଏହାର ରଙ୍ଗ ସାଧାରଣତଃ ପାଟଳ-ଆସିଆ ବାଦାମୀ । ନୀଡ଼ ଭୂମିଠାରୁ ଛଅରୁ ଦଶ ମିଟର ଉଚ୍ଚରେ ଡାଳରୁ ଝୁଲୁଥାଏ । ଥରକେ ଟିକେଲ ଫୁଲଗୁଞ୍ଜି ସାଧାରଣତଃ ଦୁଇଟି ଅଣ୍ଡା ଦିଏ । ଅଣ୍ଡା ଦେଖିବାକୁ ଧଳା । ତା' ଉପରେ କୌଣସି ଚିହ୍ନ ନଥାଏ ।

ଆଉ ଜାତିଏ ଫୁଲଗୁଞ୍ଜି ଅଛି । ଏହା ଟିକେଲ ଫୁଲଗୁଞ୍ଜି ପରି ସାଧାରଣ; ଦେଖିବାକୁ ଅନେକଟା ତା'ରି ପରି ଓ ସ୍ୱଭାବ ମଧ୍ୟ ଅନେକ ପରିମାଣରେ ତା'ରି ପରିକା । ଏହାକୁ ଇଂରେଜୀରେ 'ମୋଟା-ଥଣ୍ଟିଆ ଫୁଲଗୁଞ୍ଜି' (Thick-billed Flowerpecker) କହନ୍ତି । ଏହାର ବୈଜ୍ଞାନିକ ନାମ 'ଡାଇସିଅମ୍ ଏଜାଇଲ୍' (Dicaeum agile) । ଏହାକୁ ଟିକେଲ ଫୁଲଗୁଞ୍ଜିଠାରୁ ଚିହ୍ନିବା ପାଇଁ ଲକ୍ଷଣଗୁଡ଼ିକ ହେଲା—ଏହାର ପେଟ ପାଖରେ ଫିକା ବାଦାମୀ ରେଖା ପଡ଼ିଥାଏ ଏବଂ ଥଣ୍ଟ ମୋଟା ଓ ନୀଳ-ଆସିଆ । ଏହାର ଥଣ୍ଟ ଅନେକଟା ଫିନଚ୍ (Finch) ପକ୍ଷୀର ଥଣ୍ଟ ପରି ।

ଫୁଲଚି, ଫୁଲଚୁହିଁ ବା ଫୁଲଚୁଇଁ (Sunbirds or Honeysukers) ନେକ୍‌ଟାରିନିଡ଼ି (Nectariniidae) ପକ୍ଷୀ-ବଂଶ ଅନ୍ତର୍ଭୁକ୍ତ । ଏହି କ୍ଷୁଦ୍ର ପକ୍ଷୀମାନଙ୍କର ବର୍ଣ୍ଣ ଫୁଲଗୁଞ୍ଜିମାନଙ୍କ ପରି ଉଜ୍ଜ୍ୱଳ ଧାତୁ ପରି; ମାତ୍ର ଏମାନଙ୍କର ଥଣ୍ଟ ପାତଳ, ଲମ୍ବା ଓ ଫୁଲରୁ ମଧୁ ଶୋଷିବା ଉପଯୋଗୀ । ସେମାନଙ୍କର ଲମ୍ବା ନଳାକୃତି ଜିଭ ଏଥିରେ ସାହାଯ୍ୟ କରେ । ଫୁଲଚିମାନଙ୍କ ମଧ୍ୟରେ ସବୁଠାରୁ ସାଧାରଣ ପକ୍ଷୀକୁ ଇଂରାଜୀରେ **'ବାଇଗଣି ଫୁଲଚୁଇଁ'** (Purple Sunbird) (ବର୍ଣ୍ଣଚିତ୍ର 95) କହନ୍ତି । ଏହାର ବୈଜ୍ଞାନିକ ନାମ 'ନେକ୍‌ଟାରିନିଆ ଏସିଆଟିକା' (Nectarinia

asiatica)। ଓଡ଼ିଆରେ ସମସ୍ତ ଜାତର ଫୁଲଚୁଡ଼ିଙ୍କୁ ଯେପରି ଫୁଲଚୁଡ଼ି, ଫୁଲିଚ ବା ଫୁଲଚୁହି କହନ୍ତି, ହିନ୍ଦୀରେ ସେହିପରି ସମସ୍ତ ଜାତର ଫୁଲଚୁଡ଼ିଙ୍କୁ 'ସକରଖୋରା' କହନ୍ତି । ବାଇଗଣି ଫୁଲଚୁଡ଼ି ଘରଚଟିଆଠାରୁ ମଧ୍ୟ ଶ୍ରେଷ୍ଠ । ପ୍ରଜନନ ଋତୁରେ ପକ୍ଷୀର ବର୍ଣ୍ଣ ଏହିପରି—ପିଠି ପାଖ ଚକଚକିଆ ଧାତବ ସବୁଜ ଓ ନୀଳଲୋହିତମିଶା କଳା । 'ବାହୁମୂଳ' ସ୍ଥାନରେ ଗୋଛାଏ ଅତ୍ୟୁଜ୍ଜ୍ୱଳ କମଳାଲେମ୍ବୁ ପରି ଲାଲ ରଙ୍ଗର ପର ଥାଏ । ପ୍ରଜନନ ଭିନ୍ନ ଅନ୍ୟ ଋତୁରେ ଅଣ୍ଡିରା ପକ୍ଷୀ ମାଈ ପକ୍ଷୀ ପରି । ମାଈ ପକ୍ଷୀର ବର୍ଣ୍ଣ ଏଇପରି—ଉପର ପାଖ ସବୁଜ-ବାଦାମୀ, ପେଟ ପାଖ ଫିକା ମସିଆ (ଉଜ୍ଜ୍ୱଳ ନୁହେଁ) ହଳଦିଆ । ପକ୍ଷ କଳା । ବକ୍ଷର ମଧ୍ୟସ୍ଥଳରେ ଏକ ଓସାରିଆ କଳା ରେଖା ଆଗରୁ ପଛକୁ (ଉପରୁ ତଳକୁ) ବିସ୍ତୃତ । ଫୁଲଚୁଡ଼ିମାନଙ୍କର ପ୍ରଧାନ ଖାଦ୍ୟ ଫୁଲର ମଧୁ । ସେମାନେ ଯୋଡ଼ି ଯୋଡ଼ି ହୋଇ ଖାଦ୍ୟ ଅନ୍ୱେଷଣରେ ଚଞ୍ଚଳଭାବେ ପକ୍ଷ ସଞ୍ଚାଳନ କରି ଏ ଫୁଲରୁ ସେ ଫୁଲକୁ ଉଡ଼ି ଉପରୁ ତଳକୁ ବା ଅନ୍ୟ ଯେ କୌଣସି ଭାବେ ଫୁଲକୁ ଜାବୁଡ଼ି ଧରି ଦଳମଣ୍ଡଳ (corolla) ଭିତରେ ପାତଳ ବଙ୍କ ଥଣ୍ଟ ପୂରାଇ ମଧୁ ଖାଆନ୍ତି । ବେଳେବେଳେ ଫୁଲଚୁଡ଼ି ପକ୍ଷୀ ଫୁଲ ଉପରେ ପକ୍ଷୀବତ୍ ମଥ୍ (Howk moth) ପରି ଉଡ଼ି, ଦ୍ରୁତବେଗରେ ପକ୍ଷ ସଞ୍ଚାଳିତ କରୁଥିଲା ବେଳେ କ୍ଷଣକ ପାଇଁ ଭାରସାମ୍ୟ ରକ୍ଷା କରି ମାଙ୍କଡ଼ସା ବା କ୍ଷୁଦ୍ର କୀଟଟିଏ ଝୁଙ୍କି ନିଏ । ଅବଶ୍ୟ ଏଭଳି ଭାବରେ ମଧୁ ଖାଇବା ଏହି ପକ୍ଷୀମାନଙ୍କର ସାଧାରଣ ଭାବ ନୁହେଁ । ନବ ଗୋଲାର୍ଦ୍ଧ (New World)ର ଗୁଞ୍ଜନ ପକ୍ଷୀ (Humming birds) ଆମର ଫୁଲଚୁଡ଼ି ପକ୍ଷୀମାନଙ୍କର ଜ୍ଞାତି ନୁହଁନ୍ତି । ଫୁଲ ଉପରେ ଉଡ଼ି ଭାରସାମ୍ୟ ରକ୍ଷା କରି ମଧୁ ଖାଇବା ଗୁଞ୍ଜନ ପକ୍ଷୀମାନଙ୍କର ସାଧାରଣ ଭାବ । ବାଇଗଣି ଫୁଲଚୁଡ଼ି ପୁଷ୍ପଭରା ଶାଖାମାନଙ୍କରେ ଉଡ଼ିବୁଲୁଥିଲାବେଳେ କ୍ଷୁଦ୍ର ଏକପଦବିଶିଷ୍ଟ 'ଉଇଚ୍, ଉଇଚ୍' ଶବ୍ଦ କରେ । ପ୍ରଜନନ ଋତୁରେ ଅଣ୍ଡିରା ପକ୍ଷୀ ଖୋଲା ଜାଗାରେ ପତ୍ରହୀନ ଗଛର ଉପର ଶାଖାରେ ବା ଟେଲିଗ୍ରାଫ୍ ତାର ଉପରେ ବସି ଉତ୍ତେଜିତ ଭାବେ ଗୀତ ଗାଏ । ଏ ସମୟରେ ସେ ଦୁଇକଡ଼କୁ ଦୋହଲେ, ଉତ୍ତେଜିତ ଭାବେ ଡେଣାକୁ ଉପରକୁ ଟେକି ଓ ତଳକୁ ନୁଆଁଇ 'ବଗଲ' (armpit)ରେ ଥିବା ଉଜ୍ଜ୍ୱଳ ହଳଦିଆ ଓ ଲାଲ ରଙ୍ଗର ପକ୍ଷ ପୁଞ୍ଜ ପ୍ରଦର୍ଶନ କରେ ଏବଂ ଲାଞ୍ଜର ପକ୍ଷକୁ ଖୋଲୁଥାଏ ବୁଜୁଥାଏ, ଖୋଲୁଥାଏ ବୁଜୁଥାଏ । ତା'ର ଏ ସମୟର ସଙ୍ଗୀତ ସ୍ଫୂର୍ତ୍ତିଯୁକ୍ତ; ମାତ୍ର ଦ୍ରୁତ ଉଚ୍ଚାରିତ 'ଚଉଇଟ୍, ଚଉଇଟ୍, ଚଉଇଟ୍' ଟକ୍କାର ପରି । ଅନ୍ୟ ଫୁଲଚୁଡ଼ି ପରି, ବାଇଗଣି ଫୁଲଚୁଡ଼ିର ନୀଡ଼ ଅଣ୍ଡାକାର, ଗଛରୁ ଝୁଲୁଥାଏ ଏବଂ କୋମଳ ଘାସ, ଅସ୍କରା ଓ

ଚିତ୍ର ନଂ 101

କଳାମୁଣ୍ଡି ଗାନ୍ଧାମ ପକ୍ଷୀ (Blackheaded Bunting) ଓ

ଲାଲମୁଣ୍ଡି ଗାନ୍ଧାମ ( Redheaded Bunting )

ପୃଷ୍ଠା ନଂ 176 ଦେଖ



ବୁଢ଼ିଆଣୀ ଜାଲରେ ତିଆରି ହୋଇଥାଏ । ନୀଡ଼ର ବାହାର ପଟେ କାଗଜ ପରି ପତଳା ଗଛଛାଲି ଓ ସମ୍ବାଳୁଆ ମଳ ଲେପା ହୋଇଥାଏ । ଅନେକ ସମୟରେ ମନୁଷ୍ୟ ବସାକରୁଥିବା ବଙ୍ଗଳା ଘରର ଲତା ଗଛ ବା ମାଗ୍ନି ବୁଦାରେ ଏମାନେ ନୀଡ଼ ତିଆରି କରନ୍ତି । ନୀଡ଼ ଭୂମି ଉପରୁ ତିନ ମିଟରରୁ ଅଧିକ ଉଚ୍ଚରେ ନଥାଏ । ବାଇଗଣି ଫୁଲଚୁଷି ଥରକେ ଦୁଇ ଓ ତିନୋଟି ଅଣ୍ଡା ଦିଏ । ତାହା ଦେଖିବାକୁ ଧୂସରିଆ ବା ସବୁଜ-ଆସିଆ ଧଳା । ତା' ଉପରେ ବାଦାମୀ ଓ ଧୂସର ବର୍ଣ୍ଣର ଚିହ୍ନ ଥାଏ ।

**ବାଇଗଣି ପିଠ ଫୁଲଚୁଇଁ**—ଏହାକୁ ଇଂରାଜୀରେ 'ବାଇଗଣି ପିଠ୍ଯବିଶିଷ୍ଟ ଫୁଲଚୁଷି' (Purple rumped sunbird) ବୋଲି କହନ୍ତି । ବୈଜ୍ଞାନିକ ନାମ 'ନେକ୍‌ଟାରିନିଆ ଜିଲୋନିକା' (Nectarinia zeylonica) । ଭାରତୀୟ ଉପଦ୍ୱୀପରେ ସମତଳ ଭୂମିରେ ଏହା ଅନ୍ୟ ଏକ ଜାତି ଫୁଲଚୁଷି ପକ୍ଷୀ । ଅଣ୍ଡିରା ପକ୍ଷୀର ମସ୍ତକ, ପିଠି ପାଖ ଓ ଗ୍ରୀବା ମୁଖ୍ୟତଃ ଧାତବ ସବୁଜ, ଗାଢ଼ ଲାଲ ଓ ବାଇଗଣି । ନିତମ୍ବ ଅଂଶ ଧାତବ ନୀଳ-ଆସିଆ ବାଇଗଣି । ପେଟ ପାଖ ଉଜ୍ଜ୍ୱଳ ହଳଦୀ ବର୍ଣ୍ଣ । ମାଈ ପକ୍ଷୀ ମାଈ ବାଇଗଣି ଫୁଲଚୁଷି ପକ୍ଷୀ ପରି; ମାତ୍ର ତା'ର ଚିବୁକ ଓ ତଣ୍ଟି ଅଂଶ ଧୂସରିଆ ଧଳା ଏବଂ ପେଟ ପାଖ ଉଜ୍ଜ୍ୱଳ ହଳଦୀବର୍ଣ୍ଣ ।

ଫୁଲଗୃଣି (Flower pecker) ଓ ଫୁଲଚୁଷି (sunbird) ପକ୍ଷୀ-ଶ୍ରେଣୀର ନିକଟ ଜାତି ହେଲି ଜୋଷ୍ଟେରୋପିଡ଼ି (Zosteropidae) ଶ୍ରେଣୀର ପକ୍ଷୀ । କ୍ଷୁଦ୍ର ଲଳିତା **ବାବୁନା ପକ୍ଷୀ** ଏହି ଶ୍ରେଣୀର (ବର୍ଣ୍ଣଚିତ୍ର 96) । ଏହାର ଇଂରାଜୀ ନାମ 'ଶ୍ୱେତ-ଚକ୍ଷୁ ପକ୍ଷୀ' (White-eye) । ବୈଜ୍ଞାନିକ ନାମ 'ଜୋସଟେରପ୍‌ସ ପାଲପିବ୍ରୋସା (Zosterops palpebrosa) । ହିନ୍ଦୀ ନାମ—ବାବୁନା । ଏହା ଗୋଟିଏ ସବୁଜିଆ-ହଳଦିଆ ଓ ଉଜ୍ଜ୍ୱଳ ହଳଦୀ ବର୍ଣ୍ଣର ଅତି କ୍ଷୁଦ୍ର ପକ୍ଷୀ । ଲାଞ୍ଜ ଚୃରକୋଣିଆ । ଆଖି ଚାରିପଟେ 'ଚଷମା' ଏକ ପରି ସ୍ପଷ୍ଟ ଧଳା ମୁଦ୍ରିକା ଥାଏ । ଥଣ୍ଟ ପାତଳ, ଗୋଳିଆ ଓ ସାମାନ୍ୟ ବଙ୍କା । ଉଦ୍ୟାନ ଓ ଜଙ୍ଗଲିଆ ଅଞ୍ଚଳରେ ଏମାନେ ଛୋଟ ଛୋଟ ଦଳରେ ରହିଥିବାର ଦେଖାଯାଏ । ଗୋଟିଏ ଦଳରେ ପାଞ୍ଚରୁ ୨୦ଟି ଯାଏ ପକ୍ଷୀ ଥାନ୍ତି । ବେଳେବେଳେ ଏହାଠାରୁ ଅଧିକ ସଂଖ୍ୟକ ପକ୍ଷୀ ଥିବା ଦଳ ମଧ୍ୟ ଦେଖିବାକୁ ମିଳେ । ବାବୁନା ପକ୍ଷୀ ପୂର୍ଣ୍ଣପୂରି ବୃକ୍ଷାଶ୍ରୟୀ । ବୃକ୍ଷ ଓ ବୁଦାରେ ଲୁଚିଥିବା ମାଙ୍କଡ଼ସା ଓ କୀଟଙ୍କୁ ଖୁଣ୍ଟିବା ପାଇଁ ପତ୍ର ଓ କଢ଼କୁ ତନ୍ନତନ୍ନ କରି ତନଖି କରିବାରେ ସେମାନଙ୍କର ସମୟ ବିତେ । ସର୍କସରେ ଖେଳ ଦେଖାଇଲା ପରି ଏତେବେଳେ ଏମାନେ ନାନାପ୍ରକାର ଛନ୍ଦ ଓ ଭଙ୍ଗୀରେ ଡାଳପତ୍ରକୁ ଜାବୁଡ଼ି ଧରି ସେସବୁକୁ

ପକ୍ଷୀଶିକ୍ଷା-ନଶିକ୍ଷା କରୁଥାନ୍ତି । ମାଙ୍କଡ଼ସା ଓ କୀଟପତଙ୍ଗ ବ୍ୟତୀତ ସେମାନେ ନାନା ପ୍ରକାର ପାଚିଲା ଫଳ ଓ କୋଳିର ଶସ ଖାଆନ୍ତି ଏବଂ ଅନେକ ଜାତି ଗଛର ଫୁଲରୁ ମଧୁ ଖାଇବା ଫଳରେ ସେମାନେ ପର-ପରାଗ-ସଙ୍ଗମରେ ସହାୟତା କରନ୍ତି । ପତ୍ର ଭିତରେ ଜାଗାକୁ ଜାଗା ଡେଇଁଲା ଓ ଉଡ଼ିଲା ବେଳେ ବାବୁନା ପକ୍ଷୀ ଅବିରତ ଏକ-ପ୍ରକାର କ୍ଷୀଣ ଟୁଣଟୁଣିଆ ବା କଚର-ମିଚର ଶବ୍ଦ କରିଥାନ୍ତି । ପ୍ରଜନନ ଋତୁରେ ଦଳ ଭାଙ୍ଗିଯାଏ । ଅଣ୍ଡିରା ଚଢ଼େଇମାନେ ଏକପ୍ରକାର ସୁନ୍ଦର କ୍ଷୁଦ୍ର ଠୁଣଠୁଣିଆ ସ୍ୱନ କରନ୍ତି । ଏହି ସଙ୍ଗୀତ ଶୁଣିଲେ ହିମାଳୟ ଅଞ୍ଚଳର 'ଫିକାନୀଳ ମକ୍ଷିଧାରକ ପକ୍ଷୀ' (Verditer Flycatcher) ପକ୍ଷୀସ୍ୱନର ଏକ ସଂସ୍କରଣ ପରି ମନେହୁଏ । ଏହି ଗାନ ଆରମ୍ଭ ହେଲାବେଳେ ଅତି କ୍ଷୀଣ, ପ୍ରାୟ ଶୁଣାଯାଏ ନାହିଁ; ତା'ପରେ ଆସ୍ତେ ଆସ୍ତେ ଉଚ୍ଚ ହୁଏ, ପୁଣି ତିନି ଚାରି ସେକେଣ୍ଡ ଭିତରେ କ୍ଷୀଣରୁ କ୍ଷୀଣତର ହୋଇ ମିଳାଇଯାଏ । ବାବୁନା ପକ୍ଷୀ ଚମତ୍କାର ପୋଷା ମାନନ୍ତି । ଖୁବ୍ ଶୀଘ୍ର ପୋଷା ମାନି ବିଶ୍ୱାସରେ ପାଖକୁ ଆସନ୍ତି ଓ ଏକାବେଳକେ ପୋଷ୍ୟ ହୋଇଯାନ୍ତି । ଏମାନଙ୍କର ନୀଡ଼ ଏକ ଶ୍ରେଷ୍ଠ କପ୍ ପରି, ଦକ୍ଷତାର ସହିତ ତନ୍ତୁରେ ତିଆରି ହୋଇଥାଏ ଏବଂ ବୁଢ଼ିଆଣୀ ଜାଲରେ ଭଲ କରି ଲିପା ହୋଇଥାଏ । ଏହି ନୀଡ଼ ଅନେକ ପରିମାଣରେ ହଳଦୀବସନ୍ତ (Oriole) ଚଢ଼େଇ ନୀଡ଼ର ଏକ କ୍ଷୁଦ୍ର ସଂସ୍କରଣ ପରି । ହଳଦୀବସନ୍ତର ନୀଡ଼ ପରି ଏହା ବୃକ୍ଷଡାଳ ଆଗରେ ଦ୍ୱିଶାଖ ଜାଗାରେ ନାବିକମାନଙ୍କର ଦୋଦୁଲ୍ୟମାନ ଶଯ୍ୟା ପରି ଝୁଲୁଥାଏ । ବୁଦା ବା ଶ୍ରେଷ୍ଠ ଗଛରେ ତଳୁ 2।3 ମିଟର ଉଚ୍ଚରେ ନୀଡ଼ ରହିଥାଏ । ବାବୁନା ପକ୍ଷୀ ଥରକେ ଦୁଇ ତିନୋଟି ଅଣ୍ଡା ଦିଏ । ଏହା ଫିକା ନୀଳ ଓ ଦେଖିବାକୁ ସୁନ୍ଦର । ତା' ଉପରେ କୌଣସି ଛିଟା ବା ଦାଗ ଚିହ୍ନ ନଥାଏ । ବେଳେ ବେଳେ ଅଣ୍ଡାର ଓସାରିଆ ପାଖର ଅଗ୍ରଭାଗ ଘନନୀଳ ହୋଇଥିବାରୁ ଟୋପି ପରି ଦେଖାଯାଏ ।

ଚଟକ (Sparrow) ଓ ବାୟା (Weaver) ଚଢେଇ ପ୍ଲୋସେଇଡ଼ି (Ploceidae) ପକ୍ଷୀ-ବଂଶ ଅନ୍ତର୍ଭୁକ୍ତ । ଯେଉଁମାନେ ପକ୍ଷୀମାନଙ୍କ ସମ୍ବନ୍ଧରେ କିଛି ନ ଜାଣନ୍ତି ସେମାନେ ମଧ୍ୟ ଏହି ବଂଶର ପକ୍ଷୀମାନଙ୍କୁ ଜାଣନ୍ତି । ଏମାନେ ଅତି ପରିଚିତ । ଏମାନଙ୍କ ମଧ୍ୟରେ ସର୍ବପ୍ରଧାନ ହେଲା ଘରଚଟିଆ (ବର୍ଣ୍ଣଚିତ୍ର 97)—ଇଂରାଜୀ ନାମ 'ଘରଚଟିଆ' (House sparrow); ବୈଜ୍ଞାନିକ ନାମ 'ପାସେର ଡ଼ୋମେସଟିକାସ' (Passer domesticus) । ହିନ୍ଦୀ ନାମ ଗୌରଯ୍ୟା । ସମଗ୍ର ପୃଥିବୀରେ ଯେଉଁଠି ମନୁଷ୍ୟ ବାସ ପାଇବେ ସେଠି ଘରଚଟିଆ ଦେଖିବେ ।

ବର୍ଣ୍ଣଚକ୍ରରେ ଅଣ୍ଡିରା ଚଢ଼େଇର ଚିତ୍ର ଦିଆଯାଇଛି । ମାଈ ଘରଚଟିଆ ବର୍ଣ୍ଣ ମାଟିଆ ବାଦାମୀ, ପିଠି ପାଖରେ କଳାସିଆ ଓ ଫିକା ବାଦାମୀ ଡୋରିଆ ରେଖା ପଡ଼ିଥାଏ । ପେଟ ପାଖ ଧଳା । ପାହାଡ଼ ଅଞ୍ଚଳରେ ଅବା ସମତଳ ଅଞ୍ଚଳରେ ବାସ କରନ୍ତୁ, ଜନାକୀର୍ଣ୍ଣ ନଗର ଅଥବା କ୍ଷୁଦ୍ର ପଲ୍ଲୀ ଅବା ବଗିଚା ଘରେ ବାସ କରନ୍ତୁ, ସବୁଠାରେ ଘରଚଟିଆ, ମନୁଷ୍ୟ ସାଥିରେ ସହଭୋଜୀ ରୂପେ ବାସକରେ । ଦୂରଦୂରାନ୍ତରେ ମନୁଷ୍ୟ ବସବାସ କରିବାମାତ୍ରେ ଯେଉଁ ପକ୍ଷୀମାନେ ଯାଇ ପହଞ୍ଚନ୍ତି, ସେ ସେମାନଙ୍କ ମଧ୍ୟରେ ପ୍ରଥମ । କ୍ରମେ ସେ ଜାଗାକୁ ସେମାନେ ଆଦରିଯାନ୍ତି । ଶୀତଋତୁରେ ଏହି ପକ୍ଷୀମାନେ ବହୁ ସଂଖ୍ୟାରେ ଏକଜୁଟ ହୋଇ ଶସ୍ୟକ୍ଷେତରେ ଓ ତା' ନିକଟରେ ଚରନ୍ତି । ଭୂମିରେ ବିଛି ହୋଇ ପଡ଼ିଥିବା ଶସ୍ୟ ଓ ବୀଜ ସେମାନଙ୍କର ପ୍ରଧାନ ଆହାର । ସେମାନେ ପାଚିଥିବା ଗହମ ଓ ଅନ୍ୟାନ୍ୟ ଡାଲି ଜାତୀୟ ଶସ୍ୟକୁ ମଧ୍ୟ ଯାଇ ଖାଆନ୍ତି । ବହୁ ସଂଖ୍ୟାରେ ଦଳ ବାନ୍ଧି ଘରଚଟିଆ ଏପରି ଶସ୍ୟକ୍ଷେତ ଉପରେ ଚଢ଼ାଉ କରିବା ଫଳରେ ସେମାନେ ବହୁତ କ୍ଷତି କରିଥାନ୍ତି । ଗ୍ରାମ ଓ ସହରମାନଙ୍କରେ ଘରଚଟିଆଙ୍କ ସଂଖ୍ୟା ଅନେକ ପରିମାଣରେ ଘୋଡ଼ା ଏବଂ ଗାଈମଇଁଷିଙ୍କ ସଂଖ୍ୟା ଉପରେ ନିର୍ଭର କରେ । କାରଣ ସେମାନେ ସେମାନଙ୍କ ମଳରେ ଜୀର୍ଣ୍ଣ ନ ହୋଇ ବାହାରିଥିବା ଶସ୍ୟକୁ ଖୁଣ୍ଟି ଖାଇଥାନ୍ତି । ଘରଚଟିଆମାନେ ମଧ୍ୟ ଉଦ୍ଭିଜ୍ଜ ଓ ଫୁଲର କଢ଼କୁ ନଷ୍ଟ କରି ଦିଅନ୍ତି । ଏଣୁ ଖାଇବା ପାଇଁ ଶ୍ରେଷ୍ଠ ଶ୍ରେଷ୍ଠ କିଆରିରେ ପନିପରିବା ଚାଷ କରୁଥିବା ଲୋକେ ଘରଚଟିଆଙ୍କୁ ପସନ୍ଦ କରନ୍ତି ନାହିଁ । ଏହି ସବୁ ଲୁଣ୍ଠନର ପ୍ରତିତୁଳନ (Counter balance) କରିବା ପାଇଁ ସେମାନେ ଗୃହୀମାନଙ୍କର ପ୍ରଭୂତ ଉପକାର ମଧ୍ୟ କରନ୍ତି । କାରଣ ସେମାନେ ବହୁସଂଖ୍ୟାରେ କୀଟପତଙ୍ଗ ନଷ୍ଟ କରନ୍ତି । ବିଶେଷ କରି ଘରଚଟିଆ ଶାବକମାନଙ୍କୁ ଆହାର ଦେବାପାଇଁ ପ୍ରାୟ କେବଳ ଘାଁ ବାଳୁଆ ଓ ନରମ ଦେହି କୀଟମାନଙ୍କୁ ଫସଲ ଗଛରୁ ସଂଗ୍ରହ କରି ଆଣିଥାଏ । ପ୍ରଜନନ ଋତୁରେ ଅଣ୍ଡିରା ପକ୍ଷୀର ରାବ ଉଚ୍ଚ, ଏକ ଭାବାପନ୍ନ ଏବଂ ବିରକ୍ତିକର 'ଚିଁ, ଚିଁ, ଚିଁ' ବା 'ଚେର, ଚେର' । ଏତେବେଳେ ସେ ତା'ର ନରମ ପରକୁ ଫୁଲାଇ ଦିଏ, ପିଚ୍ଛ ଅଂଶକୁ ଧନୁ ପରି ଅର୍ଦ୍ଧ-ବୃତ୍ତାକାର କରେ, ପକ୍ଷକୁ ଦୁଇ କଡ଼କୁ ଝୁଲାଇଦିଏ । ଅଳପ ଉପରକୁ ଟେକି ରହିଥିବା ପୁଚ୍ଛକୁ ଝୁଙ୍କାଇ ଢଙ୍ଗରେ ଚାଲେ । ପତ୍ରଭରା ଗଛ ବା ବୁଦାରେ ରାତି ଯାପନ କରିବା ପାଇଁ ଘରଚଟିଆମାନେ ଏକତ୍ରିତ ହୁଅନ୍ତି । ଏତେବେଳେ ଶୋଇଲାଯାଏ ସେମାନେ ଭୀଷଣ କଳହ ଓ ଶବ୍ଦ କରନ୍ତି । ଏମାନେ କୁଟା ଓ ଫୋପଡ଼ା ହୋଇଥିବା ଅଳିଆ ସଂଗ୍ରହ କରି ଘରର କଣ ଓ ବରଗାତଳେ ନୀଡ଼ ରଚନା

କରନ୍ତି । ଘରେ ମନୁଷ୍ୟ ବାସ କରୁଥାନ୍ତୁ ବା ନକରୁଥାନ୍ତୁ କିଛି ଯାଏ ଆସେ ନାହିଁ । ଘରଚଟିଆ ଥରକେ ତିନୋଟିରୁ ପାଞ୍ଚଟିଯାଏ ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଫିକା ସବୁଜ-ଆସିଆ ଧଳା । ତା' ଉପରେ ବିଭିନ୍ନ ପ୍ରକାର ବାଦାମୀ ରଙ୍ଗର ଚିହ୍ନ ଥାଏ ।

**ବାୟା ଚଢ଼େଇ** ( ବର୍ଣ୍ଣଚିତ୍ର 98 ) କୁ ଇଂରାଜୀରେ 'ବାୟା ବୁଣାଳି ପକ୍ଷୀ' (Baya Weaver bid) ବୋଲି କହନ୍ତି । ଏହାର ବୈଜ୍ଞାନିକ ନାମ 'ପ୍ଲୋସିଆସ ଫିଲିପାଇନାସ' (Ploceus philippinus) । ହିନ୍ଦୀ ନାମ ବାୟା । ଏମାନେ ତିଆରି କରୁଥିବା ଅସାଧାରଣ ବକଯନ୍ତ୍ର ଆକାରର (Retort-shaped) ନୀଡ଼ ଯୋଗୁ ବିଖ୍ୟାତ । ଗୃହ ଜମି ନିକଟରେ ଗଛଡ଼ାଳରୁ ଏହି ନୀଡ଼ମାନ ଝୁଲି ରହିଥାଏ । ପ୍ରଜନନ ଋତୁରେ ଅଣ୍ଡିରି ପକ୍ଷୀର ସାଜପୋଷାକ ବର୍ଣ୍ଣଚିତ୍ରରେ ପ୍ରଦର୍ଶିତ ହୋଇଛି । ପ୍ରଜନନ ଋତୁ ଭିନ୍ନ ଅନ୍ୟ ସମୟରେ ଅଣ୍ଡିରି ଓ ମାଈ ବାୟା ଚଢ଼େଇ ଦେଖିବାକୁ ଏକାପରି ଏବଂ ସେମାନଙ୍କୁ ପୃଥକ୍ କରି ହୁଏ ନାହିଁ । ସେମାନେ ଦେଖିବାକୁ ଅନେକ ପରିମାଣରେ ମାଈ ଘରଚଟିଆ ପକ୍ଷୀ ପରି; ତଫାତ୍ ଭିତରେ ବାୟା ଚଢ଼େଇର ଥଣ୍ଟ ଅଧିକ ମୋଟ ଓ ଲାଞ୍ଜ ଛୋଟ । ଏମାନେ ଦଳ ଦଳ ହୋଇ ଖୋଲା ସ୍ଥାନରେ, ଗୃହ ଜମି ଗୃହପାଖରେ ବାସ କରନ୍ତି । ବେଳେବେଳେ ଅତି ଅଧିକ ସଂଖ୍ୟାରେ ଦଳ ବାନ୍ଧିଥିବାର ଦେଖାଯାଏ । ସେମାନେ ପାଚିଥିବା ଡାଲିଜାତୀୟ ଶସ୍ୟକ୍ଷେତ୍ର ଉପରେ ଚଢ଼ାଉ କରି କେତେକ ସ୍ଥାନରେ ବହୁତ କ୍ଷତି କରନ୍ତି । ସେମାନେ ଦେଶ ମଧ୍ୟରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ସ୍ଥାନାନ୍ତର ଗମନ କରନ୍ତି । ସେମାନଙ୍କର ଏହି ଅଭିଗମନ ମୌସୁମୀ ବର୍ଷା ଓ ଗୃହକାର୍ଯ୍ୟ ବିଶେଷ କରି ଧାନଗୃହ ଉପରେ ନିର୍ଭର କରେ । ରାତ୍ରି ଯାପନ କରିବା ପାଇଁ ବାୟା ଚଢ଼େଇ ବହୁସଂଖ୍ୟାରେ ନଳ ବଣ ଓ ଆଖୁ କିଆରିରେ ଏକତ୍ରିତ ହୁଅନ୍ତି ଏବଂ ଘରଚଟିଆ ଓ ବଣି ଚଢ଼େଇଙ୍କ ସହ ମିଶି ରାତି କଟାନ୍ତି । ସେମାନଙ୍କର ସାଧାରଣ ଡାକ ଘରଚଟିଆର ଡାକ ପରି 'ଚିଟ୍-ଚିଟ୍-ଚିଟ୍' । ପ୍ରଜନନ ଋତୁରେ ଅଣ୍ଡିରି ବାୟା ପକ୍ଷୀ 'ଚିଟ୍-ଚିଟ୍-ଚିଟ୍' ପଛକୁ ଆନନ୍ଦଜନକ ସଙ୍ଗୀତମୟ ଟଣା 'ଚି-ଇ' ସ୍ୱନ କରେ । ନୀଡ଼କୁ ଜାବୁଡ଼ି ରହି ନୀଡ଼ ବୁଣୁଥିଲା ବେଳେ ମାଈ ପକ୍ଷୀମାନଙ୍କୁ ଆକୃଷ୍ଟ କରିବା ପାଇଁ ଅଣ୍ଡିରି ପକ୍ଷୀମାନେ ଉପରୋକ୍ତମତେ ସମ୍ମିଳିତ ଭାବେ କୋରସ ଗାଇଲା ପରି ଧ୍ୱନି କରନ୍ତି ଏବଂ ଉତ୍ତେଜିତ ଭାବେ ଡେଣା ଫଡ଼ଫଡ଼ କରନ୍ତି । ଏହି ବାୟା ଚଢ଼େଇ ଓ ଅନ୍ୟାନ୍ୟ ଜାତିର ବାୟାମାନଙ୍କର ପ୍ରଜନନ ବେଳର ଆଚରଣ ଅନନ୍ୟ । ସେଇ ଏକ କଲୋନୀରେ, ଅଣ୍ଡିରି ପକ୍ଷୀ ଗୋଟାକ ପରେ ଗୋଟାଏ ନୀଡ଼ ଅଧା କରି ରଚନା କରେ; ଅର୍ଥାତ୍

ଗୋଟାଏ ନୀଡ଼ ଅଧା ରଚନା କରିସାରିଲା ପରେ ଆଉ ଗୋଟିଏ ନୂଆ ନୀଡ଼ ଆରମ୍ଭ କରେ । ସେଇଟି ଅଧା ହୋଇଗଲା ପରେ ଆଉ ଗୋଟିଏ ନୀଡ଼ ବୁଣିବା ଆରମ୍ଭ କରେ । ମାଈ ପକ୍ଷୀଟିଏ ଆସି ତା'ର ସାଥୀ ହେଲେ, ଅଣ୍ଡିରା ପକ୍ଷୀ ଅଧା କରିଥିବା ନୀଡ଼ଟିକୁ ସମ୍ପୂର୍ଣ୍ଣ କରେ । ଏହିରୂପେ ଗୋଟିଏ ଅଣ୍ଡିରା ବାୟା ପାଞ୍ଚଟି ଯାଏ ନୀଡ଼ ରଚନା କରେ ଏବଂ ପ୍ରାୟ ଏକ ସମୟରେ ଦୁଇଟିରୁ ପାଞ୍ଚଟି ଘରେ ମାଈ ପକ୍ଷୀ ସହିତ ସଂସାର କରି ଚୁଆପିଲା କରେ । ନୀଡ଼ ବକଯନ୍ତ୍ର ପରି (retort-shaped) । ଏହା ଝୁଲୁଥାଏ ଓ ଏଥିରେ ଲମ୍ବା ନଳୀ ପରି ପ୍ରବେଶଦ୍ୱାର ରହିଥାଏ । ନୀଡ଼ ଧାନଗଛ ପତ୍ରକୁ ଚିରି କରାଯାଇଥିବା ରୁଆ ଓ ରୁକ୍ଷ ଧାରଯୁକ୍ତ ଘାସର ପତ୍ରରେ ବୁଣା ହୋଇଥାଏ । ବାବୁଲ୍ ଗଛର ଶାଖା, ତାଳ ଗଛର ବୃନ୍ତଯୁକ୍ତ ପତ୍ର ବା ସେହିପରି ଗଛରୁ ନୀଡ଼ଗୁଡ଼ିକ ଗୋଚ୍ଛ ଗୋଚ୍ଛ ହୋଇ ଝୁଲୁଥାଏ । ପାଣି ପାଖ ଗଛରେ ବାୟା ଚଢ଼େଇ ସାଧାରଣତଃ ନୀଡ଼ ରଚନା କରୁଥିବାରୁ ବସାଗୁଡ଼ିକ ପାଣି ଉପରେ ଝୁଲୁଥାଏ । ମାଟି ଓଦା ଥିଲାବେଳେ ତାକୁ ଟିକିଏ ଟିକିଏ ଆଣି ବାୟା ଚଢ଼େଇ ଅଣ୍ଡା କୋଠରିର ଗୁମ୍ବଜରେ ଲଗାଇଥାଏ । ଏହାର କାରଣ କ'ଣ ଜଣାନାହିଁ । ମାଈ ବାୟା ଥରକେ ଦୁଇରୁ ଚାରିଟି ଅଣ୍ଡା ଦିଏ । ଅଣ୍ଡା ଦେଖିବାକୁ ସମ୍ପୂର୍ଣ୍ଣ ଧଳା ।

ଆଉ ଦୁଇଟି ଜାତି ବାୟା ଚଢ଼େଇ ଅଛନ୍ତି । ସେମାନେ ସାଧାରଣ ପକ୍ଷୀ ହେଲେ ମଧ୍ୟ ସେମାନଙ୍କର ବିସ୍ତୃତି ଅପେକ୍ଷାକୃତ ସୀମାବଦ୍ଧ । ଗୋଟିକର ନାମ **ଖୁଦ୍‌ଦିଆ** ଓ ଅନ୍ୟଟିର ନାମ **ସୋରବାୟା** । ଏମାନଙ୍କୁ ଇଂରାଜୀରେ ଯଥାକ୍ରମେ 'ରେଖିତ ବୁଣାଳି ପକ୍ଷୀ' (Striated Weaver Bird) ଓ 'କଳାକଣ୍ଠ ବୁଣାଳୀ ପକ୍ଷୀ' (Blackthroated Weaver Bird) କହନ୍ତି । ଏମାନଙ୍କର ବୈଜ୍ଞାନିକ ନାମ ଯଥାକ୍ରମେ 'ପ୍ଲୋସିଅସ ମାନୟାର' (Ploceus manyar) ଓ 'ପ୍ଲୋସିଅସ ବେଙ୍ଗାଲେନ୍‌ସିସ' (Ploceus benghalensis) । ପ୍ରଜନନ ଋତୁରେ ଅଣ୍ଡିରା ପକ୍ଷୀମାନଙ୍କର ପରର ବର୍ଣ୍ଣ ଦ୍ୱାରା ସେମାନଙ୍କୁ ସହଜରେ ଚିହ୍ନି ହୁଏ । ସେତେବେଳେ ଅଣ୍ଡିରା ଖୁଦ୍‌ଦିଆର ଗୁଢ଼ ହଳଦିଆ ବାଦାମୀ, ତା' ଉପରେ କଳାରଙ୍ଗର ରେଖା ଦାଗ ସ୍ପଷ୍ଟଭାବେ ପଡ଼ିଥାଏ ଓ ମସ୍ତକର ଚୂଡ଼ା ଉଜ୍ଜ୍ୱଳ ହଳଦିଆ । ପ୍ରଜନନ ଋତୁରେ ଅଣ୍ଡିରା ସୋର ବାୟାର ମସ୍ତକର ଶିଖର ଉଜ୍ଜ୍ୱଳ ସ୍ୱର୍ଣ୍ଣାଭ ହଳଦିଆ, କଣ୍ଠ ଧଳା ଓ ପେଟ ପାଖ ଧଳା । ପେଟ ପାଖର ଧଳା ଅଂଶ ଉର୍ଦ୍ଧିର ଧଳା ଅଂଶଠାରୁ ଏକ ସ୍ପଷ୍ଟ କଳା ଗୁଢ଼ ପଟି ଦ୍ୱାରା ପୃଥକ୍ ରହିଥାଏ । ପାଣି ବା ଜଳାଭୂମିରେ ଉଚ୍ଚ ଘାସ ଭିତରେ ଉଭୟ ଜାତିର ବାୟା ପକ୍ଷୀ ନୀଡ଼ ରଚନା କରିଥାନ୍ତି ।

**ଲାଲ ବାରମାସୀ** (ବର୍ଣ୍ଣଚିତ୍ର 99-4) । ଏହାକୁ ଇଂରାଜୀରେ 'ଲାଲ ମୁନିଆ' (Red Munia) ଓ ହିନ୍ଦୀରେ ଲାଲ, ଲାଲ ମୁନିଆ କହନ୍ତି । ବୈଜ୍ଞାନିକ ନାମ 'ଏସଟ୍ରିଲ୍‌ଡ଼ା ଆମାନ୍‌ଡ଼ଭା' (Estrilda amandava) । ଏହା ଘରଚଟିଆଠାରୁ ସାନ । ବର୍ଣ୍ଣଚିତ୍ରରେ ପ୍ରଜନନ ଋତୁର ସାଜପୋଷାକରେ ପୁରୁଷ ପକ୍ଷୀର ଚିତ୍ର ଦିଆଯାଇଛି । ଅନ୍ୟ ଋତୁରେ ପୁରୁଷ ଓ ସ୍ତ୍ରୀ ପକ୍ଷୀ ଏକାପରି । ସେତେବେଳେ ସେମାନଙ୍କର ବର୍ଣ୍ଣ ହେଲା—ପିଠି ପାଖ ବାଦାମୀ, ତା' ଉପରେ ବିକ୍ଷିପ୍ତ ଭାବେ ଧଳା ଟିପଟିପିଆ ଚିହ୍ନ ଥାଏ । ଥଣ୍ଟ ଓ ନିତମ୍ବ ଅଂଶ ଗାଢ଼ ଲାଲ । ଲାଞ୍ଜ ଗୋଲାକାର; ତେଲିଆ ବାରମାସୀ (Spotted Munia) ପରି ଗୋଜିଆ ନୁହେଁ । ବୃତ୍ତି ଓ ଆଚରଣରେ ଏହି ବାରମାସୀ ଚଢ଼େଇଟି ବାରମାସୀମାନଙ୍କର ପ୍ରରୂପ ବୋଲି କୁହାଯାଇ-ପାରେ । ସନ୍ତସନ୍ତିଆ ସ୍ଥାନମାନଙ୍କରେ ବିଶେଷ କରି ଜୋର ନିକଟରେ ଶରବଣ ବା ଫୁଲ ଧରୁଥିବା ଉଚ୍ଚ ଘାସବଣରେ ଲାଲ ବାରମାସୀ ପକ୍ଷୀ ଦଳ ଦଳ ହୋଇ ରହନ୍ତି । ଘାସର ବୀଜ ଓ କୀଟପତଙ୍ଗ ଏମାନଙ୍କର ଆହାର । ପ୍ରଜନନ ଋତୁରେ ପୁରୁଷ ପକ୍ଷୀମାନେ କ୍ଷୀଣ ସ୍ୱରରେ ବହୁକ୍ଷଣ ଧରି କିଚିର-ମିଚିର ଶବ୍ଦ କରନ୍ତି । ଲାଲ ବାରମାସୀକୁ ଲୋକେ ପିଞ୍ଜରାରେ ପୂରାଇ ପାଳନ୍ତି । ଏଣୁ ଅନେକ ସମୟରେ ଏହା ପିଞ୍ଜରା-ପକ୍ଷୀ ଭାବେ ଦେଖିବାକୁ ମିଳେ । ପ୍ରକୃତି-ରାଜ୍ୟରେ ଲାଲ ବାରମାସୀ କେଉଁଠି ଥାଏ ଲୋକେ ତାହା ଜାଣନ୍ତି ନାହିଁ କି ଦେଖନ୍ତି ନାହିଁ । ଏମାନଙ୍କର ନୀଡ଼ ଘାସରେ ତିଆରି ହୋଇଥାଏ, ଗୋଲାକାର ଓ ତା'ର ଦ୍ୱାର କଡ଼କୁ ରହିଥାଏ । ନୀଡ଼ ଭିତରେ ସୂକ୍ଷ୍ମ ଘାସ ଓ ପର ଦିଆଯାଇଥାଏ । ବୁଦାମାନଙ୍କରେ ନୀଡ଼ ଭୂମିଠାରୁ ଅଳ୍ପ ଉଚ୍ଚରେ ରହିଥାଏ । ଏମାନେ ଥରକେ ସାଧାରଣତଃ ଚାରିଟିରୁ ସାତଟି ଯାଏ ଅଣ୍ଡା ଦିଅନ୍ତି । ଅଣ୍ଡାର ବର୍ଣ୍ଣ ନିର୍ମଳ ଧଳା ।

**ତେଲିଆ ବାରମାସୀ** (ବର୍ଣ୍ଣଚିତ୍ର 99-3)—ଇଂରାଜୀରେ ଏହାକୁ ଟିପଟିପିଆ ବାରମାସୀ (Spotted Munia) କୁହାଯାଏ । ବୈଜ୍ଞାନିକ ନାମ 'ଲଙ୍କ୍ୟୁରା ପାଙ୍କ୍‌ଟୁଲାଟା'' (Lonchura punctulata) । ହିନ୍ଦୀ ନାମ—ତେଲିଆ ମୁନିଆଁ, ସିନେଓ୍ୱାଜ୍ । ଏହା ଆକାରରେ ଲାଲ ବାରମାସୀ ପକ୍ଷୀ ପରି; ମାତ୍ର ଲାଞ୍ଜ ଗୋଜିଆ । ପ୍ରଜନନ ଋତୁ ଭିନ୍ନ ଅନ୍ୟ ଋତୁରେ ମାଈ ଓ ଅଣ୍ଡିରା ପକ୍ଷୀ ଏବଂ ଅପ୍ରାପ୍ତବୟସ୍କ ଅଣ୍ଡିରା ପକ୍ଷୀର ବର୍ଣ୍ଣ ଊଣା ଅଧିକେ, ସାଧାରଣଭାବେ ବାଦାମୀ । ଗୃହ-ଜମି ନିକଟରେ ତେଲିଆ ବାରମାସୀ ଦଳ ଦଳ ହୋଇ ଦେଖାଯାନ୍ତି । ଗୋଟିଏ ଗୋଟିଏ ଦଳରେ ଦୁଇଶହ ଯାଏ ପକ୍ଷୀ ଥାନ୍ତି । ଏମାନେ ଡେଇଁ ଡେଇଁ ଭୂମି ଉପରେ ବିକ୍ଷିପ୍ତଭାବେ ପଡ଼ିଥିବା ଘାସମଞ୍ଜିକୁ ଟୁଙ୍ଗି ଖାନ୍ତି । ବେଳେବେଳେ ବର୍ଷା ପରେ ଉଇ-

ହୁଙ୍କାରୁ ଝିଙ୍କପୋକ ବାହାରୁଥିଲାବେଳେ ସେଗୁଡ଼ିକୁ ଧରି ଖାନ୍ତି । ଶାନ୍ତିଭଙ୍ଗ ହେଲେ ଚଢ଼େଇଗୁଡ଼ିକ କ୍ଷୀଣ କିଚିର୍-ମିଚିର ଶବ୍ଦ କରି ନିକଟସ୍ଥ ଗଛକୁ ଉଡ଼ିଯାନ୍ତି । ଠେଲିଆ ବାରମାସୀ ପକ୍ଷୀ ଦଳ ଉଡ଼ିଗଲାବେଳେ ଘନଭାବେ ତରଙ୍ଗାୟିତ ରେଖାରେ ଯାତ୍ରା କରନ୍ତି । ଏଭଳି ଉଡ଼ନ୍ତ ଦୃଶ୍ୟ ବାରମାସୀ ପକ୍ଷୀମାନଙ୍କର ବିଶେଷତ୍ୱ । ଲାଲ ବାରମାସୀ ପକ୍ଷୀର ନୀଡ଼ ପରି ଏମାନଙ୍କର ନୀଡ଼ ଗୋଲାକାର । ନୀଡ଼ର ଦ୍ୱାର କଡ଼କୁ ଥାଏ ଓ ତାହା ଟିକେ ଲମ୍ବି ଯାଇ ଗ୍ରେଟ ନଳ ପରି ହୋଇଥାଏ । ବୁଦାରେ ଭୂମିଠାରୁ ଅଳ୍ପ ଉଚ୍ଚରେ ନୀଡ଼ ରହିଥାଏ । ଅବଶ୍ୟ ବେଳେ ବେଳେ 10।15 ମିଟର ଉଚ୍ଚରେ ତାଳଗଛ ଜାତୀୟ (Palmyra palm) ଗଛର ଡାଳ ବା ମଥାରେ ଠେଲିଆ ବାରମାସୀର ନୀଡ଼ ଦେଖିବାକୁ ମିଳେ । ଥରକେ ସାଧାରଣତଃ ଏହି ପକ୍ଷୀ ଚାରିଟିରୁ ଆଠଟି ଯାଏ ନିର୍ମଳ ଧଳା ବର୍ଣ୍ଣର ଅଣ୍ଡା ଦେଇଥାଏ ।

ଫିନ୍ଚ (Finch) ପକ୍ଷୀମାନେ ଫ୍ରିନ୍ଜିଲ୍ଲିଡ଼ି ( Fringillidae) ପକ୍ଷୀଶ୍ରେଣୀ ଅନ୍ତର୍ଭୁକ୍ତ । ଏମାନେ ଘର'ଚଟିଆମାନଙ୍କର ନିକଟ ଜ୍ଞାତି । ଏମାନେ ଘରଚଟିଆ ପରି ଦେଖିବାକୁ; ମାତ୍ର ସାଧାରଣତଃ ଉଜ୍ଜ୍ୱଳ ବର୍ଣ୍ଣର । ଭାରତୀୟ ଫିନ୍ଚ ପକ୍ଷୀର ଏକ ସାଧାରଣ ଉଦାହରଣ ହେଲା **ତୁତ** ବା **ଲାଲତୁତ** ( ବର୍ଣ୍ଣଚିତ୍ର 100 ) । ଏହାକୁ ଇଂରାଜୀରେ 'ସାଧାରଣ ଭାରତୀୟ ଗୋଲାପି ଫିନଚ୍' (Common Indian Rosefinch) ଓ 'ହଗସନ୍ ଗୋଲାପି ଫିନ୍ଚ' (Hogson's Rosefinch) କହନ୍ତି । ବୈଜ୍ଞାନିକ ନାମ 'କାରପୋଡ଼େକାସ ଏରିଥ୍ରିନାସ' (Carpodacus erythrinus) । ହିନ୍ଦୀ ନାମ—ତୁତି, ଲାଲତୁତି । ଏହା ଭାରତୀୟ ଉପଦ୍ୱୀପକୁ ଶୀତ କାଳରେ ଆଗନ୍ତୁକ ପକ୍ଷୀଭାବେ ଆସିଥାଏ । ଅଣ୍ଡିରା ପକ୍ଷୀର ମସ୍ତକ, ଗ୍ରୀବା ଓ କାନ୍ଧ ଅଂଶ ସୁନ୍ଦର ଗୋଲାପି ରଙ୍ଗ । ମାଈ ପକ୍ଷୀର ବର୍ଣ୍ଣ ସବୁଜ ଆଭାଯୁକ୍ତ ବାଦାମୀ । ଅଣ୍ଡିରା ଓ ମାଈ ପକ୍ଷୀ ଉଭୟର ଥଣ୍ଟ ଶଙ୍କୁାକାର (Conical), ଲାଞ୍ଜ ସ୍ପଷ୍ଟଭାବେ ଦ୍ୱିଶାଖ ଓ ପକ୍ଷରେ ଫିକା ଯୋଡ଼ା ଶଳାକା ରେଖା ଥାଏ । ଶଙ୍କୁାକାର ଥଣ୍ଟ ଫିନ୍ଚ୍ ପକ୍ଷୀମାନଙ୍କର ବିଶେଷତ୍ୱ । ଲାଲତୁତି ଶରତ୍ କାଳରେ ଆସି ଆମ ଦେଶରେ ପହଞ୍ଚନ୍ତି । ଶୀତକାଳଟି ଏଠାରେ କଟାଇ ଗ୍ରୀଷ୍ମ ଋତୁ ଆରମ୍ଭ ହେବା ପୂର୍ବରୁ ସ୍ୱଦେଶକୁ ବାହୁଡ଼ିଯାନ୍ତି । ଶରତ୍ କାଳରେ ଏଠାକୁ ଆସିଥିବାବେଳେ ଅଣ୍ଡିରାପକ୍ଷୀମାନଙ୍କର ପକ୍ଷଧାରର ବର୍ଣ୍ଣ ଫିକା ଥାଏ । ଯିବା ପୂର୍ବରୁ ନୂଆ ପର ଉଠେ ବା ପକ୍ଷର କ୍ଷୟ ଯୋଗୁ ଘନ ଲାଲ ଦେଖାଯାଏ । ଲାଲ ତୁତି ପକ୍ଷୀ ଦଳ ଦଳ ହୋଇ କୃଷିଭୂମି ନିକଟରେ ଦେଖାଯାନ୍ତି । ଗୋଟିଏ ଗୋଟିଏ ଦଳରେ ଦଶଟିରୁ କୋଡ଼ିଏଟି ଯାଏ ପକ୍ଷୀ ଥାନ୍ତି ।

ଏମାନେ ଗୁଳ୍ମୋଦ୍ୟାନ ଓ ଶସ୍ୟକ୍ଷେତ୍ରରେ ଖାଦ୍ୟ ସଂଗ୍ରହ କରିଥାନ୍ତି । ଫୁଲର କଢ଼, ନାଗଫେଣି ଫଳ, ଭଇଁଚ ଜାତୀୟ କୋଳି, ବର ଓ ଓସ୍ତ ଗଛର ଫଳ, ମିଳାଲେ ବାଉଁଶ ଗଛର ମଞ୍ଜି, ପାଚିଲା ଜହ୍ନା (jowar), ପେସି (linseed) ଓ ବାଜରା ଆଦି ଶସ୍ୟ ଏମାନଙ୍କର ପ୍ରଧାନ ଖାଦ୍ୟ । ଶିମିଳି (Salmalia), ପାଳଧୁଆ (Erythrina) ଆଦି ଗଛର ଫୁଲରୁ ଏମାନେ ନିୟମିତ ମଧୁ ଆହରଣ କରନ୍ତି । ଫୁଲ ଭିତରେ ମୁହଁ ପୂରାଇ ମଧୁ ସଂଗ୍ରହ କଲାବେଳେ ଏମାନଙ୍କର କପାଳ ଓ ଗଳାର ପରରେ ପରାଗ ଲାଗିଯାଏ ଏବଂ ଅନ୍ୟ ଫୁଲକୁ ଯାଇ ମଧୁ ସଂଗ୍ରହ କଲାବେଳେ ସେଠାରେ ପୂର୍ବ ଗଛର ପରାଗ ପଡ଼େ । ଏହିପରିଭାବେ ଲାଲଭୁଡ଼ି ଏହି ଗଛମାନଙ୍କରେ ପର-ପରାଗ-ସଙ୍ଗମରେ ସାହାଯ୍ୟ କରନ୍ତି । ଏହି ପକ୍ଷୀର ସାଧାରଣ ସ୍ୱନ ଏକପ୍ରକାର ସଙ୍ଗୀତମୟ ପ୍ରଶ୍ନବାଚକ ସୁସ୍ୱର ଶବ୍ଦ 'ଟୁଇ ?' ବା 'ଚୁଉଇ ?' ପରି ଶୁଣାଯାଏ । ପକ୍ଷୀଗୁଡ଼ିକ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଉଡ଼ି ବୁଲୁଥିଲାବେଳେ ଏହିପରି ଶବ୍ଦ ଅବିରାମ ଭାବେ କରୁଥାନ୍ତି । ପ୍ରଜନନ ପାଇଁ ସ୍ୱଦେଶକୁ ବାହୁଡ଼ିଯିବା ପୂର୍ବରୁ ସମୟ ସମୟରେ ଅଣ୍ଡିରା ମାନଙ୍କର ପ୍ରୀତିକର ଉଚ୍ଚ ସଙ୍ଗୀତ-ଧ୍ୱନି ଶୁଣିବାକୁ ମିଳେ । ଲାଲଭୁଡ଼ି କାଶ୍ମୀର ଓ ପଶ୍ଚିମ ହିମାଳୟ ଅଞ୍ଚଳରେ ମଧ୍ୟମ ଧରଣର ଉଚ୍ଚ ଭୂମିରେ ନୀଡ଼ ରଚନା କରିଥାନ୍ତି । ନୀଡ଼ କପ ପରି ଘାସରେ ତିଆରି ହୋଇଥାଏ । ସେଥିରେ ଚେର ଓ କେଶ ମଧ୍ୟ ଦିଆଯାଇଥାଏ । ଭୂମିଠାରୁ ଏକ ବା ଦୁଇମିଟର ଉଚ୍ଚରେ ବଣୁଆ ଗୋଲାପ ବା ସେହିପରି କଣ୍ଟାଯୁକ୍ତ ଗଛରେ ନୀଡ଼ ରଚିତ ହୋଇଥାଏ । ଥରକେ ତିନି ଗୋଟି ଅଣ୍ଡା ଦିଅନ୍ତି । ଅଣ୍ଡା ଦେଖିବାକୁ ନୀଳ । ତା' ଉପରେ କଳାସିଆ ଫିକା ଲାଲ ରଙ୍ଗର ଦାଗ ଓ ଛିଟା-ଚିହ୍ନ ପଡ଼ିଥାଏ ।

ପାସାରିଫରମିସ (Passeriformes) ପକ୍ଷୀବର୍ଗର ଶେଷ ପକ୍ଷୀ-ବଂଶ ହେଲା ଏମ୍‌ବେରିଜିଡ଼ି (Emberizidae) । ଗାନ୍ଧାମ ପକ୍ଷୀ (Bunting) ଏହି ବଂଶ ଅନ୍ତର୍ଭୁକ୍ତ । ମୋଟାମୋଟି ଭାବେ ଦେଖିବାକୁ ଗଲେ ଗାନ୍ଧାମ ପକ୍ଷୀ ଫିନ୍‌ଚ ପକ୍ଷୀ ପରି; ମାତ୍ର ସେମାନଙ୍କଠାରୁ ପାତଳା, ଦେହ ଓ ଲାଞ୍ଜ ଅଧିକ ଲମ୍ବା । ଚରଚରି (Pipit) ପକ୍ଷୀମାନଙ୍କ ପରି ଅନେକ ଗାନ୍ଧାମ ପକ୍ଷୀଙ୍କର ଲାଞ୍ଜର ବାହାର ଆଡ଼କୁ ଥିବା ପରରେ ଧଳା ଅଂଶ ଥାଏ ଓ ଉଡ଼ୁଥିଲାବେଳେ ସ୍ପଷ୍ଟ ଦେଖାଯାଏ । ଗାନ୍ଧାମ ପକ୍ଷୀମାନଙ୍କ ମଧ୍ୟରେ ଦୁଇଟି ଜାତି ପକ୍ଷୀ ବେଶ୍ ପରିଚିତ । ସେଥିରୁ ଗୋଟିଏ ହେଲା **କଳାମୁଣ୍ଡି ଗାନ୍ଧାମ ପକ୍ଷୀ** (Blackheaded Bunting) ଓ ଅନ୍ୟଟି **ଲାଲମୁଣ୍ଡି ଗାନ୍ଧାମ ପକ୍ଷୀ** ( Redheaded Bunting ) ( ବର୍ଣ୍ଣ ଚିତ୍ର 101 ) । ଏମାନଙ୍କର

ବୈଜ୍ଞାନିକ ନାମ ଯଥାକ୍ରମେ 'ଏମ୍‌ବେରିଜା ମେଲନୋସେଫାଲା' (Emberiza melanocephala ) ଓ 'ଏମ୍‌ବେରିଜା ବ୍ରୁନିସେପ୍‌ସ' ( Emberiza bruniceps )। ହିନ୍ଦୀରେ ଦୁଇଟି ଯାକ ପକ୍ଷୀଙ୍କୁ ଗାନ୍ଦାମ ବୋଲି କହନ୍ତି । ବର୍ଣ୍ଣିତ ଚିତ୍ରରେ ଦୁଇ ଜାତି ଅଣ୍ଡିରି ପକ୍ଷୀର ଚିତ୍ର ଦିଆଯାଇଛି । ଏ ଦୁଇ ଜାତି ପକ୍ଷୀ ଘରଚଟିଆଠାରୁ ସାମାନ୍ୟ ବଡ଼ ଏବଂ ଆମ ଦେଶକୁ ଶୀତକାଳରେ ଆଗନ୍ତୁକ ପକ୍ଷୀଭାବେ ଆସିଥାନ୍ତି । ମାଈ କଳାମୁଣ୍ଡି ଗାନ୍ଦାମର ପିଠି ପାଖ ହଳଦିଆ-ବାଦାମୀ; ମାତ୍ର ମାଈ ଲାଲମୁଣ୍ଡି ଗାନ୍ଦାମର ପିଠି ପାଖ ଧୂସର-ବାଦାମୀ । ଉଭୟର ତଳ ପାଖର ବର୍ଣ୍ଣ ଫିକା ହଳଦିଆ-ବାଦାମୀ ଓ ଘନ ହଳଦିଆ ରଙ୍ଗର ପ୍ରଲେପ ଦିଆଯାଇଥିବା ପରି ମନେହୁଏ । ଶୀତ ଋତୁରେ ସେମାନେ ବହୁସଂଖ୍ୟାରେ ଦଳ ଦଳ ହୋଇ ଦେଖାଯାନ୍ତି । ଅନେକ ସମୟରେ ଗୋଟିଏ ଦଳରେ ଦୁଇ ଜାତିର ପକ୍ଷୀ ଥାନ୍ତି । ମଝିରେ ମଝିରେ ବୁଦା ଓ ବାବୁଲ ଗଛର ଜଙ୍ଗଲ ଥିବା କୃଷି କ୍ଷେତରେ ସେମାନଙ୍କୁ ଦେଖିବାକୁ ମିଳେ । ପାଚିଲା ଜହ୍ନା (Jowar), ଗହମ, ବାଜରା ଓ ଅନ୍ୟାନ୍ୟ ଡାଲି ଜାତୀୟ ଶସ୍ୟ କ୍ଷେତରେ ସେମାନେ ବହୁ ସଂଖ୍ୟାରେ 'ବାଦଲ' (cloud) ପରି ଆସି ପଡ଼ନ୍ତି ଏବଂ ଅନେକ ସମୟରେ ଏସବୁ ଫସଲର ବେଶ୍ କିଛି କ୍ଷତି କରନ୍ତି । ଫସଲକୁ କାଟି ଦେଲେ ମଧ୍ୟ ସେମାନଙ୍କ ଉତ୍ପାତରୁ ରକ୍ଷା ମିଳେନାହିଁ । ସେସବୁ କଟା ହୋଇ ଜମା ହୋଇଥିବା ସ୍ଥାନକୁ ଆସି ସେମାନେ ଝୁଙ୍କି ଲାଗନ୍ତି । ଫସଲକୁ ବେଙ୍ଗଲା ପକାଇ ଉଠାଇ ନେଲେ ଯାଇ ରକ୍ଷାମିଳେ । ବାବୁଲ ଗଛର ଘନ ସବୁଜ ପତ୍ରର ପୃଷ୍ଠଭୂମିରେ ମେଞ୍ଚା ମେଞ୍ଚା ଉଜ୍ଜ୍ୱଳ ହଳଦିଆ ଗାନ୍ଦାମ ପକ୍ଷୀ ଦୂରରୁ ଉଜ୍ଜ୍ୱଳ ଫୁଲ ପରି ଦେଖାଯାନ୍ତି । ଏ ଦୃଶ୍ୟ ଦେଖିବାକୁ ବାସ୍ତବିକ ଚମତ୍କାର । ଶୀତଋତୁରେ ଆମ ଏଠାରେ ଥିଲାବେଳେ ଗାନ୍ଦାମ ପକ୍ଷୀମାନେ କେବଳ ଗୋଟିଏ ପ୍ରକାର ରବ କରନ୍ତି । ତାହା ଉଡ଼ୁଥିଲାବେଳେ ଘରଚଟିଆମାନଙ୍କ ପରି ଏକପ୍ରକାର ସଙ୍ଗୀତମୟ, ବରଂ କେତେକ ପରିମାଣରେ ଶୋକାବହ 'ଟ୍ୟୁଇଟ୍' ଶବ୍ଦ । କଳାମୁଣ୍ଡି ଗାନ୍ଦାମ ପକ୍ଷୀ ଆମ ଦେଶ ବାହାରେ, ପଶ୍ଚିମ-ଏସିଆ ଓ ପୂର୍ବ-ୟୁରୋପରେ ନୀଡ଼ ରଚନା କରିଥାଏ । ଲାଲମୁଣ୍ଡି ଗାନ୍ଦାମର ନିକଟତମ ନୀଡ଼ ରଚନା କରିବା ସ୍ଥାନ ହେଲା ପାକିସ୍ଥାନର ବେଲୁଚିସ୍ଥାନ । ଏହାର ନୀଡ଼ କପ୍ ପରି । ଏହା ଅନାବନା ଗଛର ଡେଙ୍ଗ ଓ ଡାଳରେ ତିଆରି ହୋଇଥାଏ ଓ ସେଥିରେ ଛେଳିର ଲୋମ ଦିଆଯାଇଥାଏ । ଥରକେ ସାଧାରଣତଃ ପାଞ୍ଚଟି ଅଣ୍ଡା ଦିଏ । ଅଣ୍ଡାର ବର୍ଣ୍ଣ ଫିକା ସବୁଜ-ଆସିଆ ଧଳା । ତା' ଉପରେ ଘନ ବାଦାମୀ, ଫିକା ନୀଳ ଓ ଧୂସର ବର୍ଣ୍ଣର ଛିଟା ଓ ବିନ୍ଦୁ ବିନ୍ଦୁ ଦାଗ ପଡ଼ିଥାଏ ।

# ଶବ୍ଦ ସୂଚୀ

ଧଳାପେଟିଆ କଜଳପାଠ
ଧଳା ଭୂରୁ ନାଚୁଣୀ ପକ୍ଷୀ
ଧଳା ଲଟୋରା
ଧନେଶ
ଧୋବକାଙ୍କ
ଧୋବ ଚମ୍ପା

ନ

ନଦୀ ଡୁବେନ୍
ନନ୍ଦୀ ବଗ
ନବରଙ୍ଗୀ
ନାଚୁଣୀ ପକ୍ଷୀ
ନାହାକା ଶୁଆ
ନିଶା ବକ
ନୀଳକଣ୍ଠ ସିନ୍ଦୁରମୁଣ୍ଡି
ନୁନ୍‌ଚର୍‌ନ
ନେକ୍‌ଟାରିନିଡ଼ି

ପ

ପଙ୍କା
ପଣ୍ଡା ହଂସ
ପଥୁରିଆ ଝାଟି ପୁଣ୍ଡୁକ
ପବଢ଼ଆ କାଉ
ପଶ୍ଚି ନୀଳ ପକ୍ଷୀ
ପାଉଁଶିଆ କଜଳପାଠ
ପାଣି କୁଆ
ପାଣି କୁଆଳ
ପାଣି ଡାହୁକ
ପାଣି ହଂସ
ପାଢ କାଉ
ପାଢ଼ ହଂସ
ପାନ୍‌ଶ ଝୀଲ୍ଲେଇ
ପାପିୟା
ପାପିୟା-ଗୁଡକ
ପାରା
ପାରାବତ
ପାରିଡ଼ି
ପାସାରିଫରମିସ
ପିକ
ପିକ୍‌ନୋନୋଟିଡ଼ି
ପିଟ୍ଟିଡ଼ି
ପିସିଡ଼ି
ପିସିଫରମିସ
ପୁଣ୍ଡୁକ
ପୁଣ୍ଡୁକ, ଚନକ୍-ଚନା
ପେଙ୍ଗୁଇନ୍
ପେଚକ
ପେଗୁ
ପେରୁ ପକ୍ଷୀ
ପେଲିକାନିଡ଼ି
ପେଲିକାନିଫରମିସ
ପୋଡ଼ିସିପେଡ଼ିଫରମିସ
ପ୍ଲୋସେଇଡ଼ି

ଫ

ଫାଲ୍‌କୋ କୋରାସିଡ଼ି
ଫିକାନୀଳ ମକ୍ଷିଧାରକ ପକ୍ଷୀ
ଫିତା ବୁଲବୁଲ
ଫିନ୍‌ଚ୍

ଫ୍ରିନ୍‌ଜିଲ୍ଲିଡ଼
ଫୁଲଗୁଣ୍ଡି
ଫୁଲଚୁଷି
ଫୁଟ୍‌କି
ଫେଜାଣ୍ଟ ମୁରଗୀ
ଫେଲକନଡ଼
ଫେଲକନଫରମିସ
ଫୋଏନକପଟେରଡ଼

ବ

ବଗ
ବଡ଼ କର୍ମୋରାଣ୍ଟ
ବଡ଼ ଖଞ୍ଜନ
ବଡ଼ ଗୁଣ୍ଡି
ବଡ଼ ଗୁଣ୍ଡିଖାଇ
ବଡ଼ ବଗ
ବଡ଼ ବାଂଶପାରୁର
ବଡ଼ ହଂସରାଳ
ବଡ଼ କୁକୁଡ଼ା
ବଣି
ବଳଦଆ
ବହ୍‌ରା
ବାଇଗଣି ଫୁଲଚୁଇଁ
ବାଇଗଣି ପିଚ ଫୁଲଚୁଇଁ
ବାଇଗଣି ବଗ
ବାଦାମୀ ଗୃଟ୍‌
ବାନ୍ଦୁ
ବାବୁଇ
ବାବୁନା
ବାସ୍ଥା
ବାରମାସୀ
ବାଲ୍ ଟେଣ୍ଟେଇ
ବାଲ୍ ଡୁବୁର
ବାଂଶ ପାରୁର
ବୁରହ୍‌ନଡ଼
ବୁଲବୁଲ
ବୁସେରୋଟିଡ଼
ବେକାର
ବେନ୍‌ବ
ବ୍ଲାଇଥ୍
ବ୍ଲାନ୍‌ଫୋର୍ଡ଼

ଭ

ଭଇନ
ଭଦଭଦଳିଆ
ଭରତ ପକ୍ଷୀ
ଭରତଆ
ଭରଥିଆ
ଭରଦ୍ୱାଜ ପକ୍ଷୀ
ଭାଇସା
ଭାଟ ଠଭିର
ଭାରଢଆ
ଭାରତୀୟ ଚରଚର
ଭାରତୀୟ ସାଗ୍
ଭାରଥିଆ
ଭାଲଆଖାଇ
ଭାଲଆ ଖାଇ ଶୁଆ
ଭୂଇଁ ଗ୍ରୁପୁଲ

□□□

ଅର୍ନିଥୋଲୋଜି (Ornithology) ବା ପକ୍ଷୀବିଜ୍ଞାନ ପ୍ରାକୃତିକ-ଇତିହାସ ସମ୍ବନ୍ଧୀୟ ବିଷୟମାନଙ୍କ ମଧ୍ୟରେ ଅନ୍ୟତମ । ଆମ ଦେଶରେ ଏ ବିଷୟ ପ୍ରତି ଆଗ୍ରହ ଦିନକୁ ଦିନ ବଢ଼ୁଛି । ଏ କ୍ଷେତ୍ରରେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ପକ୍ଷୀ-ବିଜ୍ଞାନବିତ୍ ଡକ୍ଟର ସାଲିମ୍ ଅଲ୍ଲୀଙ୍କ ଅବଦାନ ଅତୁଳନୀୟ । ଭାରତୀୟ ପକ୍ଷୀମାନଙ୍କ ସମ୍ପର୍କରେ ତାଙ୍କର ଗଭୀର ଜ୍ଞାନ ଆନ୍ତର୍ଜାତିକ କ୍ଷେତ୍ରରେ ସମାଦୃତ ।

ଶ୍ରୀମତୀ ଲାଇକ୍ ଫତେଅଲ୍ଲୀ ଜଣେ ବିଖ୍ୟାତ ପ୍ରକୃତି-ପ୍ରେମୀ । ସହରାଞ୍ଚଳରେ ପ୍ରାକୃତିକ ସୌନ୍ଦର୍ଯ୍ୟ ବଢ଼ାଇବା ସଙ୍ଗେ ସଙ୍ଗେ ମଣିଷ ଓ ପକ୍ଷୀମାନେ ବାସ କରିପାରିଲା ଭଳି ସୁନ୍ଦର ପରିବେଶ କିପରି ସୃଷ୍ଟି କରାଯାଇପାରେ, ସେ ବିଷୟରେ ତାଙ୍କର ସ୍ୱତନ୍ତ୍ର ଆଗ୍ରହ ରହିଛି । ଛୋଟ ପିଲାଙ୍କ ଲାଗି ଭାରତୀୟ ପକ୍ଷୀମାନଙ୍କ ବିଷୟରେ ତାଙ୍କର ଏକ ଇଂରାଜୀ ପୁସ୍ତକ About Indian Birds ଖୁବ୍ ଲୋକପ୍ରିୟତା ଅର୍ଜନ କରିଛି । ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ଅନେକ ପ୍ରବନ୍ଧ ପ୍ରକାଶିତ ହୋଇଛି ।

**Rs. 18-25**

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ନୂଆ ଦିଲ୍ଲୀ